ଉତ୍କଳମଣି

# ଗୋପବନ୍ଧୁ ଗ୍ରନ୍ଥାବଳୀ

[ପ୍ରଥମ ଖଣ୍ଡ : କବିତା]

ସଂପାଦକ :

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ

ରାଉରକେଲା

ଗ୍ରନ୍ଥମନ୍ଦିର

**Utkalamani Gopabandhu Granthabali** – Vol. - I *(poems)*
*(Collected works of Utkalamani Pandit Gopabandhu Das)*
*Compiled by :* Debendra Kumar Dash, Rourkela
*Published by :* Mr. Manoj Mohapatra
**Granthamandir**, Binodbihari, Cuttack-2
First Edition : March, 2003
Price Rs. 200/-





ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ଡି.ଟି.ପି. ଓ ମୁଦ୍ରଣ : **ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍**
ସୂତାହାଟ, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ମାର୍ଚ୍ଚ, ୨୦୦୩

ମୂଲ୍ୟ : ଟ. ୨୦୦/-

# ସୂଚୀପତ୍ର

—

# ଭୂମିକା

## ।। ଏକ ।।

ପୁରୀ ଜିଲ୍ଲାର ରୂପଦେଈପୁର ବିଦ୍ୟାଳୟର ଗୋପବନ୍ଧୁ ଦାସ ନାମକ ଜଣେ ଛାତ୍ର ୧୮୯୧ ମସିହାରେ ଓଡ଼ିଶା ଡିଭିଜନ୍‌ର ମିଡିଲ୍ ଭର୍ଣ୍ଣାକ୍ୟୁଲାର୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଦଶମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେବାର ସମ୍ବାଦ ତତ୍‌କାଳୀନ ସାପ୍ତାହିକ ସମ୍ବାଦପତ୍ର 'ଉତ୍କଳ-ଦୀପିକା' (୨୭/୬, ୬.୨.୧୮୯୨)ରୁ ମିଳିଥାଏ । ତିନି ସପ୍ତାହ ପରେ ସେହି 'ଉତ୍କଳ-ଦୀପିକା'ରୁ (୨୭/୯; ୨୭.୨.୧୮୯୨) ପୁଣି ଖବର ମିଳେ ଯେ ସଂପୃକ୍ତ ଛାତ୍ରଜଣକ ଉଚ୍ଚ ଶିକ୍ଷା ଲାଭ କରିବା ଉଦ୍ଦେଶ୍ୟରେ ସରକାରୀ ବୃତ୍ତି ପାଇଁ ମନୋନୀତ । ଦୁଇ ବର୍ଷ ପରେ ସଂପୃକ୍ତ ଛାତ୍ରଜଣଙ୍କୁ ନେଇ ଏକ ବିତର୍କିତ ପତ୍ର ସେହି 'ଉତ୍କଳ-ଦୀପିକା'ରେ ପ୍ରକାଶିତ ହୁଏ ଓ ତାହା ପୁଣି ସଂପୃକ୍ତ ଛାତ୍ରଙ୍କର କିଛି ଲେଖାଲେଖି କରିଥିବା କାରଣରୁ । ପୁରୀରୁ "ଶ୍ରୀ–ରା" (ବୋଧହୁଏ ମୁକ୍ତାର ରାମଚନ୍ଦ୍ର ଦାସ) ନାମରେ ଜଣେ ବ୍ୟକ୍ତି ୫.୨.୧୮୯୪ ତାରିଖର ଏକ ପତ୍ରରେ ଓଡ଼ିଶାର ସ୍କୁଲ ବିଭାଗର ସର୍ବୋଚ୍ଚ କର୍ତ୍ତା ଓ କବିବର ରୂପେ ପରିଚିତ ରାଧାନାଥ ରାୟଙ୍କ ବିରୁଦ୍ଧରେ ଅଭିଯୋଗ କରି ଲେଖିଥିଲେ :

> ବାବୁ ମହୋଦୟ [ ରାଧାନାଥ ରାୟ ] ଏଠାରେ ପ୍ରବିଷ୍ଟହୋଇ ଜନୈକ ତୋଷାମଦକାରୀ ଶିକ୍ଷକଙ୍କୁ ଇନ୍ଦ୍ରଧନୁ ବିଜୁଳିର ଚର୍ଚ୍ଚା କେଉଁ କେଉଁମାନେ କରନ୍ତି, ଏ ସମ୍ବନ୍ଧରେ କେତେକ ପ୍ରଶ୍ନ କରିଥିଲେ । ତତ୍‌ପରେ କୌଣସି ଲୋକ ବେନାମୀ ଚିଠିଦ୍ୱାରା ଜଣାଇ ଦେଲା ଯେ ଗୋପବନ୍ଧୁ ଦାସ ଆପଣଙ୍କ ବିରୁଦ୍ଧରେ ଇନ୍ଦ୍ରଧନୁକୁ ପ୍ରବନ୍ଧ ଲେଖିଅଛି ଓ ସ୍କୁଲର ସେକେଣ୍ଡମାଷ୍ଟର୍ [ ଦିବ୍ୟସିଂହ ମିଶ୍ର ] ତାହା ସଂଶୋଧନ କରିଦେଇ ଅଛନ୍ତି; ଇନ୍‌ସ୍ପେକ୍ଟର ମହୋଦୟ ଉକ୍ତ ପତ୍ର ପ୍ରାପ୍ତ ହୋଇ ସ୍କୁଲର ପରିଦର୍ଶନ ସମୟରେ ହେଡମାଷ୍ଟରଙ୍କ ସହିତ ଉକ୍ତ ବିଷୟର ଅନୁସନ୍ଧାନରେ ପ୍ରବୃତ୍ତ ହେଲେ । ନାମୋଲ୍ଲିଖିତ ବାଳକ ପଢୁଥିବା

ଶ୍ରେଣୀରେ ଉପସ୍ଥିତହୋଇ ପରୀକ୍ଷା କରିବା ସମୟରେ ମଧ୍ୟେ ମଧ୍ୟେ ପ୍ରଶ୍ନ କରୁଥିଲେ– କିଏ କିଏ ଏ ଶ୍ରେଣୀରେ ରଚନା କରିପାରନ୍ତି ? ଇନ୍ଦ୍ରଧନୁ କିଏ କିଏ ପଢ଼ କି ନା ? ଏବଂ ଇନ୍ଦ୍ରଧନୁରେ କିଏ ପ୍ରବନ୍ଧ ଲେଖକ କି ନା ? ଇତ୍ୟାଦି ପଚାରି ପଚାରି ଶେଷରେ ଗୋପବନ୍ଧୁଙ୍କୁ ଇନ୍ଦ୍ରଧନୁରେ ପ୍ରବନ୍ଧ ଲେଖିଥିବାର ପଚାରିବାରୁ ସେ ଲେଖି ନ ଥିବାର କହିଲା; ତତ୍‌ପରେ କେତେକ ମାଷ୍ଟର ଓ ଶ୍ରେଣୀସ୍ଥ ବାଳକମାନଙ୍କୁ ପଚରାଯିବାରେ ସେମାନେ ଜାଣି ନ ଥିବାର ବ୍ୟକ୍ତ କଲେ; ତତ୍‌ପର ଦିବସ ହେଡମାଷ୍ଟର ଉକ୍ତ ଗୋପବନ୍ଧୁର ଅନୁପସ୍ଥିତି କାଳରେ କେତେକ ବାଳକମାନଙ୍କଠାରୁ ସାକ୍ଷ୍ୟ ସାବୁତ ନେଇଥିଲେ । ତତ୍‌ପର ଦିନ ସ୍କୁଲରେ ନୋଟିସ ଦେଇ ଜଣାଇଦେଲେ ଯେ ଗୋପବନ୍ଧୁ ଇନ୍ଦ୍ରଧନୁକୁ ପ୍ରବନ୍ଧ ଲେଖି ମନାକରିଥିବାରୁ ମିଥ୍ୟା କହିବା ଦୋଷରେ ୭ ଦିନର ବୃତ୍ତି ଜରିମାନା କରାଗଲା ଓ ଗତବର୍ଷ ପରୀକ୍ଷାର ପାରଦର୍ଶିତାନୁସାରେ ଯେଉଁ ପ୍ରାଇଜ୍ ପାଇଥାନ୍ତା, ତାହା କର୍ତ୍ତନ କରାଗଲା । (ଉତ୍କଳ-ଦୀପିକା ୨୯।୬; ୧୦.୨.୧୮୯୮)

ଶିକ୍ଷା-ପ୍ରଶାସକଙ୍କ ନାଲି ଆଖି ଓ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ତଥା ରଚିତ କବିତା ବାରମ୍ବାର ନଷ୍ଟହେବା ସତ୍ତ୍ୱେ ଗୋପବନ୍ଧୁ କବିତା-ଲେଖାରୁ ନିବୃତ୍ତ ହୋଇନାହାନ୍ତି । ବୈଦ୍ୟନାଥ ମିଶ୍ର ଓ ଗୋପୀନାଥ ଦାସ ପ୍ରମୁଖ ପୁରୀ ଜିଲ୍ଲା ସ୍କୁଲର ସହାଧ୍ୟାୟୀ ବନ୍ଧୁ ଓ ମୁକ୍ତାର ରାମଚନ୍ଦ୍ର ଦାସ ପ୍ରମୁଖଙ୍କ ପ୍ରରୋଚନାରେ ଗୋପବନ୍ଧୁ ବହୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ କବିତା ଲେଖାରେ ନିମଜ୍ଜିତ ରହିଛନ୍ତି । ୧୮୯୮ ମସିହାରେ 'ଚନ୍ଦ୍ର' ଶୀର୍ଷକ କବିତା ସେ କଟକରୁ ପ୍ରକାଶ ପାଉଥିବା 'ଉତ୍କଳ-ସାହିତ୍ୟ' ପତ୍ରିକାକୁ ପ୍ରେରଣ କରିଛନ୍ତି । 'ଚନ୍ଦ୍ର' କବିତାରେ ପ୍ରାଚୀନ ଓଡ଼ିଆ କବିତାର ପ୍ରଭାବ ଥିବା ସତ୍ତ୍ୱେ ଆଧୁନିକ ସାହିତ୍ୟର ପକ୍ଷପାତୀ 'ଉତ୍କଳ-ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର କବିତାଟି ଉତ୍କଳ-ସାହିତ୍ୟର ଦ୍ୱିତୀୟ ବର୍ଷ, ପଞ୍ଚମ ସଂଖ୍ୟା (ମେ, ୧୮୯୮)ରେ ପ୍ରକାଶ କରିଛନ୍ତି । ହାଇସ୍କୁଲ୍ ପରୀକ୍ଷା ଦେଇ ଫଳାଫଳକୁ ଅପେକ୍ଷା କରିଥିବା ଗୋପବନ୍ଧୁଙ୍କୁ 'ଚନ୍ଦ୍ର' କବିତାର ପ୍ରକାଶ ଏକ ନୂତନ ଅନୁଭବ ଆଣିଦେଥିବ ନିଶ୍ଚୟ । ଏହାଥିଲା ଗୋପବନ୍ଧୁଙ୍କର ଏବେ ଉପଲବ୍ଧ ପ୍ରଥମ ମୁଦ୍ରିତ କବିତା ।

୧୮୯୮ ମସିହା ଜୁଲାଇ ମାସରେ କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍‌ସ ପରୀକ୍ଷାର ଫଳ ପ୍ରକାଶିତ ହୁଏ । ପ୍ରଥମ ଶ୍ରେଣୀରେ ପୁରୀ ଜିଲ୍ଲା ସ୍କୁଲରୁ ବୈଦ୍ୟନାଥ ମିଶ୍ର ଓ ଗୋପୀନାଥ ଦାସଙ୍କ ସହିତ ଗୋପବନ୍ଧୁ ଦାଽସ ଉତ୍ତୀର୍ଣ୍ଣ ହୋଇ ବୃତ୍ତିଲାଭ

କରନ୍ତି । (ଉତ୍କଳ-ଦୀପିକା ୩୩/୨୭; ୦୨.୭.୧୮୯୮ ପୃ.୨୧୧)* ତିନି ବନ୍ଧୁ ଆସି କଟକ ରେଭେନ୍‌ସା କଲେଜରେ ଏଫ୍.ଏ. ଶ୍ରେଣୀରେ ସେହି ବର୍ଷ ଯୋଗଦେଲା ପରେ ଗୋପବନ୍ଧୁଙ୍କର କାର୍ଯ୍ୟ ପରିସର ବିସ୍ତାରିତ ହୋଇଛି । ରେଭେନ୍‌ସା କଲେଜ୍‌ରେ ଗୋପବନ୍ଧୁଙ୍କର ଜମିଦାର-ପୁତ୍ର ବ୍ରଜସୁନ୍ଦରଙ୍କ ସହ ବନ୍ଧୁତା ହୋଇଛି । ଯାଉଁଳିଆପଟିରେ ଥିବା ବ୍ରଜସୁନ୍ଦରଙ୍କ ଛୋଟ ଦିମହଲା କୋଠାଟି ହୋଇପଡ଼ିଛି ଏହି ସହପାଠୀମାନଙ୍କର ଆଡ୍‌ଡାସ୍ଥଳୀ । ସେହି ଆଡ୍‌ଡାରୁ ଆସିଛି 'କର୍ତ୍ତବ୍ୟବୋଧିନୀ ସଭା' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରିବାର ପ୍ରେରଣା । ସେ ସମୟର ସ୍ମୃତିଚାରଣ କରି ଗୋପବନ୍ଧୁଙ୍କ 'ପ୍ରେମାସ୍ପଦ ବନ୍ଧୁ' ବୈଦ୍ୟନାଥ ମିଶ୍ର ଲେଖିଛନ୍ତି :

> ସେ ସମୟରେ ନବୀନମାନଙ୍କ ମନରେ ଦେଶପ୍ରତି କର୍ତ୍ତବ୍ୟର ଗୋଟିଏ ପ୍ରେରଣା ଆସିଥିଲା । ଆମ୍ଭମାନଙ୍କର ବିଶେଷତଃ ଉତ୍କଳମଣି (ଗୋପବନ୍ଧୁ) ଓ ବ୍ରଜସୁନ୍ଦର ଓ ଅନ୍ୟ କେତେକ ବନ୍ଧୁଙ୍କ ଯତ୍ନରେ ବିନୋଦବିହାରୀ ମନ୍ଦିରରେ 'କର୍ତ୍ତବ୍ୟବୋଧିନୀ' ବୋଲି ଗୋଟିଏ ସଭା ଆରମ୍ଭକରି ସାପ୍ତାହିକ ଅଧିବେଶନ ଓ ପ୍ରବନ୍ଧପାଠ ଇତ୍ୟାଦି ଦ୍ୱାରା ଦେଶ ପ୍ରତି, ଛାତ୍ରସମାଜର କର୍ତ୍ତବ୍ୟପ୍ରତି ପ୍ରେରଣା ଦେଉଥିଲୁ । (ମିଶ୍ର : ୧୯୬୨ ପୃ.୧୫)

ଏହି 'କର୍ତ୍ତବ୍ୟବୋଧିନୀ ସଭା'ର ଆନୁକୂଲ୍ୟରେ, ବିଶେଷତଃ ଏହାର ସଭ୍ୟମାନଙ୍କର ବାଧବାଧକତାରେ, ଏଫ.ଏ.ର ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ଗୋପବନ୍ଧୁଙ୍କର ପ୍ରଥମ କବିତାଗ୍ରନ୍ଥ 'ଅବକାଶଚିନ୍ତା' ପ୍ରକାଶିତ । 'ଅବକାଶଚିନ୍ତା'ରେ ପୂର୍ବରୁ ଲିଖିତ/ପ୍ରକାଶିତ 'କବିତାଦେବୀ' ଓ 'ଚନ୍ଦ୍ର' କବିତା ସମେତ ନଅଟି କବିତା ସଂକଳିତ । ତରୁଣ ଜୀବନର ଅନୁଭବ ଓ ସ୍ୱପ୍ନ ସହିତ ଜାତୀୟଚେତନା, ଐତିହ୍ୟପ୍ରୀତି

---

* ଗୋପବନ୍ଧୁଙ୍କର ସମସ୍ତ ଜୀବନୀକାର ସେ ଏଣ୍ଟ୍ରାନ୍‌ସ ପରୀକ୍ଷା ୧୮୯୯ ମସିହାରେ ପାସ୍ କରିଥିବା ଉଲ୍ଲେଖ କରିଛନ୍ତି । ଗୋପବନ୍ଧୁଙ୍କର ପ୍ରଥମ ଜୀବନୀ-ଲେଖକ ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବନ୍ଧୁ ତ୍ରିପାଠୀ ଲେଖିଛନ୍ତି : "୧୮୯୯ ମସିହାରେ ଗୋପବନ୍ଧୁ ପୁରୀ ଜିଲା ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ କଟକ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ।" (ତ୍ରିପାଠୀ ଓ ତ୍ରିପାଠୀ : ୧୯୨୮ ପୃ.୨୩) ଏମାନଙ୍କୁ ଅନୁସରଣ କରି ପଣ୍ଡିତ ଲିଙ୍ଗରାଜ ମିଶ୍ର, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ପ୍ରମୁଖ ୧୮୯୯ରେ ଗୋପବନ୍ଧୁ ଏଣ୍ଟ୍ରାନ୍‌ସ ପାସ୍ କରିଥିବାର ଉଲ୍ଲେଖ କରିଛନ୍ତି । ମୌଳିକ ତଥ୍ୟକୁ ଭିତ୍ତି କରି ଗୋପବନ୍ଧୁଙ୍କ ଜୀବନୀ ଓ ସାହିତ୍ୟର ଚର୍ଚ୍ଚା କରିଥିବା ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ଡକ୍ଟର ନଟବର ସାମନ୍ତରାୟ ମଧ ଏହି ତ୍ରୁଟିରୁ ମୁକୁଳି ପାରିନାହାନ୍ତି । ଡକ୍ଟର ନିତ୍ୟାନନ୍ଦ ଶତପଥୀ ପ୍ରଥମେ ଠିକ୍ ବର୍ଷ (୧୮୯୮)ଟିକୁ ଉଲ୍ଲେଖ କରିଥିଲାବେଳେ (୧୯୮୯ ପୃ.୧୬), ସେହି ପୁସ୍ତକରେ ଅନ୍ୟତ୍ର (ଏକ୍ସ ପୃ.୩୯) ୧୮୯୯ରେ ଗୋପବନ୍ଧୁ ଏଣ୍ଟ୍ରାନ୍‌ସ ପାସ କରିଥିବା ଉଲ୍ଲେଖ କରିଛନ୍ତି ।

ଓ ପ୍ରକୃତିପ୍ରୀତି ଏହି କବିତାଗୁଡ଼ିକର ଉପଜୀବ୍ୟ । କବିତାଲେଖାରୁ ବିରତ ହେବାକୁ ଇଚ୍ଛାକରିଥିବା ଗୋପବନ୍ଧୁ କବିତାର ପ୍ରେମଜାଲ କଟାଇ ପାରିନଥିବାର ପ୍ରମାଣ ହେଉଛି 'ଅବକାଶଚିନ୍ତା' ।

ପୁରୀ ଜିଲ୍ଲା ସ୍କୁଲରେ ଛାତ୍ରଥିବାବେଳେ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ଗୋପବନ୍ଧୁ ଦେଶ ଓ ଜନତାର ସେବାପାଇଁ ଉନ୍ମୁଖ ହୋଇଥିଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବାବେଳେ ଓଡ଼ିଆମାନଙ୍କର ଅଧଃପତନ, ଓଡ଼ିଆ ଭାଷାର ଦୁରବସ୍ଥା ତାଙ୍କୁ ଅଧିକ ଭାବରେ ବ୍ୟଥିତ କରିଛି । ସେ ଓ ବ୍ରଜସୁନ୍ଦର 'କର୍ତ୍ତବ୍ୟବୋଧିନୀ ସଭା' ମାଧମରେ କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ପ୍ରତି ଥିବା ବୈମାତୃକ ମନୋଭାବର ବିରୋଧ କରିଛନ୍ତି । ୩୭ ବର୍ଷ ପରେ ସଂପୃକ୍ତ ବିଷୟରେ ସ୍ମୃତିଚାରଣ କରି ବ୍ରଜସୁନ୍ଦର କହନ୍ତି :

> କଲିକତା ବିଶ୍ୱବିଦ୍ୟାଳୟରେ ଅନ୍ୟାନ୍ୟ ଦେଶୀୟ ଭାଷା ଅର୍ଥାତ ବଙ୍ଗଳା, ହିନ୍ଦୀ, ଉର୍ଦ୍ଦୁ, ଆସାମୀ [?] ଆଦିରେ ସ୍ୱତନ୍ତ୍ର ପରୀକ୍ଷା ଦେବାର ବିଧାନ ଥିବା ସ୍ଥଳେ ଓଡ଼ିଆ ଗୋଟିଏ ପ୍ରାଦେଶିକ ଭାଷାରୂପେ ଗୃହୀତ ହୋଇ ନ ଥିଲା । ତେଣୁ ଗୋପବନ୍ଧୁ ଓ ମୁଁ ସେ ଦିଗରେ ଚେଷ୍ଟା କରିବାକୁ ବଦ୍ଧପରିକର ହେଲୁଁ । ଆମ୍ଭମାନଙ୍କର ଅଗ୍ରଗାମୀ ଅଭିରାମ ଭଞ୍ଜ, କାମପାଳ ମିଶ୍ର ପ୍ରଭୃତିଙ୍କୁ ଏ ବିଷୟ ଜଣାଇବାରେ ସେମାନେ ତାହା ହୋଇପାରିବା ଅସମ୍ଭବ ଭାବି ନିରାଶାର ବାଣୀ ଶୁଣାଇଥିଲେ । କିନ୍ତୁ ଆମ୍ଭେମାନେ ନିରାଶ ବା ହତୋଦ୍ୟମ ନ ହୋଇ ବୃଦ୍ଧ ଫକୀରମୋହନ ଓ ପୁରୀର ଦିବାକର ଦାସଙ୍କ ସହଯୋଗରେ ଗୋଟିଏ ସଭା କରି ତତ୍‌କାଳୀନ ଲାଟ ଉଡ୍‌ବରନଙ୍କୁ ଜଣାଇଲୁଁ – ପୁଣି ସେ ବାଲେଶ୍ୱର ଆସିଲାବେଳେ ମଧ୍ୟ ଆବେଦନ ଓ ତାର ପ୍ରଭୃତି କରିଥିଲୁଁ । (ସମାଜ ୧.୭.୧୯୩୭; ଉଦ୍ଧୃତ : ମିଶ୍ର : ୧୯୭୬ ପୃ.୧୯)

ଗୋପବନ୍ଧୁ ଓ ବ୍ରଜସୁନ୍ଦର ଓଡ଼ିଆ ଭାଷା ପାଇଁ କରିଥିବା ଏହି ସଂଗ୍ରାମ ପ୍ରଥମ ଅବସ୍ଥାରେ ବିଫଳତାର ସମ୍ମୁଖୀନ ହୋଇଥିଲା । ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନେ ତଥା ସାହିତ୍ୟିକଗଣ ପ୍ରଥମରେ ସେମାନଙ୍କୁ ସହଯୋଗ କରିନଥିଲେ । ବଳିଷ୍ଠ ଲୋକମତର ଅଭାବହେତୁ କଲିକତା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ଛାତ୍ରମାନଙ୍କର ଆବେଦନ ଗ୍ରହଣଯୋଗ୍ୟ ନୁହେଁ ବୋଲି ମତ ଦେଇଥିଲା । ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାରଙ୍କଠାରୁ ଚିଠି ପାଇଲାପରେ ମନର ବେଦନା ଅଭିବ୍ୟକ୍ତ କରି 'ଗୋଟିଏ ପ୍ରାର୍ଥନା' ଶୀର୍ଷକରେ 'କଟକ କଲେଜର ଜଣେ ଛାତ୍ର'ର ପରିଚିତି ନେଇ ଗୋପବନ୍ଧୁ 'ଉତ୍କଳ-ସାହିତ୍ୟ'ରେ ଯେଉଁ ଗଦ୍ୟ ରଚନାଟି ପ୍ରକାଶ କରାଇଥିଲେ, ତାହା

ଗୋପବନ୍ଧୁଙ୍କୁ ଚିହ୍ନିବା ପାଇଁ ଯେଭଳି ଏକ ଅଭ୍ରାନ୍ତ ଉପାଦାନ; ଠିକ୍ ସେହିଭଳି ତାହା ତାଙ୍କ ଭବିଷ୍ୟତ ଜୀବନ ଗତିପଥର ସୂଚକ । ସେଥିରେ ସେ ଲେଖିଥିଲେ :

...ଏହି ହତଭାଗିନୀ ଉତ୍କଳଭାଷା ପ୍ରତି କାହାରି ଟିକିଏ ସୁଦୃଷ୍ଟି ପଡୁନାହିଁ । ଏହା ଉତ୍କଳବାସିଙ୍କ ଦ୍ୱାରା ଯେପରି ଅନାଦୃତ, ବିଶ୍ୱବିଦ୍ୟାଳୟ ଦ୍ୱାରା ମଧ୍ୟ ସେହିପରି ଉପେକ୍ଷିତ । ଆମ୍ଭମାନଙ୍କ ଦେଶର ପ୍ରଧାନ ପ୍ରଧାନ ଲୋକମାନେ ଓ 'ଦେଶହିତୈଷୀ'ମାନେ ମାତୃଭାଷାର ଉନ୍ନତି କଳ୍ପରେ ସର୍ବଦା ଉଦାସୀନ । କିପରି ଉତ୍କଳ ଛାତ୍ରସମାଜର ମନ ମାତୃଭାଷା ପ୍ରତି ଆକର୍ଷିତ ହେବ, କିପରି ମାତୃଭାଷାର ଗୌରବବୃଦ୍ଧି ହେବ ଏହା ଅତି ଅଳ୍ପ ଲୋକଙ୍କର ଭାବନାର ବିଷୟ ।

ବିଶ୍ୱବିଦ୍ୟାଳୟର ଏଫ.ଏ. ଓ ବି.ଏ. ପରୀକ୍ଷାରେ ଓଡ଼ିଆର କୌଣସି ନାମ ଗନ୍ଧ ନ ଥିବା ଓ ଉତ୍କଳ ନେତାମାନଙ୍କର ସେ ସମ୍ପର୍କରେ ସଂପୂର୍ଣ୍ଣ ଔଦାସୀନ୍ୟ ଦେଖି ଆମ୍ଭେମାନେ (କଲେଜର ସମସ୍ତ ଉତ୍କଳ ଛାତ୍ର) ଚାପଲ୍ୟବଶତଃ ଓ ମନର କ୍ଷୋଭ ନିବାରଣାର୍ଥ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାରଙ୍କ ପାଖକୁ ଉତ୍କଳ ରଚନା ବିଷୟରେ ଗୋଟିଏ ସ୍ୱତନ୍ତ୍ର ପ୍ରଶ୍ନ କରିବା ନିମିତ୍ତ ଆବେଦନ ପତ୍ର ପଠାଇଥିଲୁଁ । ତାହାର ଯେ ହୁକୁମ ହୋଇଛି, ତାହା ଆଜି ସର୍ବସମକ୍ଷରେ ଉପସ୍ଥିତ କରୁଅଛୁଁ । ତାହା ଏହି "The Syndicate are of opinion that it is not desirable to include Oria in the list of vernaculars in which a paper on original composition is set at the F.A. and B.A. examinations."...ଉତ୍କଳୀୟ ନେତାମାନଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ଯେ ସେମାନେ ଥରେ ଏଥିପ୍ରତି ଦୃଷ୍ଟି କରନ୍ତୁ । ସେମାନଙ୍କର ଔଦାସୀନ୍ୟ ଦୂରକରନ୍ତୁ ।

ଆମ୍ଭମାନଙ୍କର ଏଠାରେ କହିବା ଉଚିତ ଯେ ପୂର୍ବୋଲ୍ଲିଖିତ ବଙ୍ଗଳା ଓ ଉର୍ଦ୍ଦୁର ସ୍ୱତନ୍ତ୍ର ପ୍ରଶ୍ନ ଛାତ୍ରମାନଙ୍କ ଆବେଦନରେ ହୋଇନାହିଁ, ତାହା ବଙ୍ଗ ଓ ମୁସଲମାନ ସାଧାରଣଙ୍କର ବହୁବର୍ଷବ୍ୟାପୀ ଚେଷ୍ଟା ଓ ପରିଶ୍ରମର ଫଳ ।

ମାତ୍ର ଉତ୍କଳ ସାଧାରଣ ତାଙ୍କର ମାତୃଭାଷାରେ ବିଶ୍ୱବିଦ୍ୟାଳୟରେ ସ୍ୱତନ୍ତ୍ର ପ୍ରଶ୍ନ ହେବା ବିଷୟ କେବେ ଚିନ୍ତା କରିଛନ୍ତି କି ନାହିଁ ସନ୍ଦେହ ।

ପରିଶେଷରେ ସମସ୍ତ ଉତ୍କଳୀୟମାନଙ୍କଠାରେ ନିବେଦନ ଯେ ସେମାନେ ଥରେ 'ସିଣ୍ଡିକେଟକୁ' ପଚାରନ୍ତୁ ଓଡ଼ିଆ 'ଭର୍ଣ୍ଣାକ୍ୟୁଲାର'

> ମଧ୍ୟରେ ଗଣନା ହେବା କାହିଁକି ବାଞ୍ଛନୀୟ ନୁହେଁ । ଓଡ଼ିଆ କଣ ଭାଷା ନୁହେଁ ? (ଉତ୍କଳ-ସାହିତ୍ୟ ୩।୧୨; ଡିସେମ୍ବର, ୧୮୯୯, ପୃ.୨୮୫-୨୮୬)

ଗୋପବନ୍ଧୁଙ୍କର ଏହି ପ୍ରାର୍ଥନା ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ସେଭଳି କୌଣସି ଉତ୍ତେଜନା ସୃଷ୍ଟି କରିନଥିଲା । ଯଦିଓ ସଂପାଦକୀୟ ଟିପ୍ପଣୀ ଦେଇ 'ଉତ୍କଳ-ସାହିତ୍ୟ'ର ସମ୍ପାଦକ ଛାତ୍ରମାନଙ୍କର ଉଦ୍ୟମକୁ ପ୍ରଶଂସା କରିଥିଲେ, ସେ ମଧ୍ୟ ବିଶ୍ୱବିଦ୍ୟାଳୟର ଅବିଚାର ବିରୁଦ୍ଧରେ କୌଣସି ସଂଗ୍ରାମ କରିବାକୁ ଓ ଏଥିସହିତ ସଂପର୍କିତ ଆନ୍ଦୋଳନର ନେତୃତ୍ୱ ନେବାକୁ ଆଗେଇ ଆସିନଥିଲେ । ଏହି ସଂଗ୍ରାମ ଚାଲିଥିବାବେଳେ ୧୯୦୦ ମସିହାରେ ଗୋପବନ୍ଧୁ ଏଫ.ଏ. ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛନ୍ତି । (ଉତ୍କଳ-ଦୀପିକା ୩୫।୨୦; ୧୯.୫.୧୯୦୦) ତାଙ୍କର ସହାଧ୍ୟାୟୀ ବୈଦ୍ୟନାଥ ମିଶ୍ର ପ୍ରଥମ ଶ୍ରେଣୀ ପାଇଥିଲାବେଳେ ବ୍ରଜସୁନ୍ଦର ଦାସ, ଗୋପୀନାଥ ଦାସ ଓ ଲୋକନାଥ ପଟ୍ଟନାୟକ ଦ୍ୱିତୀୟ ଶ୍ରେଣୀ ପାଇଛନ୍ତି । ଉଚ୍ଚତର ଶିକ୍ଷାଲାଭ ପାଇଁ ବୃତ୍ତି ପାଇବା ତାଲିକାରୁ କିନ୍ତୁ ବ୍ରଜସୁନ୍ଦରଙ୍କ ସହ ଗୋପବନ୍ଧୁ ମଧ୍ୟ ବାଦ୍‌ଯାଇଛନ୍ତି । (ଉତ୍କଳ-ଦୀପିକା, ୩୫।୨୩; ୯.୬.୧୯୦୦) ଏଠାରେ ସୂଚନାଯୋଗ୍ୟ ଯେ, ଦ୍ୱିତୀୟ ଶ୍ରେଣୀର ମେଧା ତାଲିକାର ଶୀର୍ଷରେ ଥିଲେ ଗୋପବନ୍ଧୁ । ମେଧା ତାଲିକାରେ ତାଙ୍କ ତଳେ ଥିବା ଗୋପୀନାଥ ଦାସ ଓ ଲୋକନାଥ ପଟ୍ଟନାୟକ ବୃତ୍ତିପାଇଁ ମନୋନୀତ ହେଲାବେଳେ, ଗୋପବନ୍ଧୁ ବାଦ୍ ଯିବାର ରହସ୍ୟ ସମକାଳର ସମ୍ବାଦପତ୍ରରେ ବା ପରବର୍ତ୍ତୀ କାଳର ଜୀବନୀକାରମାନଙ୍କ ଦ୍ୱାରା ଆଲୋଚିତ ହୋଇନାହିଁ । ଓଡ଼ିଆ ଭାଷା ସଂପର୍କିତ ଆନ୍ଦୋଳନର ନେତୃତ୍ୱ ନେବା ହେତୁ ଏହା ହୋଇନାହିଁ ତ ? ଜାତୀୟ ଗର୍ବ ଉପେନ୍ଦ୍ରଭଞ୍ଜଙ୍କ ସପକ୍ଷରେ ତଥା ରାଧାନାଥଙ୍କ ବିପକ୍ଷରେ 'ଇନ୍ଦ୍ରଧନୁ'ରେ କବିତା/ପ୍ରବନ୍ଧ ଲେଖି ଗୋପବନ୍ଧୁ ହରାଇଥିଲେ ସପ୍ତାହକର ବୃତ୍ତି ଓ ଗୋଟିଏ ପୁରସ୍କାର । ଓଡ଼ିଆ ଭାଷା ପାଇଁ ସଂଗ୍ରାମ କରି ସେ ହରାଇଥିଲେ ଉଚ୍ଚଶିକ୍ଷା ଲାଭ ପାଇଁ ଉଦ୍ଦିଷ୍ଟ ବୃତ୍ତି !

ଶିକ୍ଷାଲାଭ ଥିଲା ଗୋପବନ୍ଧୁଙ୍କପାଇଁ ଏକ ତପସ୍ୟା । ତେଣୁ ବୃତ୍ତିରୁ ବଞ୍ଚିତ ହେଲେ ମଧ୍ୟ ସେ ରେଭେନ୍‌ସା କଲେଜର ବି.ଏ. ଶ୍ରେଣୀରେ ୧୯୦୦ ମସିହା ଜୁଲାଇ ମାସରେ ଯୋଗଦେଇଛନ୍ତି । ସେହି ବର୍ଷ ଛୋଟଲାଟ ଉଡ୍‌ବରନ ସାହେବ ବାଲେଶ୍ୱର ଆସିଥିଲା ବେଳେ ଗୋପବନ୍ଧୁ ବ୍ରଜସୁନ୍ଦରଙ୍କ ସହ ତାଙ୍କୁ ଦେଖାକରି ଓଡ଼ିଆ ଭାଷା ସଂପର୍କରେ କଲିକତା ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍ ନେଇଥିବା ନିଷ୍ପତ୍ତିର ଅଯୌକ୍ତିକତା ପ୍ରଦର୍ଶନ କରି ଏକ ସ୍ମାରକପତ୍ର ଦେଇଛନ୍ତି । ଓଡ଼ିଆ ଭାଷାର ଦାବୀ ସଂପର୍କରେ ସେହି ସ୍ମାରକପତ୍ରରେ କୁହାଯାଇଥିଲା :

That the inclusion of the Oriya language in the list of those Vernaculars in which papers on original composition are set at the F.A. and B.A. examinations is calculated to promote a wholesome spirit of literary culture in their own mother-tongue amongst the graduates'and undergraduates of Orissa, and thereby to accelerate the growth and development of the language and literature of the province – a result which our paternal Government has always been earnestly anxious to secure. (ଉଦ୍ଧୃତ : ଚୌଧୁରୀ : ୧୯୦୧ ପୃ.୧୯)

ଗୋପବନ୍ଧୁ ତଥା ବ୍ରଜସୁନ୍ଦରଙ୍କର ସଂଗ୍ରାମ ସାର୍ଥକ ହୋଇଛି ଓ ୧୯୦୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଏଫ.ଏ. ଓ ବି.ଏ. ପରୀକ୍ଷାରେ ଓଡ଼ିଆକୁ ଏକ ବିଷୟ ରୂପେ ଗ୍ରହଣ କରିଛି । ଜନସେବା ସହିତ ଜାତିପାଇଁ ଏହି ସାଧନା, ତରୁଣ ବୟସରୁ ଗୋପବନ୍ଧୁଙ୍କୁ ଜାତୀୟଭାବାପନ୍ନ କେବଳ କରିନାହିଁ, ଓଡ଼ିଆ ଜାତିର ଭବିଷ୍ୟତ ଅଭ୍ୟୁଦୟ ସହିତ ଆପଣାକୁ ସେ ସମନ୍ୱିତ କରିଦେଇଛନ୍ତି । ବିଂଶ ଶତକର ପ୍ରଥମ ଦିନରେ ସମୟକୁ ସେ ସମ୍ବୋଧନ କରି କହିଛନ୍ତି :

ହେ କାଳ ! ତୁମ୍ଭରି ଗର୍ଭେ ସବୁ ଲୀନ,
ଶୁଭଗା ଉତ୍କଳ ଆଜି ଦୀନହୀନ ।
ହେ କାଳ ! ତୁମ୍ଭରି ଅଟଳ ଆଦେଶେ,
ଘୋଟିଛି ଦୁର୍ଗତି ଏ ଉତ୍କଳଦେଶେ;

x x x

ଥିଲା ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ରୋଷ ।
ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ଛାରଖାର ।
ଏତିକି କରୁଣା ଅଟଇ ବିହିତ ।
ସାଧ ନବଯୁଗେ ଉତ୍କଳର ହିତ ।

ବି.ଏ. ଶ୍ରେଣୀରେ ପଢୁଥିଲାବେଳେ 'ବିଂଶ ଶତାବ୍ଦୀର ପ୍ରଥମ ଦିନ ବାରବାଟୀ ଦର୍ଶନ' ସହିତ 'ବାଲିଯାତ୍ରା ସନ୍ଧ୍ୟାରେ – ମହାନଦୀ ତୀରରେ', 'କଟକର ଶିଳାସେତୁ', 'ଗୋଟିଏ କାଙ୍କଣ ଗଛ' ଆଦି କବିତା ସେ ଲେଖିଛନ୍ତି । ପ୍ରକୃତିପ୍ରୀତି ସହିତ ଓଡ଼ିଆ ଜାତିପ୍ରତି ଏକ ଗଭୀର ଆତ୍ମୀୟତାବୋଧ ଏହି ସମୟର ଅଧିକାଂଶ କବିତାରେ ଅଭିବ୍ୟକ୍ତ । ତା'ସହିତ ରହିଛି ସ୍ୱାଧୀନତା ପ୍ରତି ଏକ ବଳବତ୍ ଆକାଙ୍‌କ୍ଷା ।

କାହିଁକି କେଜାଣି କବିତାଗୁଡ଼ିକର ପ୍ରକାଶପାଇଁ ସେହି ସମୟରେ ସେ କୌଣସି ଚେଷ୍ଟା କରିନାହାନ୍ତି । ଏଠାରେ ସୂଚନାଯୋଗ୍ୟ ଯେ, ଓଡ଼ିଶାର ସାହିତ୍ୟିକ ଓ ବିଦ୍ୱତମହଲରେ ସେତେବେଳକୁ ଗୋପବନ୍ଧୁ ଏକ ପରିଚିତ ଓ ଚର୍ଚ୍ଚିତ ନାମ ।

୧୯୦୧ ମସିହା ପରେ ପରେ ଗୋପବନ୍ଧୁ ପାରିବାରିକ ଓ ବ୍ୟକ୍ତିଗତ ଜୀବନରେ ଗୋଟାକ ପରେ ଗୋଟାଏ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି । ୧୯୦୨ ମସିହାରେ ବି.ଏ. ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇପାରିନାହାନ୍ତି । କାରଣ ସେ ବର୍ଷ ପ୍ରଥମ ଥର ପାଇଁ ପରୀକ୍ଷା ହୋଇଥିବା ମାତୃଭାଷା 'ଓଡ଼ିଆ' ପତ୍ରଟିରେ ସେ ଅକୃତକାର୍ଯ୍ୟ ହୋଇଛନ୍ତି । ସବୁଠାରୁ ଦୁଃଖର ବିଷୟ ଥିଲା 'ଓଡ଼ିଆ' ପତ୍ରଟିର ପରୀକ୍ଷକରୂପେ ବିଶ୍ୱବିଦ୍ୟାଳୟ ଜଣେ ବିଖ୍ୟାତ ଓଡ଼ିଆ କବିଙ୍କୁ ନିଯୁକ୍ତି ଦେଇଥିଲା ଓ ମାତୃଭାଷା ଓଡ଼ିଆ ନେଇଥିବା ଦୁଇଜଣଯାକ ଛାତ୍ର ସେଥିରେ ଅକୃତକାର୍ଯ୍ୟ ହୋଇଥିଲେ । ଶିକ୍ଷାକ୍ଷେତ୍ରରେ ଏହି ବିଫଳତା ଗୋପବନ୍ଧୁଙ୍କ ଦୃଢ଼ ମନୋବଳକୁ ଭାଙ୍ଗିପାରିନାହିଁ । ୧୯୦୨ ମସିହା ଅକ୍ଟୋବର ମାସରେ ଲିଖିତ ଏକ କବିତାରେ ସେ କହିଛନ୍ତି :

"ଧର୍ମ ଅନୁକୂଳ ଯେବେ ମୋ କାମନାଚୟ
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।"

୧୯୦୩ ମସିହା ମାର୍ଚ୍ଚ ମାସରେ ବି.ଏ. ପରୀକ୍ଷା ଦେଲା ପରେ ପରେ ଏପ୍ରିଲ ୧୧ ଓ ୧୨ ତାରିଖରେ ବ୍ରହ୍ମପୁରରେ ଗଞ୍ଜାମ ଜାତୀୟ ସମିତି ଅନୁଷ୍ଠିତ ହୋଇଛି ଓ ସେହି ସମ୍ମିଳନୀରେ ଗୋପବନ୍ଧୁ ମୁକ୍ତାର ରାମଚନ୍ଦ୍ର ଦାସଙ୍କ ସହିତ ଯୋଗଦେଇଛନ୍ତି । ଉକ୍ତ ସମ୍ମିଳନୀ ଓଡ଼ିଆ ଜାତିର ଉଜ୍ଜ୍ୱଳ ଭବିଷ୍ୟତର ବାର୍ତ୍ତାବହ, ତାହା ଅନୁଭବ କରିଛନ୍ତି ଗୋପବନ୍ଧୁ । ଉକ୍ତ ସମ୍ମିଳନୀକୁ ଆଶାର ଉଜ୍ଜ୍ୱଳ ତାରକା ରୂପେ ସମ୍ବୋଧନ କରିଛନ୍ତି ଓ ବୃହତ୍ତର ଓଡ଼ିଶାର ଆଦ୍ୟ ମିଳନପୀଠ ଭାବରେ ତାହାକୁ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ସେଥିପାଇଁ ସେ କହିଛନ୍ତି :

ସୁସଭ୍ୟ ଇଂରେଜ-ରାଜ-ପିତୃ ସୁଶାସନେ
ଶତବର୍ଷ ଅନ୍ତେ ଏବେ ଉତ୍କଳ ଭୁବନେ,
ଫଳିଲା ପାଶ୍ଚାତ୍ୟ ଶିକ୍ଷା ସୁମଙ୍ଗଳ ଫଳ,
ସମବେତ ଉଦ୍ୟମର ଅଦ୍‌ଭୁତ ବଳ ।

ଗଞ୍ଜାମ ଜାତୀୟ ସମିତି ଅନୁଷ୍ଠିତ ହେବାର ମାସେ ପରେ ୧୯୦୩ ମସିହାର ବି.ଏ. ପରୀକ୍ଷା ଫଳ ପ୍ରକାଶିତ ହୋଇଛି ଓ ଗୋପବନ୍ଧୁ ସେହି ବର୍ଷ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । (ଉତ୍କଳଦୀପିକା ୩୮।୨୧ ; ୨୩.୫.୧୯୦୩) ଗୋପବନ୍ଧୁ ଛାତ୍ର ଜୀବନରେ ଜନସେବା ଓ ଜାତି-ଜାଗରଣ କାର୍ଯ୍ୟରେ ଏଭଳି ନିମଜ୍ଜିତ ହୋଇଯାଇଥିଲେ ଯେ ସ୍ୱାଧୀନ ଜୀବିକା ଅବଲମ୍ବନ କରି ଦେଶ ସେବାରେ ଆତ୍ମୋତ୍ସର୍ଗର ସିଦ୍ଧାନ୍ତ ସେ

ନେଇଛନ୍ତି । ୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ ଭାବଗୁରୁ ମୁକ୍ତାର ରାମଚନ୍ଦ୍ର ଦାସ ଓ ବନ୍ଧୁ ବ୍ରଜସୁନ୍ଦର ଦାସଙ୍କ ସହ ଯୋଗଦେଇଛନ୍ତି ଗୋପବନ୍ଧୁ । ବିଭିନ୍ନ ପ୍ରସ୍ତାବର ଆଲୋଚନାରେ କିନ୍ତୁ ସେ ଯୋଗଦେଇନାହାନ୍ତି । ପ୍ରଥମ ଅଧିବେଶନ ପରେ ପରେ ଓଡ଼ିଶା ବଙ୍ଗଳା ଅଥବା କେନ୍ଦ୍ର ପ୍ରଦେଶ ସହିତ ସଂଯୁକ୍ତ ହେବା ଉଚିତ – ଏହି ପ୍ରଶ୍ନକୁ ନେଇ ଉତ୍କଳ-ସମ୍ମିଳନୀର ନେତୃବୃନ୍ଦ ଓ ଏହାର ଶୁଭେଚ୍ଛୁବର୍ଗ ଦୁଇଟି ଦଳରେ ବିଭକ୍ତ ହୋଇପଡ଼ିଥିଲେ । ବିଭିନ୍ନ କାରଣରୁ ଗୋପବନ୍ଧୁ ଦ୍ୱିତୀୟ ବିକଳ୍ପଟିକୁ ସମର୍ଥନ କରି ଗଦ୍ୟରେ ଲେଖିଥିଲେ 'ପ୍ରାର୍ଥନା' ଶୀର୍ଷକରେ ଏକ ପୁସ୍ତିକା । ବେନାମୀରେ ପ୍ରକାଶିତ 'ପ୍ରାର୍ଥନା' ଥିଲା ଗୋପବନ୍ଧୁଙ୍କର ଦ୍ୱିତୀୟ ଗଦ୍ୟରଚନା । ଏହି ପୁସ୍ତିକା ନେଇ ଉତ୍କଳଗୌରବ ମଧୁସୂଦନ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ (୨୮.୧୨.୧୯୦୪ ଓ ୨୯.୧୨.୧୯୦୪)ରୁ ଗୋପବନ୍ଧୁଙ୍କୁ ବହିଷ୍କାର କରିଥିଲେ ।* ଏ ସଂପର୍କରେ କବି ଚିନ୍ତାମଣି ସ୍ମୃତିଚାରଣ କରି କହନ୍ତି :

> ପ୍ରଥମ ଦିନ ମଧୁବାବୁ ଗୋପବନ୍ଧୁ ଦାସଙ୍କୁ ସଭାରୁ ବାହାରି ଯିବାକୁ କହିଲେ । ତାଙ୍କର ଅପରାଧ ଏହି ଯେ, ଓଡ଼ିଶାକୁ ମଧ୍ୟପ୍ରଦେଶ ସଙ୍ଗେ ମିଶାଇବାକୁ ସେ ମତ ପ୍ରକାଶ କରିଥିଲେ । ଦଳକର ଇଚ୍ଛା – ବଙ୍ଗ

---

* ଗୋପବନ୍ଧୁଙ୍କର ଅଧିକାଂଶ ଜୀବନୀଲେଖକ ଏହି ଘଟଣାକୁ ଅନ୍ୟ ଭାବରେ ଉପସ୍ଥାପିତ କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଲେଖିଛନ୍ତି :

> "A number of Bengali friends of Gopabandhu came to attend the Conference from Calcutta, as they were attracted to the Conference after hearing of the lofty ideals of this organisation. Gopabandhu and his friends were at the gate... After the insistance of Madhu Babu, the Bengalees were not allowed to enter the Conference pandal. When Madhusudan saw Gopabandhu with a number of Bengali friends at the Conference gate, he shouted : "Who allowed the Bengalis to get into the pandal ? They must get out from here." Gopabandhu felt sad that such parochialism should be demonstrated in what he looked as a national assembly and himself came back with his friends without attending the Conference" (Dash : 1964, p. 27).

ଏହି କାହାଣୀଟି କେଉଁ ଆଧାର ଉପରେ ଗଢ଼ିଉଠିଛି ଜୀବନୀକାରମାନେ ତାହା ସ୍ପଷ୍ଟ କରିନାହାନ୍ତି । ଅପରପକ୍ଷରେ ସମକାଳୀନ ଘଟଣାବଳୀ ଚିନ୍ତାମଣିଙ୍କ ବକ୍ତବ୍ୟକୁ ସମର୍ଥନ କରେ ।

ସଙ୍ଗରେ ଯେଉଁପରି ଅଛି, ସେହିପରି ଥାଉ । ଅପର ଦଳଙ୍କର ମତ, ମଧ୍ୟପ୍ରଦେଶରେ ମିଶୁ । ...ମଧୁବାବୁ ରାଗିଯାଇ କହିଲେ– "ତୁମ୍ଭେ ବାହାରି ନ ଗଲେ ମୁଁ ଭଲଣ୍ଟିଅର ଦ୍ୱାରା ତୁମ୍ଭଙ୍କୁ ବାହାର କରିଦେବି ।" ତହୁଁ ମାତୃପ୍ରାଣ ଗୋପବନ୍ଧୁ କାନ୍ଦି କାନ୍ଦି ସଭାରୁ ଚାଲିଗଲେ । ...ସଭାରେ ଏତେ ଲୋକ ଥାଉଁ ଥାଉଁ ଏ ଅନ୍ୟାୟ ଜବରଦସ୍ତିର କେହି ପ୍ରତିବାଦ କଲେ ନାହିଁ (ମହାନ୍ତି : ୧୯୭୦ ପୃ.୧୨୦) ।

ପରେ ଅବଶ୍ୟ ମଧୁସୂଦନ ଗୋପବନ୍ଧୁଙ୍କୁ ଆପଣାର କରିଛନ୍ତି ଓ 'ଉତ୍କଳ-ସମ୍ମିଳନୀ'ର ତୃତୀୟ ଅଧିବେଶନରେ ଗୋପବନ୍ଧୁଙ୍କ କବିତା 'ପ୍ରାର୍ଥନା' (ପରେ 'ଅବକାଶଚିନ୍ତା'ରେ ସଂକଳିତ) ପ୍ରାରମ୍ଭିକ ସଙ୍ଗୀତ ରୂପେ ଗାୟନ କରାଯାଇଛି । ସେହି କବିତାରେ ଜଗନ୍ନାଥଙ୍କ ନିକଟରେ ଓଡ଼ିଶାର ନବଜୀବନ ପାଇଁ ପ୍ରାର୍ଥନା କରାଯାଇ ସମାଜର ପ୍ରତ୍ୟେକ ସ୍ତରରେ ଜାତୀୟଚେତନାର ସଂକ୍ରମଣକୁ ସ୍ୱାଗତ କରାଯାଇଛି । ତା'ସହ ଉତ୍କଳ-ଜାତୀୟତାର ପ୍ରବାହକୁ ଭାରତୀୟ ମହାଜାତୀୟତାର ତରଙ୍ଗ ସହିତ ମିଶାଇ ଦେବାପାଇଁ ଆହ୍ୱାନ ଦିଆଯାଇଛି :

"ଘେନି ଅପୂର୍ବ ଉତ୍ସାହ ଯେ,
ଭାରତର ମହା- ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ଯେ ।"

ନବଜାଗରଣକୁ ସମାଜର ଉପରସ୍ତରରେ ସୀମାବଦ୍ଧ ନକରି ସର୍ବସ୍ତରକୁ ନେଇଯିବା ତଥା ଓଡ଼ିଆତ୍ୱକୁ ମହାଭାରତୀୟତ୍ୱ ସହ ସମୀକୃତ କରିବାର ଏହି ଆକାଙ୍‌କ୍ଷା ଗୋପବନ୍ଧୁଙ୍କ ଜୀବନର ହୋଇଛି ପରମ ନିୟାମକ । ଏହି ଦୁଇ ଆଦର୍ଶର ବାସ୍ତବାୟନ ପାଇଁ ଜୀବନରେ ବରିନେଇଛନ୍ତି ସେ ପରମ ସ୍ୱାର୍ଥତ୍ୟାଗର ଚରମ ତପସ୍ୟା । ଗୋଟାଏ ଦିଗରେ ବ୍ୟକ୍ତିଜୀବନର ସ୍ୱାର୍ଥକୁ ଜଳାଞ୍ଜଳି ଦେଲାବେଳେ, ଅପରଦିଗରେ ସମାଜସତ୍ତାର କେନ୍ଦ୍ରରେ ସେ ଆପଣାକୁ ପ୍ରତିଷ୍ଠା କରିଛନ୍ତି । ତାଙ୍କର ପରବର୍ତ୍ତୀ ଜୀବନରେ ଅଧିକାଂଶ କାର୍ଯ୍ୟ ଆତ୍ମପ୍ରତିଷ୍ଠା ଲାଭର ରାଜସିକତା ନୁହେଁ, ଆତ୍ମୋତ୍ସର୍ଗର ସାତ୍ତ୍ୱିକତାରୁ ଉତ୍‌ସାରିତ ।

## ।। ଦୁଇ ।।

ବଡ଼ଭାଇ ନାରାୟଣଙ୍କ ମୃତ୍ୟୁ ପରେ ଆପଣା ଦୁଃଖାବହ ପାରିବାରିକ ଓ ବ୍ୟକ୍ତିଗତ ଜୀବନ ସଂପର୍କରେ 'ସମାଜ'ର ତା ୨୬.୧୧.୧୯୨୭ରିଖ ସଂଖ୍ୟାରେ ଗୋପବନ୍ଧୁ ଲେଖିଥିଲେ :

ଅତି ଶୈଶବାବସ୍ଥାରେ ମୋର ମାତୃବିୟୋଗ ହୋଇଥିଲା । 'ଦେଖିନାହିଁ ମୁହିଁ ମାତୃବଦନ, ପାନ କରିନାହିଁ ମାତୃସ୍ତନ' । ସ୍କୁଲରେ ପଢୁଥିଲାବେଳେ ପିତା ଚାଲିଗଲେ । କଲେଜରେ ପଢୁଥିଲାବେଳେ ଏକ ମାତ୍ର ପୁଅ ମଲା... ପଢ଼ା ଶେଷ ହେବା ସଙ୍ଗେ ସଙ୍ଗେ ମୋର ଗୃହସ୍ଥାଶ୍ରମ ଶେଷ ହେଲା । ବି.ଏଲ୍. ପରୀକ୍ଷା ପାସ୍ ଖବର ଏବଂ ପତ୍ନୀ ବିୟୋଗବାର୍ତ୍ତା ମୁଁ ଏକା ଦିନକେ ପାଇଥିଲି ।... ମାତା, ପିତା, ପତ୍ନୀ, ପୁତ୍ର, ବନ୍ଧୁ ଓ ସଖାମାନଙ୍କର ବିଚ୍ଛେଦ-ବେତ ବାରମ୍ବାର ଖାଇ ଖାଇ ଏହି ମୋର ଦେହ ଶିଝି ଗଲାଣି । (ଉଦ୍ଧୃତ, ତ୍ରିପାଠୀ ଓ ତ୍ରିପାଠୀ : ୧୯୨୮ ପୃ. ୧୨-୧୩)

ପାରିବାରିକ ସୂତ୍ରରୁ ଗୋପବନ୍ଧୁ ପାଇଥିଲେ ଜୀବନପ୍ରତି ଏକ ସନ୍ନ୍ୟାସୀସୁଲଭ ଦୃଷ୍ଟିକୋଣ । ଶୈଶବରେ ମାତୃବିୟୋଗ ତାଙ୍କୁ ନିର୍ଜନପ୍ରିୟ ଓ ପ୍ରକୃତିପ୍ରେମୀ କରିଥିଲା । ପ୍ରକୃତି ତାଙ୍କୁ ଦେଇଥିଲା ମାତୃକୋଳର ଆନନ୍ଦ । ତା'ରିଠାରୁ ସେ ଲାଭକରିଥିଲେ 'ପରାର୍ଥେ' ଜୀବନ ବଞ୍ଚିବାର ପ୍ରେରଣା । ପରିବାରରେ ଭାଗବତ-ଚର୍ଚ୍ଚା ଓ ବିଦ୍ୟାଳୟରେ ସାହିତ୍ୟିକ-ସଂସ୍କୃତିର ଗୁରୁତ୍ୱ ତାଙ୍କୁ ସାହିତ୍ୟିକ ହେବାର ସ୍ୱପ୍ନଜଗତକୁ ଆକର୍ଷିତ କରିଥିଲା । କିନ୍ତୁ ସନ୍ନ୍ୟାସୀସୁଲଭ ସାତ୍ତ୍ୱିକଭାବ ତଥା 'ପରାର୍ଥେ' ଜୀବନ ବଞ୍ଚିବାର ଆତ୍ମୋତ୍ସର୍ଗର କାମନା ସହିତ ଯଶଃଲିପ୍ସୁ କବି ହେବାର ଆକାଂକ୍ଷା ତାଙ୍କ ଆଦ୍ୟଜୀବନରେ ସଂଘର୍ଷର ସୂତ୍ରପାତ କରିଛି । ତେଣୁ ବନ୍ଧୁ ବୈଦ୍ୟନାଥ ମିଶ୍ର ଓ ବ୍ରଜସୁନ୍ଦର ଦାସଙ୍କ ସସ୍ନେହ ତାଡ଼ନାରେ ସ୍କୁଲ ଓ କଲେଜରେ ପଢ଼ିଲାବେଳେ ସେ ଗୋଟିଏ କବିତା ଓ ଏକ କବିତାସଂଗ୍ରହ ପ୍ରକାଶ କରିଛନ୍ତି ସତ୍ୟ, କିନ୍ତୁ ତାହା ଅନ୍ତରର ପ୍ରେରଣାରେ ନୁହେଁ । କବିତା ଥିଲା ତାଙ୍କ ବାଲ୍ୟ ଓ ଯୌବନ ନିଃସଙ୍ଗ ଜୀବନର ସାଥୀ – ନିଜକୁ ନିଜେ ଅନୁଭବ କରିବାର ମାଧ୍ୟମ । ତେଣୁ ତାଙ୍କ ସ୍କୁଲର ସାଥୀଗଣ 'ଉତ୍କଳସାହିତ୍ୟ'ରେ ନିଜର କବିତା ଓ ପ୍ରବନ୍ଧସବୁ ପ୍ରକାଶ କଲାବେଳେ ସେ ପତ୍ରପତ୍ରିକାଠାରୁ ଦୂରେଇ ରହିଛନ୍ତି । ପଣ୍ଡିତ ବାସୁଦେବ ରଥଶର୍ମାଙ୍କ 'କାବ୍ୟ-ଉପବନ' (ଉତ୍କଳ-ସାହିତ୍ୟ-୪।୪; ଏପ୍ରିଲ, ୧୯୦୦) ଭଳି କବିତା ଓ ବୈଦ୍ୟନାଥ ମିଶ୍ରଙ୍କ 'ଉତ୍କଳର ପଣ୍ଡିତମଣ୍ଡଳୀ' (ଉତ୍କଳସାହିତ୍ୟ-୮।୮; ଅଗଷ୍ଟ, ୧୯୦୦) ଭଳି ପ୍ରବନ୍ଧ ପ୍ରକାଶିତ ହେଲାବେଳେ, ସମକାଳରେ ଗୋପବନ୍ଧୁଙ୍କ ଦ୍ୱାରା ରଚିତ 'ବିଂଶଶତାବ୍ଦୀର ପ୍ରଥମ ଦିନ ବାରବାଟୀ ଦର୍ଶନ' 'ଗୋଟିଏ କାଙ୍କଣ ଗଛ' ପ୍ରଭୃତି କବିତା ପାଣ୍ଡୁଲିପି ଆକାରରେ ପଡ଼ିରହିଛି ।

୧୯୦୬ ମସିହାରେ ଗୋପବନ୍ଧୁଙ୍କ ଅଭିନ୍ନ ହୃଦୟବନ୍ଧୁ ବ୍ରଜସୁନ୍ଦର 'ମୁକୁର' ନାମରେ ଏକ ମାସିକ ସାହିତ୍ୟ-ପତ୍ର ପ୍ରକାଶର ଯୋଜନା କରନ୍ତି ଓ ଏପ୍ରିଲ ମାସରେ

ତାହାର ପ୍ରଥମ ସଂଖ୍ୟା ପ୍ରକାଶିତ ହୁଏ । ବନ୍ଧୁ ବ୍ରଜସୁନ୍ଦରଙ୍କ ବାଧବାଧକତାରେ ଓ ଲେଖା ମାଧମରେ ଦେଶକୁ କିଛି ଦେବା ସମ୍ଭବ, ଏହା ବିଶ୍ୱାସକରି ଏହି ପତ୍ରିକାରେ ଦେଶ ଓ ଜାତିକୁ ପ୍ରାଣର ସହ ଭଲପାଉଥିବା ଓ ଦେଶକୁ ଆଗକୁ ନେବାପାଇଁ ପ୍ରାଣପଣ କରିଥିବା ଗୋପବନ୍ଧୁ କବି ଓ ପ୍ରାବନ୍ଧିକ ଭାବରେ ଆତ୍ମପ୍ରକାଶ କରନ୍ତି । 'ମୁକୁର'ର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା (ଏପ୍ରିଲ, ୧୯୦୬)ର ପ୍ରଥମ ପୃଷ୍ଠାରେ ପ୍ରକାଶିତ ହୁଏ ଗୋପବନ୍ଧୁଙ୍କ 'ଭକ୍ତ କବିବର ଜଗନ୍ନାଥ ଦାସ' କବିତା ଓ ଦ୍ୱିତୀୟ ପୃଷ୍ଠାରେ ଆରମ୍ଭ ହୁଏ 'ବ୍ରାହ୍ମଣ ସମିତିର ଉଦ୍ଦେଶ୍ୟ ଓ ପ୍ରଚାର' ଅଭିଭାଷଣ । କବିତାଟିରେ ପୂଜ୍ୟପୂଜାର ପରଂପରା କେବଳ ସେ ଆରମ୍ଭ କରିନାହାନ୍ତି, ଐତିହ୍ୟ କିଭଳି ଭବିଷ୍ୟତକୁ ଅନୁପ୍ରେରିତ ତଥା ପଥ-ନିର୍ଦ୍ଦେଶ କରିପାରେ, ତାହାର ସୂଚନା ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ଜଗନ୍ନାଥ ଦାସ କେବଳ ଭକ୍ତକବି ନୁହନ୍ତି, ସେ ଜଗନ୍ନାଥଙ୍କର ଅବତାର । 'ବଳରାମ ଦାସ' କବିତାରେ ଗୋପବନ୍ଧୁ ଲେଖିଛନ୍ତି :

"ହୁଏ ମୋ ପ୍ରତୀତି ନୀଳାଚଳପତି
ଭକତ-ବନ୍ଧୁ ଠାକୁର
ଉତ୍କଳ-କଲ୍ୟାଣେ ଯୁଦ୍ଧ-ଅଭିଯାନେ
ଜିଣିଲେ ଯେ କାଞ୍ଚିପୁର ।
କଳିରୂପେ ପୁଣି ଅବତରି ବେନି
ଜଗନ୍ନାଥ, ବଳରାମ,
ଧର୍ମ-କର୍ମ-ଦୀକ୍ଷା ସାହିତ୍ୟ ସୁଶିକ୍ଷା
ପ୍ରଚାରି ରଖିଲେ ନାମ ।
ଏବେ ନୀଳାଚଳେ ରହିଛ ନିଶ୍ଚଳେ
ଦେଖି ଏ ଦଶା କିପରି ?
ଛାଡ଼ିଣ ଆସ୍ଥାନ ଆସ ଆର୍ତ୍ତତ୍ରାଣ !
ଚଳାଅ ଉତ୍କଳ ତରୀ ।"

ପୂର୍ବୋକ୍ତ ଅଭିଭାଷଣରେ ସେ ବ୍ରାହ୍ମଣ ସମିତିର ସଭାପତି ଓ ସମବେତ ସଭ୍ୟମାନଙ୍କୁ ଉଦ୍‌ବୋଧନ ଦେଇ କହିଛନ୍ତି :

> ...ଇଂରେଜୀରେ ଗୋଟିଏ କଥା ଅଛି "God helps those who help themselves" ଯେଉଁମାନେ ନିଜ ଉପରେ ନିର୍ଭର କରି ସଂସାରରେ ଜୀବନ ଯାତ୍ରା ନିର୍ବାହ କରିବାର ଚେଷ୍ଟା କରନ୍ତି ବାସ୍ତବିକ ଭଗବାନ ନିରନ୍ତର ସେମାନଙ୍କ ପକ୍ଷ ଏବଂ ସହାୟ । ଏଣିକି ଆଉ କେବଳ ଭିକ୍ଷାଂ ଦେହି ଭିକ୍ଷାଂ ଦେହି କରି ଚିତ୍କାର କରି ବୁଲିଲେ

ଚଳିବ ନାହିଁ । ଆମ୍ଭେମାନେ ଯଥାଶକ୍ତି ନିଜର ସମସ୍ତ ବୁଦ୍ଧି, ବଳ ବ୍ୟୟ କରି ନିଜର ଉନ୍ନତିର ପନ୍ଥା ନିଜେ ଖୋଜି ନେବା ପ୍ରୟୋଜନ । ଭିକ୍ଷାବୃତ୍ତିରେ ପୃଥିବୀର କୌଣସି ଜାତି ଉନ୍ନତି ଲାଭ କରିନାହିଁ । ଯେତେଦିନ ପର୍ଯ୍ୟନ୍ତ ନିଜର ଅନ୍ତର୍ନିହିତ ଶକ୍ତି ବିକଶିତ ହୋଇ କାର୍ଯ୍ୟକାରୀ ହୋଇନାହିଁ, ପରମୁଖାପେକ୍ଷୀ ହୋଇ ପର ଅନୁଗ୍ରହ ପ୍ରାର୍ଥନାରେ ପ୍ରକୃଷ୍ଟ ଜାତୀୟ କଲ୍ୟାଣର ଆଶା କରିବା ବିଡ଼ମ୍ବନା ମାତ୍ର ।'' (ମୁକୁର ୧୧; ଏପ୍ରିଲ, ୧୯୦୬, ପୃ.୪)

କେବଳ 'ପରମୁଖାପେକ୍ଷୀ ନ ହେବାକୁ' ସେ ଉଦ୍‌ବୋଧନ ଦେଇନାହାନ୍ତି, ଗୋଟିଏ ଜାତିକୁ ସେବା ଓ ଭଲପାଇଥିବା ଦେଇ ତଳୁ ଉଠାଇବାକୁ ଚେଷ୍ଟାକରିଛନ୍ତି । ସେହି ପ୍ରଚେଷ୍ଟାର ଅନ୍ୟତମ ମାଧ୍ୟମ ହୋଇଛି ତାଙ୍କର କବିତା ଓ ପ୍ରବନ୍ଧାବଳୀ । ପ୍ରଥମ ଚାରିବର୍ଷର 'ମୁକୁର'ରେ ପ୍ରକାଶିତ ହୋଇଥିବା ତେଇଶଟି କବିତା ଓ ପାଞ୍ଚୋଟି ପ୍ରବନ୍ଧ ମୁଖ୍ୟତଃ ଜାତୀୟ-ଜାଗରଣ ଉଦ୍ଦେଶ୍ୟରେ ଲିଖିତ । କବି ବା ପ୍ରାବନ୍ଧିକ ଭାବରେ ପରିଚିତ ହେବାର ଆଗ୍ରହରୁ ବା ଯଶଃଲିପ୍‌ସାରୁ ସେଗୁଡ଼ିକ ଲିଖିତ ଓ ପ୍ରକାଶିତ ହୋଇନଥିଲା । ତେଣୁ ଗୋପବନ୍ଧୁ ଯେତେବେଳେ ଅତ୍ୟନ୍ତ ସକ୍ରିୟଭାବରେ କର୍ମଭୂମିକୁ ଓହ୍ଲାଇ ଆସିଛନ୍ତି, ସେତେବେଳେ କବିତା ଲକ୍ଷ୍ମୀ 'ନୀରବ' ହୋଇଯିବାକୁ ଶ୍ରେୟଃ ମନେକରିଛନ୍ତି । ଦୀର୍ଘ ବାରବର୍ଷ ଧରି ସେ ଏକ ପ୍ରକାର କବିଜୀବନରୁ ନେଇଛନ୍ତି ସ୍ୱେଚ୍ଛାକୃତ ଅବସର । ବେଳେ ବେଳେ ସ୍ୱାଗତ-ସଙ୍ଗୀତ ଆକାରରେ ବା ବିଦାୟଗୀତିକା ରୂପରେ ପଦେ ଅଧେ କବିତା ତାଙ୍କ ମୁଖରେ ଉଚ୍ଚାରିତ ହୋଇଛି ।

ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିବାବେଳେ ଦୈତାରି ଦାସଙ୍କ ତରୁଣ ସହକର୍ମୀ ମୁକ୍ତାର ରାମଚନ୍ଦ୍ର ଦାସ ଥିଲେ ଗୋପବନ୍ଧୁଙ୍କର ଅଭିଭାବକ । ତାଙ୍କରି ସଂପର୍କରେ ଆସି ଗୋପବନ୍ଧୁଙ୍କ ଭିତରେ ଥିବା ମାନବସେବା ଓ ଦେଶସେବାର ଆକାଙ୍କ୍ଷା ବାସ୍ତବରୂପ ପରିଗ୍ରହ କରିଥିଲା ଓ 'ପୁରୀ ବ୍ରାହ୍ମଣ ସମିତି', 'ପୁରୀ ସେବା ସମିତି'' ଆଦି ସହିତ ସେ ଘନିଷ୍ଠ ହୋଇପଡ଼ିଥିଲେ । ରାମଚନ୍ଦ୍ର ଦାସ ଗୋପବନ୍ଧୁଙ୍କ ଭାଷାରେ ଥିଲେ ତାଙ୍କର 'ସଖା ଓ ପ୍ରେରକ, ଅଭେଦାତ୍ମା ବନ୍ଧୁ' । ଗୋଟିଏ ପ୍ରସଙ୍ଗରେ ରାମଚନ୍ଦ୍ରଙ୍କ ସଂପର୍କରେ ସେ କହିଥିଲେ :

ପୁରୀର ସ୍ୱନାମଧନ୍ୟ ସ୍ୱର୍ଗୀୟ ରାମଚନ୍ଦ୍ର ଦାସ ନିଜ ଗୁଣରେ ଉତ୍କଳରେ ସୁପରିଚିତ । ...ରାମଚନ୍ଦ୍ର ମୋର ଆତ୍ମୀୟ ଥିଲେ । ମୁଁ ତାଙ୍କୁ ସୋଦର, ସଖା ଏବଂ ଶିକ୍ଷକ ବୋଲି ମଣୁଥିଲି; ମୋ ଜୀବନର ପ୍ରଭାତ ତାଙ୍କ ଉପଦେଶ ଆଲୋକରେ ଆଲୋକିତ, ତାଙ୍କ ସ୍ନେହସୁଧାରେ ସ୍ନିଗ୍ଧ ଏବଂ

ତାଙ୍କ ଆଶ୍ୱାସ ଉତ୍ସାହ ସମୀରଣରେ ପୁଲକିତ ହୋଇଅଛି । (ନୀଳାଚଳ ସମାଚାର; ୨.୪.୧୯୦୯)

ତାଙ୍କ ସହ ଗୋପବନ୍ଧୁ ଯୋଗଦେଇଛନ୍ତି 'ଗଞ୍ଜାମ ଜାତୀୟ ସମିତି'ର ଅଧିବେଶନରେ । ଅଗ୍ନିକଣାର ସଂପର୍କରେ ଦାହ୍ୟ ପଦାର୍ଥ ଆସିଲେ ଯେଭଳି ପ୍ରଜ୍ୱଳିତ ହୋଇଉଠେ, ଠିକ୍ ସେହିଭଳି ରାମଚନ୍ଦ୍ର ଗୋପବନ୍ଧୁଙ୍କୁ ଦେଶସେବା ଯଜ୍ଞରେ ସମିଧରୂପରେ ପ୍ରଜ୍ୱଳିତ ହେବାର ସୁଯୋଗ ଦେଇଛନ୍ତି । 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ ଜଣେ ପୂର୍ଣ୍ଣବୟସ୍କ ଗ୍ରାଜୁଏଟ୍ ହୋଇ ମଧ୍ୟ ସେ ଅନ୍ୟ ଛାତ୍ରମାନଙ୍କ ସହ ସ୍ୱେଚ୍ଛାସେବକର କାର୍ଯ୍ୟ କରିଛନ୍ତି । ପରେ ଏହି ସ୍ୱେଚ୍ଛାସେବୀମାନଙ୍କୁ ନେଇ ୧୬.୭.୧୯୦୪ ତାରିଖରେ ଗଠିତ ହୋଇଛି, ଉତ୍କଳ ୟଙ୍ଗ ମେନ୍ସ ଆସୋସିଏସନ୍ । ମଧୁବାବୁଙ୍କର ପାଳିତା କନ୍ୟା ଶୈଳବାଳା ଥିଲେ ଏହାର ସଂପାଦକ, ଗୋପବନ୍ଧୁ ଓ ବ୍ରଜସୁନ୍ଦର ଥିଲେ ଏହାର ଯୁଗ୍ମ-ସଂପାଦକ । ଶୈଳବାଳାଙ୍କର ଅହଂ-ସର୍ବସ୍ୱ ଆଚରଣ ଓ ପରେ ପରେ ଗୋପବନ୍ଧୁଙ୍କର ଅନୁପସ୍ଥିତି (ବି.ଏଲ୍. ପଢ଼ା ପାଇଁ) କାରଣରୁ 'ଉତ୍କଳ ୟଙ୍ଗ ମେନ୍ସ ଆସୋସିଏସନ୍' ଭାଙ୍ଗି ପଡ଼ିଛି ।* ୧୯୦୬ ମସିହାରେ ଗୋପବନ୍ଧୁ ଓ ବ୍ରଜସୁନ୍ଦରଙ୍କ ଯୁଗ୍ମ-ସଂପାଦକତ୍ୱରେ ଆରମ୍ଭ ହୋଇଛି 'ୟଙ୍ଗ ଉତ୍କଳ ଆସୋସିଏସନ୍' ବା 'ଉତ୍କଳ ଯୁବକ ସମିତି' । ଏହି 'ଉତ୍କଳ ଯୁବକ ସମିତି' ଓ ଏହାର ପରବର୍ତ୍ତୀ ରୂପ 'କେନ୍ଦ୍ର ଯୁବ ଉତ୍କଳ ସଂଘ' ମଧ୍ୟଦେଇ ଗୋପବନ୍ଧୁ ବନ୍ୟାଦୁର୍ଗତ, ଦୁର୍ଭିକ୍ଷ-ପ୍ରପୀଡ଼ିତ ଜନସାଧାରଣଙ୍କର ସେବା କରିଛନ୍ତି; 'ଉତ୍କଳ

---

* 'ଉତ୍କଳ ୟଙ୍ଗ ମେନ୍ସ ଆସୋସିଏସନ୍' ଭାଙ୍ଗିଯିବାର ବିବରଣୀ ଦେଇ ଆପଣାର ଆତ୍ମଜୀବନୀରେ ଶୈଳବାଳା କହନ୍ତି :

> After a year I broke down in health and in 1905 I was sent to Hazaribagh for a change and left my Association in charge of the Joint Secretary. My father financed the Association. After a year the Joint Secretary came to my father and said it was impossible for any one of them to give so much time to the Association as I did and the result was the Association becomming less popular and it should be wound up. The Young Men's Association thus had a premature death in 1905 and I shed tears over my baby Association. (A Look Before and After)

ସାଧାରଣ ଜୀବନରେ ଥିବା ଆମର ପୁରୁଷ ତଥା ନାରୀମାନେ ନିଜ ଦୋଷକୁ ଲୁଚାଇବା ପାଇଁ ଓ ଅନ୍ୟର ଅବଦାନକୁ ଅସ୍ୱୀକାର କରିବାପାଇଁ କିଭଳି ବାକ୍-ଚାତୁରୀ/ରଚନା-ଚାତୁରୀ ପ୍ରଦର୍ଶନ କରିଥାନ୍ତି ଶୈଳବାଳାଙ୍କ ପୂର୍ବୋଦ୍ଧୃତ ରଚନା ତାହାର ଦୃଷ୍ଟାନ୍ତ ।

ସମ୍ମିଳନୀ'କୁ ସାମନ୍ତମାନଙ୍କ କବଳରୁ ମୁକ୍ତ କରିବା ଲାଗି ଚେଷ୍ଟା କରିଛନ୍ତି । ବୃହତ୍ତର ଜନଗୋଷ୍ଠୀକୁ ଆପଣାର କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେବାପାଇଁ ସେ ମାଧ୍ୟମରୂପେ ଗ୍ରହଣ କରିଛନ୍ତି ସମ୍ବାଦପତ୍ର, ପ୍ରଚାରପତ୍ର ଓ ବକ୍ତୃତା । ଏସବୁର ଭାଷା ହେଲା ଗଦ୍ୟଭାଷା । ତେଣୁ ବାଲ୍ୟକାଳରୁ କବି ହେବାର ସ୍ୱପ୍ନ ଦେଖିଥିବା ଗୋପବନ୍ଧୁଙ୍କର ପ୍ରମୁଖ ମାଧ୍ୟମ ହୋଇଛି ଗଦ୍ୟ । ତାହା କାହାଣୀ ଓ ସଂଳାପ ରଚନା ପାଇଁ ଉଦ୍ଦିଷ୍ଟ ଗଦ୍ୟ ନୁହେଁ – ଗୋଟାଏ ଜାତିର ଭବିଷ୍ୟତ ନିର୍ମାଣ କରିବାପାଇଁ ଅନୁପ୍ରେରଣା ଦେଇପାରୁଥିବା, ଗୋଟିଏ ଜାତିର ଦୁର୍ଦ୍ଦଶାକୁ ପ୍ରାଣବନ୍ତ ଭାଷାରେ ଅନ୍ୟ ଆଗରେ ଉପସ୍ଥାପିତ କରୁଥିବା ଗଦ୍ୟ । 'ଉତ୍କଳ-ଦୀପିକା' 'ନୀଳାଚଳ ସମାଚାର' ଆଦି ସମ୍ବାଦପତ୍ରରେ ପ୍ରକାଶିତ ତାଙ୍କର ବନ୍ୟା/ଦୁର୍ଭିକ୍ଷ ସମ୍ପର୍କିତ ବିବରଣୀ, 'ସମ୍ମିଳନୀ ସମ୍ବନ୍ଧେ ଦୁଇ କଥା' (ନୀଳାଚଳ ସମାଚାର – ୭.୨.୧୯୦୮) ଭଳି ପ୍ରସ୍ତାବ ଓ 'ସମ୍ମିଳନୀ ଓ ତହିଁର ଉଦ୍ଦେଶ୍ୟକୁ ଲୋକରେ ପରିଚିତ ଓ ପ୍ରିୟ କରିବାର ତିନୋଟି ସହଜ ଉପାୟ' ଭଳି ପୁସ୍ତିକା ତଥା ପୁରୀଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନରେ ଦୁର୍ଭିକ୍ଷ ସଂପର୍କରେ ସେ ଦେଇଥିବା ବକ୍ତୃତା, ଏହାର ଦୃଷ୍ଟାନ୍ତ । ଉତ୍କଳ ସମ୍ମିଳନୀର ସଂପୃକ୍ତ ଅଧିବେଶନରେ ସେ କହିଥିଲେ :

> ଦେଶର ଲୋକେ ଅନାହାରରେ ମରୁଛନ୍ତି, ଅନ୍ୟମାନେ ଦେଖୁଛନ୍ତି, ଶୁଣୁଛନ୍ତି କିନ୍ତୁ ନିଶ୍ଚେଷ୍ଟ; ଟିକିଏ ବ୍ୟାକୁଳ ମଧ୍ୟ ହେଉନାହାନ୍ତି । ସେ ହୃଦୟହୀନ ନିର୍ମମ ଦେଶରେ ଜାତୀୟଜୀବନର ଅର୍ଥ କିଛି ଅଛି କି ? ଅନ୍ନାଭାବରେ ଶତ ଶତ କୃଷକ ମରୁଛନ୍ତି, କୃଷକ କୁଳ ଲୋପ ପାଇବାକୁ ବସୁଛି । କୃଷି ବିଷୟରେ ସରକାର କଅଣ ଉନ୍ନତି କରିବାର କଳ୍ପନା କରୁଅଛନ୍ତି ବୋଲି ତାଙ୍କୁ ପଚାରିବା ଓ ଧନ୍ୟବାଦ ଦେବା ପୂର୍ବରୁ କୃଷକ ବଂଶର ରକ୍ଷାବିଧାନ କରିବାକୁ ସଚେଷ୍ଟ ହେବା କି ସମ୍ମିଳନୀର କର୍ତ୍ତବ୍ୟ ନୁହେଁ ? ଦେଶର ଏପରି ଘୋର ଦୁର୍ଗତି ସମୟରେ ଦେଶସ୍ଥ ମାନ୍ୟଗଣ୍ୟ ଶିକ୍ଷିତ ଓ ସମୃଦ୍ଧିଶାଳୀ ବ୍ୟକ୍ତିମାନେ ଜାତୀୟ କଲ୍ୟାଣ ଆଲୋଚନା ନିମନ୍ତେ ଏକତ୍ରିତ ହେବେ; କିନ୍ତୁ ଏ ଦୁର୍ଗତି, ଏ ଦାରୁଣ ଦୁର୍ଭିକ୍ଷ-ନିର୍ଯ୍ୟାତିତ ପ୍ରତି ଆଦୌ ଦୃଷ୍ଟିକ୍ଷେପ କରିବେ ନାହିଁ, ଏହା କି ସାମାନ୍ୟ ଆକ୍ଷେପର ବିଷୟ ? ଏହା ଦେଖି ସମ୍ମିଳନୀକୁ କେହି ବିରାଟ ପ୍ରହସନ ବୋଲି କହିଲେ ଦୋଷ କଅଣ ? (ଉତ୍କଳ ସମ୍ମିଳନୀର ବିବରଣୀ, ୧୯୦୮)

ମାନବିକତାକୁ ଓ ଜୀବନ୍ତ ମଣିଷକୁ ଆସନ୍ନ ଧ୍ୱଂସ/ମୃତ୍ୟୁ ମୁଖରୁ ରକ୍ଷାକରିବା ପାଇଁ ଗୋପବନ୍ଧୁ ୧୯୦୭ ମସିହା ପରେ ବିଭିନ୍ନ ପ୍ରକାର କାମରେ ହାତ ଦେଇଛନ୍ତି – ବିଦ୍ୟାଳୟ ସ୍ଥାପନ ଓ ପରିଚାଳନା ତା' ମଧ୍ୟରୁ ଅନ୍ୟାନ୍ୟ । ତା' ବ୍ୟତୀତ ଗୋଟିଏ

ସାପ୍ତାହିକ ସମ୍ବାଦପତ୍ରର ସଂପାଦନା ସହ ସେ ଜଡ଼ିତ ହୋଇପଡ଼ିଛନ୍ତି । ୧୯୧୩ ମସିହା ସେପ୍ଟେମ୍ବର ମାସରେ ଶଶିଭୂଷଣ ରଥ ବ୍ରହ୍ମପୁରଠାରେ ଏକ ପ୍ରେସ୍ ସ୍ଥାପନ କରି ସେଠାରୁ ଏକ ସାପ୍ତାହିକ ସମ୍ବାଦପତ୍ର 'ଆଶା' ନାମ ଦେଇ ପ୍ରକାଶ କରନ୍ତି । ବହୁଦିନ ପର୍ଯ୍ୟନ୍ତ (ପ୍ରାୟତଃ ୧୯୧୯ ପର୍ଯ୍ୟନ୍ତ) ଏହି ସମ୍ବାଦପତ୍ରର ସମ୍ପାଦକୀୟ ଓ ଅଗ୍ରଲେଖ ଲେଖୁଥିଲେ ଗୋପବନ୍ଧୁ । କାରଣ ସେ ମନେକରୁଥିଲେ, ବୃହତ୍ତର ଜନସମାଜ ନିକଟରେ ପହଞ୍ଚିବାପାଇଁ ଓ ଜନସାଧାରଣଙ୍କ ସମସ୍ୟା ଉପସ୍ଥାପନ କରିବାପାଇଁ ଉପଯୁକ୍ତ ମାଧ୍ୟମ ହେଉଛି ସମ୍ବାଦପତ୍ର । ତା' ସହିତ ଗୋଟିଏ ଭାଷାର ମୌଳିକତା ରକ୍ଷା କ୍ଷେତ୍ରରେ ଓ ଗୋଟିଏ ଭାଷାକୁ ଜାତୀୟଜୀବନର ସ୍ୱାଦ ଆଣି ଦେବାରେ ସମ୍ବାଦପତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଗୋପବନ୍ଧୁଙ୍କ ସହଯୋଗ ଫଳରେ ଖୁବ୍ ଅଳ୍ପଦିନ ମଧ୍ୟରେ 'ଆଶା' ଲାଭକରିଥିଲା ଆଶାତୀତ ସଫଳତା । ଓଡ଼ିଶାର ବିଭିନ୍ନ ଅଞ୍ଚଳ ମଧ୍ୟରେ ବିଚ୍ଛିନ୍ନଭାବକୁ ଅପସାରିତ କରି ସମସ୍ତଙ୍କୁ ଗୋଟିଏ ସୂତାରେ ଗୁନ୍ଥିବା କାର୍ଯ୍ୟ ତାହା କରିଥିଲା ।

ପ୍ରାକୃତରୁ ବିବର୍ତ୍ତନ ପ୍ରକ୍ରିୟାରେ ସୃଷ୍ଟି ହୋଇଥିବା ଓଡ଼ିଆ ଭାଷା ଊନବିଂଶ ଶତାବ୍ଦୀରେ ବିଭିନ୍ନ କାରଣରୁ ସଂସ୍କୃତାୟିତ ହୋଇପଡ଼ିଥିଲା ଓ ଆଧୁନିକ ଓଡ଼ିଆ ମୁଦ୍ରଣ ଶିଳ୍ପର ପ୍ରାରମ୍ଭିକ କାଳରେ ସମକାଳୀନ ବଙ୍ଗଳାର ଅନୁକରଣରେ ଓଡ଼ିଆରେ କେତେଗୁଡ଼ିଏ ଅନାବଶ୍ୟକ ଅକ୍ଷର ସୃଷ୍ଟି କରାଯାଇ ଓଡ଼ିଆ ଭାଷାକୁ ଅଯଥା କୃତ୍ରିମ କରାଯାଇଥିଲା । ଓଡ଼ିଆ ଭାଷାକୁ ଅଯଥା କୃତ୍ରିମତାରୁ ମୁକ୍ତ କରି, ଏହାର ମୁଦ୍ରଣଶିଳ୍ପକୁ ଅଧିକ ପରିଚ୍ଛନ୍ନ କରିବାପାଇଁ ଆବଶ୍ୟକ ଥିଲା ଲିପି-ସଂସ୍କାରର । ଓଡ଼ିଆ ଲିପି-ସଂସ୍କାରର ପ୍ରଥମ ପ୍ରଚେଷ୍ଟା କରିଥିଲେ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲ ସଂପର୍କରେ ପ୍ରକାଶିତ ଏକ ବିଜ୍ଞାପନ ମାଧ୍ୟମରେ :

> ଗତ ୧୦ ତାରିଖ **ବିଜ୍ଞାପନ** ଦିନ ବିହାର ଓଡ଼ିଶାର ଶିକ୍ଷାବିଭାଗର ଡିରେକ୍‌ଟର ଓଡ଼ିଶା ବିଭାଗର ଇନ୍‌ସପେକ୍‌ଟର ସତ୍ୟବାଦୀ ସ୍କୁଲ ପରିଦର୍ଶନ କରିଅଛଂତି । ସ୍କୁଲକୁ ବିଶ୍ୱବିଦ୍ୟାଳୟର ଅଂତର୍‌ଭୁକ୍‌ତ କରାଇବା ନିମଂତେ ଗୃହ ଆଦି ଯାହା ଯାହା ପ୍ରୟୋଜନ ସେମାନେ ସେସବୁ ଦେଖି ଯାଇଅଛଂତି । ଶୀଘ୍ର ବିଶ୍ୱବିଦ୍ୟାଳୟକୁ ଆବେଦନ କରାଯିବ । ଗତ ବର୍ଷ ହାଇସ୍କୁଲର ଦ୍ୱିତୀୟ ଶ୍ରେଣୀ ପର୍ଯଂତ ମାତ୍ର ଥିଲା । ଏ ବର୍ଷ ପ୍ରଥମ ବର୍ଷ ଶ୍ରେଣୀ ନ ଫିଟାଇବାର ଠିକ୍ କରିଥିଲୁଁ । କିନ୍ତୁ କର୍ତୃପକ୍ଷମାନଂକ ସଂଗେ ପରାମର୍ଶ କରିବାରେ ପ୍ରଥମ ଶ୍ରେଣୀ ଫିଟାଇବା ଉଚିତ ବିବେଚିତ ହେବାରୁ ପ୍ରଥମ ଶ୍ରେଣୀଟି ଫିଟାଇଅଛୁଁ । ପ୍ରଥମ ଶ୍ରେଣୀରେ ମାସିକ ବେତନ ଦୁଇ ଟଂକା, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ

ଦେଢ଼ ଟଂକା, ଚତୁର୍ଥ ଶ୍ରେଣୀରେ ଏକ ଟଂକା, ପଂଚମ ଓ ଷଷ୍ଠ ଶ୍ରେଣୀରେ ଆଠ ଅଣା ଏବଂ ସପ୍ତମ ଶ୍ରେଣୀରେ ଛ ଅଣା ମାତ୍ର । ଏହା ଛଡ଼ା ଯେଉଁ କୋଚିଂ କ୍ଲାସ ଅଛି, ସେଥିର ବେତନ ବାରଅଣା । ଛାତ୍ରମାନେ ବିଳଂବରେ ଆସିଲେ ଅସୁବିଧା ଓ କ୍ଷତିରେ ପଡ଼ିବେ ।

ଗୋପବଂଧୁ ଦାସ

ସଂପାଦକ, ସତ୍ୟବାଦୀ ସ୍କୁଲ, ପୁରୀ

(ଆଶା, ୧।୧୮; ୧୨.୧.୧୯୧୪)

ସଂପୃକ୍ତ ବିଜ୍ଞାପନରେ ଥିବା 'ଡିରେକ୍‌ଟର', 'ଇନ୍‌ସପେକ୍‌ଟର', 'ଅଛଂତି', 'ଅଂତର୍‌ଭୁକ୍ତ', 'ନିମଂତେ', 'ପର୍ଯଂତ', 'କିଂତୁ', 'କର୍‌ତୃପକ୍ଷମାନଂକ', 'ସଂଗେ' ତଥା 'ଟଂକା' ଭଳି ଶବ୍ଦର ବନାନ ସେତେବେଳର ସମ୍ବାଦପତ୍ର ଓ ସାହିତ୍ୟିକମାନଙ୍କ ମଧ୍ୟରେ ଏକ ଆଲୋଡନ ସୃଷ୍ଟି କରିଥିଲା – ଯାହା 'ଲିପିସଂସ୍କାର' ଆନ୍ଦୋଳନ ଭାବରେ ପ୍ରସିଦ୍ଧ । ବାଲେଶ୍ୱରରୁ ପ୍ରକାଶିତ 'ସମ୍ବାଦବାହିକା', କଟକରୁ ପ୍ରକାଶିତ 'ଉତ୍କଳଦୀପିକା' ପ୍ରଭୃତି ସମ୍ବାଦପତ୍ର ଓ 'ଉତ୍କଳସାହିତ୍ୟ' ଭଳି ସାହିତ୍ୟପତ୍ର ତଥା ଫକୀରମୋହନ, ଗଙ୍ଗାଧର ଓ ପଦ୍ମଚରଣ ପଟ୍ଟନାୟକଙ୍କ ଭଳି ସାହିତ୍ୟିକମାନେ ଏହି 'ଲିପିସଂସ୍କାର'କୁ ଘୋର ବିରୋଧ କରିଥିଲେ । ଏହାର ଉତ୍ତରରେ ଗୋପବନ୍ଧୁ ଯାହା ଲେଖିଥିଲେ, ତାହା ଆଜି ବି ତାତ୍‌ପର୍ଯ୍ୟପୂର୍ଣ୍ଣ :

> ଆମ୍ଭମାନଙ୍କ 'ଟଂକା', 'ପଂଚମ' ପ୍ରଭୃତିର ବ୍ୟବହାର ସହଯୋଗୀ ''ଭଞ୍ଜକବିଙ୍କଠାରୁ ଆରମ୍ଭ କରି ଚଳିତ ଯୁଗର ଉତ୍କଳୀୟ ଲେଖକ ଓ ଲେଖିକା ବର୍ଗଙ୍କ ଲେଖନୀରୁ ଏବଂ ସଂସ୍କୃତ ଗ୍ରନ୍ଥରେ ସୁଦ୍ଧା ଦେଖିନାହାନ୍ତି'' ବୋଲି ଦୁଃଖିତ ଅଛନ୍ତି ।... ଓଡ଼ିଆ ଭାଷା ଯେ ଦିନେ ସଂସ୍କୃତରୁ ବିଚ୍ଛିନ୍ନ ହେବ ଏକଥାରେ ସଂଦେହ କରାଯାଇନପାରେ । ତେବେ 'ସଂସ୍କୃତଗ୍ରନ୍ଥ' ପ୍ରତି ସହଯୋଗୀଙ୍କର ଏତେ ସ୍ୱେଚ୍ଛାଦାସତ୍ୱ ବା ସହାନୁଭୂତି କାହିଁକି ବୁଝାଯାଉନାହିଁ । 'ଟଂକା' ଲେଖିଲେ ବୁଝିବାରେ କାହାରି କିଛି ଭ୍ରମ ହେବ କି ? ତେବେ ବୃଥା ରକ୍ଷଣଶୀଳତାର କି ଫଳ ?

(ଆଶା–୧।୨୩; ୧୬.୨.୧୯୧୪)

ଗୋପବନ୍ଧୁ ଜୀବନସାରା ଏହି 'ବୃଥା ରକ୍ଷଣଶୀଳତା'ର ଥିଲେ ଘୋର ବିରୋଧୀ । ସ୍ୱାଧୀନତା ବିନା ତଥା ସ୍ୱାଧୀନତା ରକ୍ଷାକରିବାର ଆକାଙ୍‌କ୍ଷା ବିନା ମଣିଷର ପ୍ରଗତି ଅସମ୍ଭବ । ଜାତୀୟ ସାହିତ୍ୟର ବିକାଶ ନ ଘଟିଲେ ଗୋଟିଏ ଜାତିର ଉନ୍ନତି ଅସମ୍ଭବ । ଗୋପବନ୍ଧୁ ନିଜର ସଂକଳ୍ପ ଅଭିବ୍ୟକ୍ତ କରିବାକୁ ଯାଇ ଲେଖିଥିଲେ : ''ସାହିତ୍ୟର ଉନ୍ନତି ଜାତୀୟ ଉନ୍ନତିର ମୁଖ୍ୟ ଉପାଦାନ । ଜାତିର ଚିନ୍ତାରାଜ୍ୟରେ

ପରିବର୍ତ୍ତନ ନ ଆସିଲେ, ଅନ୍ୟାନ୍ୟ ବିଭାଗରେ ଗତି ଅସମ୍ଭବ।'' (ସତ୍ୟବାଦୀ– କନ୍ୟା ଓ ତୁଳ, ୧୩୨୩) ଦେଶପାଇଁ ଓ ସାଧାରଣ ଜନତାପାଇଁ ଯୌବନର ସଖୀ କବିତାଲକ୍ଷ୍ମୀଙ୍କୁ ବିଦାୟ ଦେଇଥିବା ଗୋପବନ୍ଧୁ ନିଜର ସଂପାଦନାରେ ଆରମ୍ଭ କରିଛନ୍ତି 'ସତ୍ୟବାଦୀ' ସାହିତ୍ୟପତ୍ର। ଓଡ଼ିଆ ରାଜ୍ୟର ଏହା ଥିଲା ପ୍ରଥମ ନିରୋଳା ପ୍ରବନ୍ଧ ଆଧାରିତ ସାହିତ୍ୟପତ୍ର। ବହୁଦିନ ପର୍ଯ୍ୟନ୍ତ ପ୍ରସ୍ତାବ, ପ୍ରବନ୍ଧ, ରଚନା, ଆଲୋଚନା ଓ ଅଭିଭାଷଣକୁ ସାହିତ୍ୟର ପଂକ୍ତିଭୁକ୍ତ କରାଯାଇନଥିଲା। ଓଡ଼ିଆ ଭାଷାରେ ବିଚାରଧର୍ମୀ ଗଦ୍ୟରଚନାକୁ – ଯାହା ଆଜି ପ୍ରବନ୍ଧ ନାମରେ ପରିଚିତ, ତାହାକୁ – ସାହିତ୍ୟର ଏକ ବିଭାଗ ରୂପରେ ସ୍ୱୀକୃତି/ପ୍ରତିଷ୍ଠା ଦେଇଛନ୍ତି ଗୋପବନ୍ଧୁ। 'ମୁକୁର'ରେ ପ୍ରବନ୍ଧଲେଖକ ଭାବରେ ଗୋପବନ୍ଧୁଙ୍କର ଯେଉଁ ପରିଚୟ ପ୍ରଥମେ ମିଳିଥିଲା, 'ସତ୍ୟବାଦୀ'ରେ ପ୍ରକାଶିତ ଆଲୋଚନା, ସଂପାଦକୀୟରେ ଓ ଅଭିଭାଷଣ ଗୁଡ଼ିକରେ ତାହାର ପରିଣତ ରୂପ ଦେଖିବାକୁ ମିଳେ। ଗୋପବନ୍ଧୁଙ୍କ ହାତରେ ଓଡ଼ିଆ ବାଖ୍ୟାତ୍ମକ ଗଦ୍ୟ ଯେଉଁ ଶୀର୍ଷ ବିନ୍ଦୁ ସ୍ପର୍ଶ କରିଛି, ତାହା ଏବେବି ଅନତିକ୍ରମ୍ୟ ହୋଇରହିଛି।

୧୯୧୯ ବେଳକୁ ଗୋପବନ୍ଧୁ କଂଗ୍ରେସ ଓ ସର୍ବଭାରତୀୟ ରାଜନୀତି ସହ କ୍ରମଶଃ ଘନିଷ୍ଠ ହେବାକୁ ଆରମ୍ଭ କରିଛନ୍ତି। ସେହି ସମୟରେ ସେ ଥିଲେ ବିହାର-ଓଡ଼ିଶା ଲାଟସଭାର ଜଣେ ସଭ୍ୟ। ସେ ଅନୁଭବ କରିଛନ୍ତି ଲୋକଙ୍କର ଦୁଃଖ-ଦୁର୍ଦ୍ଦଶା କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପିତ କରିବା ତାଙ୍କର ଯେପରି କର୍ତ୍ତବ୍ୟ, ଜନସାଧାରଣଙ୍କ ମଧ୍ୟରେ ଦେଶର ଅଭାବ ଅସୁବିଧା ସମ୍ପର୍କରେ ସଚେତନତା ସୃଷ୍ଟି କରିବା ମଧ୍ୟ ସେହିପରି ଆବଶ୍ୟକ। ତେଣୁ 'ଆଶା' ସମ୍ବାଦପତ୍ର ଓ ପ୍ରେସ (ଯେଉଁଠାରୁ 'ସତ୍ୟବାଦୀ' ପତ୍ରିକା ପ୍ରକାଶିତ ହେଉଥିଲା) ଉପରେ ସବୁଦିନ ନିର୍ଭରଶୀଳ ନହୋଇ ନିଜେ ଏକ ପ୍ରେସ ସ୍ଥାପନ କରି ଓ ନିଜ ସଂପାଦନାରେ ଏକ ସମ୍ବାଦପତ୍ର ପ୍ରକାଶ କରିବାକୁ ସେ ପଦକ୍ଷେପ ନେଇଛନ୍ତି। ଫଳସ୍ୱରୂପ ପ୍ରତିଷ୍ଠିତ ହୋଇଛି ସତ୍ୟବାଦୀ ପ୍ରେସ ଓ ସେଠାରୁ ଅକ୍ଟୋବର ୪, ୧୯୧୯ରେ ପ୍ରକାଶିତ ହୋଇଛି 'ସମାଜ' ସାପ୍ତାହିକ ସମ୍ବାଦପତ୍ର। ସମାଜର ଆଭିମୁଖ୍ୟ ସଂପର୍କରେ ସ୍ପଷ୍ଟୀକରଣ ଦେଇ କୁହାଯାଇଥିଲା :

> 'ସମାଜ'– ଏହି ନାମରେ ଖଣ୍ଡିଏ ସାପ୍ତାହିକ ପତ୍ର ସତ୍ୟବାଦୀ ପ୍ରେସରୁ ଆଗାମୀ ଦଶହରା ବେଳକୁ ବାହାରିବ। ଏଥିରେ ଦେଶର ଅବସ୍ଥା ଏବଂ ନାନାଦି ପ୍ରସ୍ତାବର ଆଲୋଚନା ହେବ। ବିଶେଷତଃ ପଲ୍ଲିଗ୍ରାମର ଜନସାଧାରଣଙ୍କର ଦୁଃଖଗୁହାରି, ଅଭାବ ଅଭିଯୋଗମାନ ପ୍ରକାଶିତ ହେବ। ପଲ୍ଲୀର ସ୍ୱାସ୍ଥ୍ୟ, ପ୍ରାଥମିକ ଶିକ୍ଷା, ଧର୍ମଚର୍ଚ୍ଚା, ଗ୍ରାମ୍ୟ ପଞ୍ଚାୟତ, ସମବାୟ ସମିତି, ସାମାଜିକ ଅବସ୍ଥା, କୃଷି, ଗ୍ରାମ୍ୟ ଶିଳ୍ପ

ପ୍ରଭୃତି ପଲ୍ଲିବାସୀର ପ୍ରୟୋଜନୀୟ ପ୍ରସଙ୍ଗମାନ ପ୍ରତି ଏଥିରେ ବିଶେଷ ଦୃଷ୍ଟି ଦିଆଯିବ । (ସତ୍ୟବାଦୀ ୫।୩-୪; ମେମ-ବୃଷ, ୧୩୨୬)

'ସମାଜ' ପୃଷ୍ଠାରେ ଗୋପବନ୍ଧୁ ସୃଷ୍ଟିକରିଥିଲେ ଓଡ଼ିଆ ଗଦ୍ୟଭାଷାର ଅପୂର୍ବ ରୂପବିଭବ । ଏହି ଗଦ୍ୟଭାଷା କେବଳ ଅତି ସରଳ ଓ ସହଜ ନୁହେଁ; ଯେଉଁମାନେ 'ଖାଲି ଅକ୍ଷର ଚିହ୍ନିଥିବେ' ସେମାନେ ମଧ୍ଯ 'ସମାଜ' ପଢ଼ିଲେ ବୁଝିପାରିବେ । ଯେଉଁମାନେ ନିରକ୍ଷର ସେମାନେ ମଧ୍ୟ ଶୁଣି 'ସମାଜ'ର ବିଷୟ ବୁଝିପାରିବେ । 'ଉତ୍କଳ-ଦୀପିକା', 'ସମ୍ବାଦବାହିକା', 'ନୀଳାଚଳ ସମାଚାର' ଭଳି 'ସମାଜ' ଏକ ସମ୍ବାଦପତ୍ର ବିଶେଷ ନଥିଲା । 'ସମାଜ' ମାଧ୍ୟମରେ ଗୋପବନ୍ଧୁ ଓଡ଼ିଆ ଭାଷାର ଶକ୍ତି-ପରୀକ୍ଷା କରିଥିଲେ ଓ ଓଡ଼ିଶାବାସୀଙ୍କ ସମ୍ମୁଖରେ ଉନ୍ମୋଚିତ କରିଥିଲେ ଜାତୀୟ ଚେତନାର ନବଦିଗନ୍ତ ।

## ।। ତିନି ।।

ଗୋଟିଏ ଦିଗରେ ଓଡ଼ିଶାର ଆନ୍ଦୋଳନକୁ ସର୍ବଭାରତୀୟ ଆନ୍ଦୋଳନ ସହିତ ସାମିଲ କରିବା ନେଇ ଗୋପବନ୍ଧୁ ଯେଭଳି ମୂଳରୁ ସୋଚ୍ଚାର ଥିଲେ, ଅପର ଦିଗରେ ଉଚ୍ଚ ବିତ୍ତ, ସାମନ୍ତ ଓ ଉଚ୍ଚ ମଧ୍ୟବିତ୍ତଙ୍କର କର୍ତ୍ତୃତ୍ୱରୁ ରାଜନୈତିକ ଅନୁଷ୍ଠାନଗୁଡ଼ିକୁ ମୁକ୍ତ କରି ସେଗୁଡ଼ିକୁ ଗଣାଭିମୁଖୀ କରିବାର ସେ ଥିଲେ ପକ୍ଷପାତୀ । ସାଧାରଣ ଜନଗଣର ସ୍ତରକୁ ଯାଇ, ସେମାନଙ୍କ ସୁଖଦୁଃଖର ଭାଗୀଦାର ହୋଇ ସେ ଯେଉଁ ଦେଶସେବା ଓ ରାଜନୀତିର ପରଂପରା ଆରମ୍ଭ କରିଥିଲେ; ତାହା କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷରେ ଥିଲା ଅନନ୍ୟ । ସେଥିପାଇଁ ତାଙ୍କ ପ୍ରବନ୍ଧ, ଅଭିଭାଷଣଗୁଡ଼ିକ ପାଠକ/ଶ୍ରୋତାମାନଙ୍କ ମନରେ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରୁଥିଲା । ତାଙ୍କର ସମାଜସେବୀର ଜୀବନ ବସ୍ତୁତଃ ଆରମ୍ଭ ହୋଇଥିଲା ମୁକ୍ତାର ରାମଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ 'ପୁରୀ ବ୍ରାହ୍ମଣ ସମିତି'ରୁ । କିନ୍ତୁ ସବୁବେଳେ ତାଙ୍କର ଦୃଷ୍ଟି ଥିଲା ବହୁପ୍ରସାରିତ । ପୁରୀର ବ୍ରାହ୍ମଣ ସମିତିର ସପ୍ତମ ବାର୍ଷିକ ମହୋତ୍ସବ(୧୯୦୭)ରେ ସମବେତ ଛାତ୍ରମାନଙ୍କୁ ସମ୍ବୋଧନ କରି ଗୋପବନ୍ଧୁ ଲେଖିଥିଲେ :

"ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ – ପ୍ରତି ରକ୍ତବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।

ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ସର୍ବହିତ ତେଜି ଅଭିମାନ ।

ବୟସ, ଅଭିଜ୍ଞତାର ବୃଦ୍ଧି ସହିତ ଗୋପବନ୍ଧୁଙ୍କର ଅଗ୍ରଦୃଷ୍ଟି ସଂପ୍ରସାରିତ ହୋଇଛି । କଟକଠାରେ ତା ୧୯ ଓ ୨୦ ଏପ୍ରିଲ, ୧୯୧୯ ମସିହାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଚତୁର୍ଦ୍ଦଶ ଅଧିବେଶନର ସଭାପତି ଭାବରେ ଆବେଗପୂର୍ଣ୍ଣ ଭାଷାରେ ଭାଷଣ ଦେଇ ସେ କହିଥିଲେ :

ଭାରତୀୟ ଆକାଙ୍‌କ୍ଷା ସଙ୍ଗେ ଉତ୍କଳ ଆକାଙ୍‌କ୍ଷାର ସାମଞ୍ଜସ୍ୟ ରହିବା ଉଚିତ । ଭାରତ ସଙ୍ଗେ ଉତ୍କଳର ନିତ୍ୟ ସମ୍ବନ୍ଧ ରହିବହିଁ ରହିବ । ଏହି ସମ୍ବନ୍ଧ ଚିରଦିନ ରହିଅଛି । ସମ୍ମିଳନୀ କାର୍ଯ୍ୟରେ ଭାରତୀୟ ଆନ୍ଦୋଳନରୁ ପୃଥକ୍ ଥିଲେ ସୁଦ୍ଧା ମହାଭାରତ ଜାତୀୟତା ସହିତ ଏହାର ସଂଯୋଗ ଆମ୍ଭର ମୂଳ ମନ୍ତ୍ର । ...ଅତଏବ ଭାରତର ଆକାଙ୍‌କ୍ଷା ସଙ୍ଗେ ଆମ୍ଭମାନଙ୍କର ଜାତୀୟ ଆକାଙ୍‌କ୍ଷା ମିଳାଇ ସମଗ୍ର ଭାରତର ମହାଜାତିର କଲ୍ୟାଣରେ ଯଥାଶକ୍ତି ଆତ୍ମବିନିଯୋଗ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ (ଗୋପବନ୍ଧୁ ରଚନାବଳୀ– ୨ୟ ଭାଗ: ୧୯୮୦, ପୃ. ୧୮୮-୧୮୯)

ଓଡ଼ିଶାରେ ଜାତୀୟବାଦୀ ଆନ୍ଦୋଳନର ପୁନର୍ବିନ୍ୟାସ କରିବା କ୍ଷେତ୍ରରେ ଗୋପବନ୍ଧୁଙ୍କର ଏହି ଅଭିଭାଷଣ ଥିଲା ମୌଳ ପ୍ରେରକ । ଏହାପରେ ଗୋପବନ୍ଧୁ ଭାରତୀୟ ଜାତୀୟ କଂଗ୍ରେସ ସହ ଘନିଷ୍ଠ ହୋଇପଡ଼ିଛନ୍ତି ଓ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ଜାତୀୟମୁକ୍ତି ଆନ୍ଦୋଳନରେ ସେ ହୋଇଛନ୍ତି ଓଡ଼ିଶାର ଅଗ୍ରଗଣ୍ୟ କର୍ଣ୍ଣଧାର । ଫଳରେ ୧୯୨୧ରେ ଅସହଯୋଗ ଆନ୍ଦୋଳନ କାଳରେ ନାନାପ୍ରକାର ଶାରୀରିକ ଓ ମାନସିକ ନିର୍ଯ୍ୟାତନାର ସେ ଶରବ୍ୟ ହୋଇଛନ୍ତି । ତାଙ୍କୁ ଭାଷଣ ଦେବାରୁ ବଞ୍ଚିତକରି ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ ଓ କଲେକ୍ଟର 'ମୁଖବନ୍ଧ'ର ଆଦେଶ ଦେଇ ଲେଖିଛନ୍ତି :

ବାବୁ ଗୋପବନ୍ଧୁ ଦାସ, ସତ୍ୟବାଦୀ ହାଲ, ପୁରୀ ଟାଉନ

ଯେହେତୁ ଏହା ଆମ୍ଭର ଗୋଚରକୁ ଆସିଅଛି କି ଏ ଜିଲ୍ଲାରେ ନାନା ସ୍ଥାନରେ ତୁମ୍ଭେ ଅଳ୍ପଦିନ ହେଲା ସଭାସମିତିରେ ବକ୍ତୃତା ଦେଇଅଛ; ପଟୁଆର ଗଠନକରି ତାହା ଚଳାଇଅଛ । ଯଦ୍ୱାରା କି ସମ୍ରାଟଙ୍କର ଭିନ୍ନ ଭିନ୍ନ ଶ୍ରେଣୀର ପ୍ରଜାମାନଙ୍କ ମଧ୍ୟରେ ଶତ୍ରୁତା ଓ ଗୋଳମାଳ ଘଟିପାରେ କିମ୍ବା ସାଧାରଣଙ୍କର ଶାନ୍ତିଭଙ୍ଗ ହୋଇପାରେ ।

ଏବଂ ଯେହେତୁ ଆମ୍ଭେ ସମ୍ବାଦ ପାଇଅଛୁ ଯେ ତୁମ୍ଭେ ପୁନରାୟ ଏହି ପୁରୀ ସହର ଓ ଏ ଜିଲ୍ଲାର ଭିନ୍ନ ଭିନ୍ନ ସ୍ଥାନରେ ସଭାସମିତିରେ

ବକ୍ତୃତା କରିବ ଓ ପଟୁଆର ଏବଂ ପ୍ରଦର୍ଶନୀ ଆୟୋଜନ କରିବାକୁ ମନସ୍ଥ କରିଅଛ; ଯଦ୍ଵାରା କି ସମ୍ରାଟଙ୍କର ଭିନ୍ନ ଭିନ୍ନ ଶ୍ରେଣୀର ପ୍ରଜାଙ୍କ ମଧ୍ୟରେ ଶତ୍ରୁତା ଘଟିପାରେ, ଗୋଳମାଳ ଏବଂ ସାଧାରଣ ଶାନ୍ତିଭଙ୍ଗ ହୋଇପାରେ ।

ଯେହେତୁ ଆମ୍ଭ ମତରେ ଏଥିର ଆଶୁ ପ୍ରତିକାର ବାଞ୍ଛନୀୟ; ଏତଦ୍ଵାରା ଫୌଜଦାରୀ କାର୍ଯ୍ୟବିଧି ଆଇନର ୧୪୪ ଅନୁସାରେ ତୁମ୍ଭଙ୍କୁ ଆଦେଶ କରାଯାଉଅଛି କି ଆଗାମୀ ଦୁଇ ମାସ ମଧ୍ୟରେ ତୁମ୍ଭେ ଏ ପୁରୀ ସହରରେ କିମ୍ବା ଏ ଜିଲ୍ଲାର କୌଣସି ସ୍ଥାନରେ ବକ୍ତୃତା କରିପାରିବ ନାହିଁ । ପଟୁଆର ବା ପ୍ରଦର୍ଶନୀ ଚଳାଇ ପାରିବ ନାହିଁ । ଧର୍ମ ବା ବିବାହ ସମ୍ପର୍କୀୟ ପଟୁଆରରେ ଯୋଗଦେବାରେ ଆପତ୍ତି ନାହିଁ ।

ଆମ୍ଭ ସ୍ଵାକ୍ଷରରେ ଆମ୍ଭ ଅଦାଲତ ମୋହର ସଂଯୁକ୍ତ ଆଜି ୧୯୨୧ ସାଲ ସେପ୍ଟେମ୍ବର ୧୦ ତାରିଖ ଏ ହୁକୁମ ଦିଆଗଲା ।

ଡି.ଏନ. ଦାସ

ଜିଲ୍ଲା ମେଜେଷ୍ଟର

(ସମାଜ – ୨।୪୭; ୧୭.୯.୧୯୨୧)

ଗୋପବନ୍ଧୁ ଆପଣାର ଅନୁଭବରୁ ଜାଣିଥିଲେ ଜନତାର ଭାବାବେଗକୁ ଛୁଇଁବା ପାଇଁ, ସେମାନଙ୍କୁ ଅନୁପ୍ରେରିତ କରିବାପାଇଁ ଗଦ୍ୟ ଅପେକ୍ଷା ପଦ୍ୟ ଅଧିକ ଶକ୍ତିଶାଳୀ । ତେଣୁ ବହୁଦିନରୁ ଛାଡ଼ିଥିବା କବିତାଦେବୀଙ୍କୁ ସେ ପୁଣି ଆବାହନ କରିଛନ୍ତି ଓ ବିଭିନ୍ନ ସଭାରେ ପଠିତ ହେବାପାଇଁ 'ମୂକ ମିନତି' ନାମରେ ଏକ ଦୀର୍ଘ ଉଦ୍‌ବୋଧନାତ୍ମକ କବିତା ଲେଖିଛନ୍ତି । ସାଧାରଣ ବକ୍ତବ୍ୟକୁ କବିତାର ଭାଷାରେ ଅଭିବ୍ୟକ୍ତ କରି ଜନସାଧାରଣଙ୍କ ହୃଦୟକୁ କିଭଳି ଉଦ୍‌ବେଳିତ କରାଯାଇପାରେ, 'ମୂକ ମିନତି' ତାହାର ଦୃଷ୍ଟାନ୍ତ । ଏଥିରେ ଉତ୍କଳର ଜନସାଧାରଣଙ୍କୁ ସମ୍ବୋଧନ କରି ସେ ଲେଖିଥିଲେ :

''ହେ ପ୍ରିୟ ଉତ୍କଳବାସୀ ଚାହିଁ ମୋର ମୁଖ,
ମୂକ ମୋତେ ଦେଖି ମନେ ପାଅ କିହେ ଦୁଃଖ ?
ମୋ ମୁଖେ ଲଗାମ ପାଟି ନ ପାରିବି ଖୋଲି
ହାତଗୋଡ଼ ପରେ ଲାଗିପାରେ ବା ଶାଙ୍ଖୋଳି ।
ନ କର ହେ ଏଥିଲାଗି ଭୟ ବା ଭାବନା
ସ୍ଵରାଜ୍ୟ ସାଧନାପଥେ ଏ ଶୁଭ ସୂଚନା ।
ତୁମ୍ଭର ମୋ ପ୍ରତି ଥିଲେ ସେନେହ ମମତା
ଲାଗ କାର୍ଯ୍ୟେ ଶୁଣ ନାହିଁ ଅନ୍ୟ କାହା କଥା ।

'ସ୍ନେହ ମମତା'ରେ ଓଡ଼ିଶାର ଜନସାଧାରଣଙ୍କୁ ବାନ୍ଧିରଖିଥିବା ଗୋପବନ୍ଧୁ, ଅସହଯୋଗ ଆନ୍ଦୋଳନରେ ଯୋଗଦେଇ କାରାବାସ ଭୋଗୁଥିବା ବେଳେ ଉପହାର ଦେଇଛନ୍ତି ପାଞ୍ଚଟି କବିତା ଗ୍ରନ୍ଥ । ବସ୍ତୁତଃ 'ମୂକ ମିନତି'ରେ ଗୋପବନ୍ଧୁଙ୍କର ଯେଉଁ କାବ୍ୟାବେଗର ଆଦ୍ୟ ସ୍ଫୁରଣ, ତାହା ଅଧିକ ମାର୍ମିକ ରୂପପାଇଛି 'ବନ୍ଦୀର ଆତ୍ମକଥା' ଖଣ୍ଡକାବ୍ୟ ଓ 'କାରାକବିତା' ଅନ୍ତର୍ଭୁକ୍ତ 'ପିତୃପକ୍ଷ ତର୍ପଣ' କବିତାରେ । 'ବନ୍ଦୀର ଆତ୍ମକଥା' ଓ 'ପିତୃପକ୍ଷ ତର୍ପଣ'* କବିତା ଗୋପବନ୍ଧୁଙ୍କ ବନ୍ଦୀଜୀବନର ଆଦ୍ୟ-ପର୍ଯ୍ୟାୟର ରଚନା । 'ଅଶ୍ରମ କାରାଦଣ୍ଡ' ଭୋଗକରୁଥିବା ଗୋପବନ୍ଧୁ ଦେଶବାସୀଙ୍କ ପାଇଁ ତାଙ୍କ ହୃଦୟରେ ଥିବା ଭଲପାଇବାକୁ ପ୍ରକାଶ କରିଛନ୍ତି 'ବନ୍ଦୀର ଆତ୍ମକଥା' ଖଣ୍ଡକାବ୍ୟରେ । ଭଲପାଇବା ସହ 'ବନ୍ଦୀର ଆତ୍ମକଥା'ରେ ରହିଛି ଅଧ୍ୟୟନର ବ୍ୟାପକତା, ମନର ଗଭୀରତା, ସୁସ୍ଥିର ଚିତ୍ତର ପ୍ରସନ୍ନତା ତଥା ଅନୁଭୂତିର ନିବିଡ଼ତା । ଫଳରେ କବିତାର ପ୍ରତ୍ୟେକ ପଂକ୍ତି ଲାଭକରିଛି ମନ୍ତ୍ରର ମହିମା । 'ବନ୍ଦୀର ଆତ୍ମକଥା' ପରିଣତ ହୋଇଛି ଜାତୀୟ ଉପନିଷଦ୍‌ରେ । କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଭାଷାରେ କୁହାଯାଇପାରେ ଯେ, ''ଜୀବନଠାରୁ ସାହିତ୍ୟ ଯେ ପୃଥକ୍ ନୁହେଁ, ଦଶ ଓ ଦେଶର ସେବା ଓ କଲ୍ୟାଣ ସାଧନ ଯେ ସାହିତ୍ୟର ଚରମ ପରିଣତି, ପୁଣି ସାହିତ୍ୟରୁ ବିଚ୍ଛିନ୍ନ ହୋଇ ଦେଶ ବା ଜାତି ଯେ ତିଷ୍ଠି ନପାରେ, ଗୋପବନ୍ଧୁଙ୍କର... ରଚନାରେ ଏହି ଲକ୍ଷ୍ୟହିଁ ସୁସ୍ପଷ୍ଟ ।'' (୧୯୪୯ : ପୃ.୬) ଗୋପବନ୍ଧୁଙ୍କର ଅନ୍ୟାନ୍ୟ ରଚନା ଅପେକ୍ଷା 'ବନ୍ଦୀର ଆତ୍ମକଥା' ପ୍ରତି ଉଦ୍ଧୃତାଂଶର ବକ୍ତବ୍ୟ ଅଧିକ ଭାବରେ ପ୍ରଯୋଜ୍ୟ ।

'ବନ୍ଦୀର ଆତ୍ମକଥା'ରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେବାରେ ଓ ସେମାନଙ୍କ ସହ ଦୁଃଖସୁଖ ହୋଇ ବିଦାୟ ନେବାରେ ଗୋପବନ୍ଧୁ ଏଭଳି ବ୍ୟସ୍ତ ଯେ ସେଥିରେ କବି ହୃଦୟର ଜ୍ୱାଳା, ଯନ୍ତ୍ରଣା ଓ ଜିଜ୍ଞାସା ଯଥାର୍ଥ ଭାବରେ ରୂପାୟିତ ହୋଇପାରିନାହିଁ । ଏ ଦୃଷ୍ଟିରୁ 'ପିତୃପକ୍ଷ ତର୍ପଣ' କବିତାର ଗୁରୁତ୍ୱ ଅଧିକ । ଆମ ପରଂପରାରେ ରାଜା ବିଷ୍ଣୁଙ୍କର ଅବତାର । ରାଜଦ୍ରୋହ ଓ ଧର୍ମଦ୍ରୋହ ତେଣୁ ସଗୋତ୍ର । କୌଣସି ଲୋକ ବନ୍ଦୀଶାଳାରେ ରହିଲେ ସେ ଧର୍ମଚ୍ୟୁତ, ଜାତିଚ୍ୟୁତ ହୋଇ ପତିତ ହୁଏ । ସେହି

---

* ଡକ୍ଟର ନଟବର ସାମନ୍ତରାୟ 'ପିତୃପକ୍ଷ ତର୍ପଣ' କବିତାଟି ''ଗୋପବନ୍ଧୁ... ୧୯୨୩ ସେପ୍ଟେମ୍ବର-ଅକ୍ଟୋବର ରଚନା'' କରିଥିବା କହିଛନ୍ତି । (୧୯୯୯:ପୃ.୧୦୫) । ଗୋପବନ୍ଧୁ କଟକ ଜେଲରେ ଥିବାବେଳେ ଏ କବିତାଟି ଲେଖିଥିବାର ସମ୍ଭାବନାକୁ ଅସ୍ୱୀକାର କରି ସେ ଉପରୋକ୍ତ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ସେ କବିତାଟି କଟକ ଜେଲରେ ଥିବାବେଳେ ଅର୍ଥାତ୍ ୧୯୨୨ ମସିହା ସେପ୍ଟେମ୍ବର-ଅକ୍ଟୋବର ମାସରେ ନ ଲେଖିବାର କୌଣସି କାରଣ ନାହିଁ; ବରଂ କବିତାଟିରେ ଅଭିବ୍ୟକ୍ତ ପ୍ରଶ୍ନ ଜେଲଜୀବନରେ ପ୍ରଥମାବସ୍ଥାରେ ଗୋପବନ୍ଧୁଙ୍କ ମନରେ ଉଦିତ ହେବା ଅଧିକ ଯୁକ୍ତିସଙ୍ଗତ ।

ଦୃଷ୍ଟିରୁ ଦେଖିଲେ ଗୋପବନ୍ଧୁ ଧର୍ମଦ୍ରୋହୀ ଓ ପତିତ, ପିତୃଲୋକ ତାଙ୍କ ହାତରୁ ଜଳାଞ୍ଜଳି ନନେବା ଯଥାର୍ଥ । ଆଲୋଚ୍ୟ କବିତାଟି ତେଣୁ ଆମର ରାଜତନ୍ତ୍ର ସହିତ ବ୍ରିଟିଶ ଔପନିବେଶିକ ଶାସନର ଏକ ତୁଳନା ଉପସ୍ଥାପନ କରିଛି । ଏହି ତୁଳନା ଭିତରଦେଇ ରକ୍ଷଣଶୀଳ ଗୋପବନ୍ଧୁ ଓ ବିଦ୍ରୋହୀ ଗୋପବନ୍ଧୁଙ୍କ ମଧ୍ୟରେ ଥିବା ଦ୍ୱୈତରୂପଟି ପ୍ରଥମେ ଫୁଟିଉଠେ । କିନ୍ତୁ ଶେଷବେଳକୁ ପିତୃଲୋକଙ୍କୁ ବର୍ତ୍ତମାନର ମୁକ୍ତି-ସଂଗ୍ରାମ ସହ ଜଡ଼ିତ କରିଦେଇ ଓ ଉଦାର ମାନବିକତାର ମନ୍ତ୍ର ଉଚ୍ଚାରଣ କରି ଆତ୍ମଦ୍ୱନ୍ଦ୍ୱରୁ ସେ ମୁକ୍ତିପାଇବା ପାଇଁ ଚେଷ୍ଟା କରିଛନ୍ତି ।

''ଜାଣୁଅଛ ଯେବେ ମୋର ଅନ୍ତର କଷଣ,
ଅନୁଗ୍ରହେ କର ତବ ଆଶିଷ ବର୍ଷଣ ।
ତୁମ୍ଭର ସୁକୃତବଳେ ଏତେକାଳେ ଆଜ,
ଭାରତ-ସନ୍ତାନ ହୃଦେ ଅଙ୍କୁରେ ସ୍ୱରାଜ୍ୟ ।
ଆସୁ ସ୍ୱର୍ଗରାଜ୍ୟୁଁ ତବ ପବିତ୍ର ପ୍ରେରଣା,
ଝରୁ ଶୁଭ ଆଶୀର୍ବାଦ ଅମୃତ ଝରଣା ।
ପଡୁ ଏ ଭାରତ-ପ୍ରାଣେ ସ୍ୱର୍ଗୀୟ କିରଣ,
ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ ।''

ଗୋପବନ୍ଧୁଙ୍କ ଜୀବନବୀଣାର ତାର ବାରମ୍ବାର ଛିଡ଼ିଯିବା ଫଳରେ ତାହା ହୋଇପଡ଼ିଥିଲା 'ସ୍ୱରହୀନ ବଇତମ ଅତି' । ଏହି ଜୀର୍ଣ୍ଣ ବୀଣାରେ ନୂତନ ସ୍ୱର ସଂଯୋଜନାର ସୁଯୋଗ ଦେଇଥିଲା ଜନତା-ଜନାର୍ଦ୍ଦନର ସେବା — ସେମାନଙ୍କ ମଧ୍ୟରେ ଜୀବନ ଅତିବାହିତ କରିବାର ଅଶ୍ରୁତପୂର୍ବ ଅନୁଭବ । ୧୯୨୩ ମସିହାରେ ରାଜବନ୍ଦୀ ଭାବରେ ହଜାରିବାଗ ଜେଲକୁ ସ୍ଥାନାନ୍ତରିତ ହେଲାପରେ ଗୋପବନ୍ଧୁଙ୍କ ପ୍ରାଣ ଓଡ଼ିଶାବାସୀଙ୍କ ବିରହରେ ପୁଣି ହାହାକାର କରିଛି । ହଜାରିବାଗ ଜେଲରେ ଦୀର୍ଘ ଦେଢ଼ବର୍ଷ ବନ୍ଦୀଜୀବନ ଅତିବାହିତ କରିଛନ୍ତି ଗୋପବନ୍ଧୁ । ନିର୍ଜନ କାରାଗାରର ମୁହୂର୍ତ୍ତଗୁଡ଼ିକ ଗୋପବନ୍ଧୁଙ୍କୁ ଆତ୍ମମଗ୍ନ କରିଛି । ନିଃସଙ୍ଗଜୀବନର ସହଚର, ହୋଇଛି କବିତା । ଏଇଠାରେ ସେ ରଚନା କରିଛନ୍ତି 'ଧର୍ମପଦ' ଗାଥାକାବ୍ୟ, 'ଗୋ-ମାହାତ୍ମ୍ୟ' ଭଳି ପୁରାଣଧର୍ମୀ ରଚନା, 'କାରାକବିତା'ରେ ସଂକଳିତ କବିତାବଳୀ ଓ 'ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ' ଭଳି ଅନୂଦିତ ଗ୍ରନ୍ଥ । ଏହି ପଦ୍ୟ ରଚନାଗୁଡ଼ିକ ଅଳସ ମୁହୂର୍ତ୍ତର ଭାବୋଚ୍ଛ୍ୱାସର ଶାବ୍ଦିକ ଅଭିବ୍ୟକ୍ତି ନୁହେଁ; ଦେଶ ଓ ଦେଶର ମଣିଷମାନଙ୍କ ପାଇଁ ଜୀବନ ଉତ୍ସର୍ଗ କରିଥିବା ଅନ୍ୟ ଜଣେ ଦଧିଚିଙ୍କର ଏହା ଆତ୍ମଲିପି — ଜୀବନର ସବୁଠାରୁ ଦାରୁଣ ଯନ୍ତ୍ରଣାକାତର ମୁହୂର୍ତ୍ତରେ ମଧ୍ୟ ଦେଶକୁ କିଛି ଦେଇଯିବା ମନୋଭାବର ଅଭିବ୍ୟକ୍ତି । ଧର୍ମପଦ ଓ ନଚିକେତା ଗୋପବନ୍ଧୁଙ୍କ ଜୀବନର ଆଦର୍ଶ

କେବଳ ନୁହନ୍ତି – ସେମାନଙ୍କ ଚରିତ୍ର ଭିତର ଦେଇ ନିଜେ ଗୋପବନ୍ଧୁ ପ୍ରକାଶିତ । 'ଧର୍ମପଦ' ଭଳି ଗାଥାର କାବ୍ୟ-ରୂପାୟନ ପଶ୍ଚାତରେ ଥିବା କାରଣ ସେ ଭୂମିକାରେ ବ୍ୟକ୍ତ କରିଛନ୍ତି । ଆଜି ଯେଉଁ ଗୋପବନ୍ଧୁ କବି ଭାବରେ ପୂଜିତ, ସେଇ କବି ଗୋପବନ୍ଧୁଙ୍କର ସାଧନାର କ୍ଷେତ୍ର ହୋଇଛି ଇଂରେଜ ସରକାରଙ୍କ କାରାଗାର । ଗୋପବନ୍ଧୁ ସେଇ କାବ୍ୟ-କବିତାଗୁଡ଼ିକ ନ ଲେଖିଥିଲେ, ତାଙ୍କର ପ୍ରତିଷ୍ଠା ଓ ମହତ୍ତ୍ୱ କୌଣସି ପ୍ରକାର ଊଣା ହୋଇନଥାନ୍ତା ସତ୍ୟ, କିନ୍ତୁ ଓଡ଼ିଆ କାବ୍ୟସୁନ୍ଦରୀ ଅନେକ ପରିମାଣରେ ଶ୍ରୀହୀନା ହୋଇଥାନ୍ତେ । ଅନଳଂକୃତ ଭାଷା ଓ ସହଜ ଅଭିବ୍ୟକ୍ତି ଯେ ଗଭୀର କାବ୍ୟାନୁଭବ ଦେଇପାରେ, 'ଧର୍ମପଦ' କାବ୍ୟ ଓ 'କାରାକବିତା'ର କବିତାବଳୀ ତାହାର ଚମତ୍କାର ନିଦର୍ଶନ ।

## ।। ଚାରି ।।

ପଣ୍ଡିତ ଗୋପବନ୍ଧୁଙ୍କୁ ଶ୍ରଦ୍ଧାରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଭୂଷିତ କରିଥିଲେ 'ଉତ୍କଳମଣି' ଉପାଧିରେ । ଓଡ଼ିଶା ସହିତ ଗୋପବନ୍ଧୁଙ୍କର ସଂପର୍କକୁ ଏହି ଉପାଧିରେ ସୀମିତ କରାଯାଇନପାରେ । ୧୮୯୪ ମସିହାରୁ ୧୯୨୮ ମସିହା ପର୍ଯ୍ୟନ୍ତ, ଏହି ଚଉତିରିଶ ବର୍ଷ ମଧ୍ୟରେ ଗୋପବନ୍ଧୁ ଓଡ଼ିଶାର ସାହିତ୍ୟ, ସାମ୍ବାଦିକତା, ରାଜନୀତି, ଶିକ୍ଷାବ୍ୟବସ୍ଥା, ଗଣଆନ୍ଦୋଳନ ଓ ସମଗ୍ର ଭାବରେ ଓଡ଼ିଆ ଜାତିର ଅବଚେତନରେ ଆପଣାର ଅନତିକ୍ରାନ୍ତ ପ୍ରଭାବ ବିସ୍ତାର କରିଛନ୍ତି । ଦେହାନ୍ତବେଳକୁ ସେ ହୋଇଉଠିଛନ୍ତି ଓଡ଼ିଆ ଜାତିର ଆତ୍ମପରିଚିତିର ଶ୍ରେଷ୍ଠ ଶଙ୍କୁ । ସେ ଜଣେ ବ୍ୟକ୍ତି କିମ୍ବା ସାଧାରଣ ଅନୁଷ୍ଠାନ ମଧ୍ୟ ହୋଇରହିନାହାନ୍ତି – ହୋଇଛନ୍ତି ଓଡ଼ିଶାର ଅନ୍ୟତମ ପବିତ୍ରତମ ଜାତୀୟ ଅନୁଷ୍ଠାନ । ଦେବତାର ଛଡ଼ାଫୁଲ ଓ ପାଦୁକା ଭକ୍ତ ନିକଟରେ ଯେଭଳି ପବିତ୍ରତମ ବସ୍ତୁ, ଗୋପବନ୍ଧୁଙ୍କର ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁଠାରୁ ଆରମ୍ଭକରି ଡାଏରୀ, ଚିଠିପତ୍ର ଓ ଅଭିଭାଷଣ ପର୍ଯ୍ୟନ୍ତ, ସବୁକିଛି ଆଜି ଓଡ଼ିଆ ଜାତିପାଇଁ ପବିତ୍ର ଅମୂଲ୍ୟ ସଂପଦ ।

ଅନ୍ୟ ଭାବରେ ଦେଖିଲେ, ସେ ଜୀବନରେ ଲେଖିଥିବା ଅଜସ୍ର ଚିଠିପତ୍ର, ଚିଠା କରିଥିବା ବହୁ ପ୍ରସ୍ତାବ, ସମ୍ବାଦପତ୍ରରେ ଦେଇଥିବା ବିଜ୍ଞାପନ ତଥା ସେ ଲିପିବଦ୍ଧ କରିଥିବା ଡାଏରୀ – ଓଡ଼ିଶାର ସାମାଜିକ ଓ ରାଜନୈତିକ ଇତିହାସର ପୁନର୍ଗଠନ ପାଇଁ ମଧ୍ୟ ଅତ୍ୟାବଶ୍ୟକ ଉପାଦାନ । ଦୃଷ୍ଟାନ୍ତସ୍ୱରୂପ, ୧୯୨୦ ମସିହାରେ କୁଳବୃଦ୍ଧ ମଧୁସୂଦନଙ୍କ ନିକଟକୁ ସେ ଲେଖିଥିବାଏକ ପତ୍ରକୁ ବିଚାର କରାଯାଇପାରେ । ଓଡ଼ିଶାର ଜାତୀୟ ଜୀବନରେ ମଧୁସୂଦନ ଓ ଗୋପବନ୍ଧୁ ସର୍ବାଧିକ ସମ୍ମାନାସ୍ପଦ ବ୍ୟକ୍ତିତ୍ୱ । ଉଭୟଙ୍କର ରାଜନୈତିକ ଦୃଷ୍ଟିଭଙ୍ଗୀ, କାର୍ଯ୍ୟପ୍ରଣାଳୀ ଥିଲା

ସ୍ୱତନ୍ତ୍ର । ଫଳରେ ସାଧାରଣ ଜୀବନରେ ଉଭୟଙ୍କ ମଧ୍ୟରେ ବେଳେବେଳେ ସଂଘାତ ସୃଷ୍ଟି ହେବା ଥିଲା ସ୍ୱାଭାବିକ । ତା' ସତ୍ତ୍ୱେ, ମଧୁସୂଦନଙ୍କର ଗୋପବନ୍ଧୁଙ୍କ ପ୍ରତି ଥିଲା ଅକୁଣ୍ଠିତ ଶ୍ରଦ୍ଧା ଓ ଭଲପାଇବା । ଗୋପବନ୍ଧୁ ମଧ୍ୟ ମଧୁସୂଦନଙ୍କୁ ସର୍ବଶ୍ରେଷ୍ଠ ଜୀବିତ ଓଡ଼ିଆ ଭାବରେ ସମ୍ମାନ କରୁଥିଲେ – ରାଜା ମହାରାଜାଙ୍କ ପରିବର୍ତ୍ତେ ମଧୁବାବୁ ଉତ୍କଳ-ସମ୍ମିଳନୀର ସଭାପତି ହୁଅନ୍ତୁ ବୋଲି ସମସ୍ତଙ୍କ ଆଗରେ ପ୍ରସ୍ତାବ ବାଢ଼ିଥିଲେ । ୧୯୨୦ ମସିହାରେ କାଉନସିଲ ନିର୍ବାଚନ, ସିଂହଭୂମ ଉତ୍କଳ ସଭାର ସଭାପତିତ୍ୱ ପ୍ରସଙ୍ଗ ନେଇ ବିଭିନ୍ନ ସମ୍ବାଦପତ୍ର ଗୋପବନ୍ଧୁ ଓ ମଧୁସୂଦନଙ୍କ ମଧ୍ୟରେ ମତବିରୋଧ/ବ୍ୟକ୍ତିତ୍ୱ-ସଂଘର୍ଷର ଏକ ଚିତ୍ର ଉପସ୍ଥାପନ କରିଥିଲେ । ଏ ସଂପର୍କରେ ନିଜ ତରଫରୁ ସ୍ପଷ୍ଟୀକରଣ ଦେଇ ଏକ ପତ୍ରରେ ଗୋପବନ୍ଧୁ ଅତି ସରଳଭାବରେ ମଧୁସୂଦନଙ୍କୁ ଆପଣାର ମତାମତ ଜଣାଇଛନ୍ତି :

> I am glad that I am given an opportunity for an explanation. Babu Lakshminarayan Sahoo requested you to preside over the 2nd anniversary of the Singhbhum Utkal Sabha. He is not a member of that Sabha nor am I. Some of the leading members of that (Sabha) however consulted me in that matter of selection of a President of that anniversary. I advised them to select one from their own district. The Sabha is a district organisation and I thought a district man will do well. Also my fear was and I believe it was a legitimate fear, that your presidentship might give the Govt. an occasion to minimise the genuineness of the movement and call it as engineered by influential outsiders.
>
> (ସମାଜ : ୨୯.୬.୧୯୬୫; ଶ୍ରାଦ୍ଧସଂଖ୍ୟା)

ଗୋପବନ୍ଧୁଙ୍କୁ ଚିହ୍ନିବାପାଇଁ ଓ ତାଙ୍କ ଅବଦାନର ଯଥାର୍ଥ ମୂଲ୍ୟାୟନ ପାଇଁ ଆଲୋଚ୍ୟ ପତ୍ରଟି ଯେ ଅତ୍ୟାବଶ୍ୟକ ଉପାଦାନ – ଏହା ଯେ କେହି ସ୍ୱୀକାର କରିବେ । ମହାତ୍ମା ଗାନ୍ଧୀ, ଲାଲା ଲଜପତ ରାଏ, ଠକ୍କର ବାପାଙ୍କଠାରୁ ଆରମ୍ଭ କରି ଓଡ଼ିଶାର ବହୁ ବରପୁତ୍ରଙ୍କ ପର୍ଯ୍ୟନ୍ତ, ବହୁ ବ୍ୟକ୍ତିଙ୍କୁ ଏଭଳି ବହୁ ପତ୍ର ଗୋପବନ୍ଧୁ ଲେଖିଛନ୍ତି । ଗୋପବନ୍ଧୁଙ୍କ ଗଦ୍ୟରଚନା ଓ କାବ୍ୟକବିତାଠାରୁ ଏହି ପତ୍ରଗୁଡ଼ିକର ମୂଲ୍ୟ କୌଣସି ଭାବରେ ନ୍ୟୂନ ନୁହେଁ ।

## ।। ପାଞ୍ଚ ।।

ଗୋପବନ୍ଧୁଙ୍କ ଦେହାନ୍ତ ପରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ସମାଜ' ସମ୍ବାଦପତ୍ର ଗୋପବନ୍ଧୁଙ୍କର ଏଭଳି ରଚନାବଳୀ ପ୍ରତିବର୍ଷ ପ୍ରକାଶିତ ହେଉଥିବା ଶ୍ରାଦ୍ଧ-ସଂଖ୍ୟାଗୁଡ଼ିକରେ ଅନେକ ବର୍ଷଯାଏ ପ୍ରକାଶକରି ଆସିଛି । 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ହୋଇପଡ଼ିଛି ଗୋପବନ୍ଧୁ-ଚର୍ଚ୍ଚାର ମୌଳିକ ଉତ୍ସ । ସ୍ୱର୍ଗତ ରାଧାନାଥ ରଥଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ 'ଗୋପବନ୍ଧୁ ସାହିତ୍ୟ ମନ୍ଦିର' ଗୋପବନ୍ଧୁଙ୍କ କାବ୍ୟକବିତାର ସଂଗ୍ରହ, ମୁଦ୍ରଣ ତଥା ପୁନର୍ମୁଦ୍ରଣ କରି ତାହାର ବହୁଳ ପ୍ରଚାରରେ ପ୍ରମୁଖ ଭୂମିକା ନେଇଛି । ଗୋପବନ୍ଧୁ ଜନ୍ମଶତବାର୍ଷିକୀ ଅବସରରେ ସ୍ୱର୍ଗତ ରଥ ମୁଖ୍ୟତଃ ସତ୍ୟବାଦୀ ଓ ସମାଜରେ ପ୍ରକାଶିତ ଲେଖାସବୁକୁ 'ଗୋପବନ୍ଧୁ ରଚନାବଳୀ' ଶୀର୍ଷକରେ ସଂଗ୍ରହ ଓ ପ୍ରକାଶ କରି ଏହି ଜାତି ପାଇଁ ଏକ ପୁଣ୍ୟ କାର୍ଯ୍ୟ କରିଯାଇଅଛନ୍ତି । କିନ୍ତୁ ଏଠାରେ ସ୍ମରଣୀୟ ଯେ ଗୋପବନ୍ଧୁଙ୍କ ସାହିତ୍ୟ ଓ ରଚନାବଳୀ ନେଇ କାର୍ଯ୍ୟକରିବା ସ୍ୱର୍ଗତ ରଥଙ୍କର ବା 'ସମାଜ'ର ଏକୁଟିଆ କର୍ତ୍ତବ୍ୟ ନୁହେଁ । ଆଜି ରଚନାବଳୀର ସଂଗ୍ରହ ଓ ସଂପାଦନା ଏକ ବିଶେଷଜ୍ଞସୁଲଭ କାର୍ଯ୍ୟ । ତେଣୁ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା ପ୍ରକାଶିତ 'ଅବକାଶଚିନ୍ତା' ଆଦି ଖଣ୍ଡିକିଆ କବିତା ପୁସ୍ତକ ବା ଶତବାର୍ଷିକୀ ଅବସରରେ ଆଠ ଖଣ୍ଡରେ ପ୍ରକାଶିତ 'ଗୋପବନ୍ଧୁ ରଚନାଳବୀ'ରେ ସେହି ବିଶେଷଜ୍ଞସୁଲଭ ସଂପାଦନାରୀତି ଆଶା କରିବା ଅନୁଚିତ ।

'ଗୋପବନ୍ଧୁ ସାହିତ୍ୟ ମନ୍ଦିର' ଗୋପବନ୍ଧୁଙ୍କ କବିତାବଳୀରୁ ସ୍ୱତନ୍ତ୍ର ପୁସ୍ତିକା ଆକାରରେ ପ୍ରକାଶ କରିଥିଲେ ବି, କାହିଁକି କେଜାଣି, 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପୁନଃମୁଦ୍ରିତ କବିତାଗୁଡ଼ିକ ସହ ସେଗୁଡ଼ିକ ଏକତ୍ର କରି 'ଗ୍ରନ୍ଥାବଳୀ'/ 'ରଚନାବଳୀ' ଶୀର୍ଷକରେ ପ୍ରକାଶ କରିନଥିଲେ । ଗୋପବନ୍ଧୁଙ୍କ ଦେହାନ୍ତର ପଚାଶବର୍ଷ ପରେ ଏହିଭଳି କାର୍ଯ୍ୟ କରିବାକୁ ଆଗେଇ ଆସିଥିଲେ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର କର୍ତ୍ତୃପକ୍ଷ । ଏକାଡେମୀ ତରଫରୁ କବି ରାଧାମୋହନ ଗଡ଼ନାୟକଙ୍କ ଦୀର୍ଘ ଉପକ୍ରମଣିକା ସହ ପ୍ରକାଶ କରାଯାଇଥିଲା 'ଗୋପବନ୍ଧୁ ରଚନାବଳୀ – ପ୍ରଥମ ଖଣ୍ଡ' । କିନ୍ତୁ ସଂପୃକ୍ତ ରଚନାବଳୀର ମୁଦ୍ରଣ ଅଶୁଦ୍ଧି ଏତେ ଗୁରୁତର ଯେ ତାହାକୁ ଏକ ପ୍ରାମାଣିକ ସଂସ୍କରଣ ରୂପେ ବ୍ୟବହାର କରିବା ବିପଜ୍ଜନକ । ଗ୍ରନ୍ଥାବଳୀ ସଂପାଦକଙ୍କର କାମ ବଜାରରେ ମିଳୁଥିବା ବହିଗୁଡ଼ିକୁ ଏକାଠି କରି ତାହାର ଏକ ଦୀର୍ଘ ଭୂମିକା ଲେଖିବା ନୁହେଁ – ରଚନାଗୁଡ଼ିକୁ ଯଥାର୍ଥ ଐତିହାସିକ କ୍ରମରେ ଉପସ୍ଥାପନ କରିବା ଓ ମୌଳିକ ଉପାଦାନର ଭିତ୍ତିରେ ତାହାର ପାଠ ନିର୍ଣ୍ଣୟ କରିବା ।

ଏହି ମୌଳିକ ଉଦ୍ଦେଶ୍ୟ ବିସ୍ମୃତ ହୋଇଥିବାହେତୁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ରଚନାବଳୀ' ଲକ୍ଷ୍ୟଭ୍ରଷ୍ଟ ହୋଇଛି, ଏଥିରେ ସଂଦେହ ନାହିଁ। ଏଭଳିକି 'ଧର୍ମପଦ'ରେ ଥିବା ଗୋପବନ୍ଧୁଙ୍କ ମୂଲ୍ୟବାନ ଭୂମିକାଟି ସଂପୃକ୍ତ 'ରଚନାବଳୀ'ରୁ ବାଦ୍ପଡ଼ିଛି। ସବୁଠୁ ଦୁଃଖର ବିଷୟ ହେଲା, 'ପରିଶିଷ୍ଟ'ରେ ସଂକଳିତ ହୋଇଥିବା କବିତାବଳୀ 'ସମାଜ'ର ଶ୍ରାଦ୍ଧସଂଖ୍ୟାଗୁଡ଼ିକରୁ ସଂପାଦକୀୟ ଟିପ୍ପଣୀ ସହ ଅବିକଳ ପୁନଃମୁଦ୍ରିତ ହୋଇଥିଲେ ମଧ, ସେଥିନେଇ କୃତଜ୍ଞତା ପ୍ରକାଶ ତ ଦୂରର କଥା, ତାହାର ସାମାନ୍ୟ ସୂଚନା ମଧ ଦିଆଯାଇନାହିଁ।

ଗୋପବନ୍ଧୁଙ୍କ ଲେଖାବଳୀର ସଂଗ୍ରହ, ସଂପାଦନା ଓ ପ୍ରକାଶନ ଏକ ଜାତୀୟ କର୍ତ୍ତବ୍ୟ। ସେହି କର୍ତ୍ତବ୍ୟବୋଧରୁ ବର୍ତ୍ତମାନର 'ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ' ପରିକଳ୍ପିତ। ପ୍ରଥମ ଭାଗରେ ଗୋପବନ୍ଧୁଙ୍କ କବିତାବଳୀ ସଂକଳିତ। ପରବର୍ତ୍ତୀ ଭାଗଗୁଡ଼ିକରେ 'ମୁକୁର', 'ଉତ୍କଳ-ସାହିତ୍ୟ' ଓ 'ସତ୍ୟବାଦୀ' ଆଦି ସାହିତ୍ୟ ପତ୍ରିକା ତଥା 'ଉତ୍କଳ ଦୀପିକା', 'ନୀଳାଚଳ ସମାଚାର', 'ଆଶା', 'ଶକ୍ତି' ଓ 'ସମାଜ' ଆଦି ସମ୍ବାଦପତ୍ରରେ ପ୍ରକାଶିତ ଗଦ୍ୟରଚନା ତଥା ବିବିଧ ସୂତ୍ରରୁ ସଂଗ୍ରହ କରି ତାଙ୍କର ଡାଏରୀ, ଚିଠିପତ୍ର ଆଦିର ସଂକଳନ ପାଇଁ ଯୋଜନା କରାଯାଇଛି। ଗୋପବନ୍ଧୁଙ୍କର ଏହି ଗ୍ରନ୍ଥାବଳୀ ପୂର୍ଣ୍ଣାଙ୍ଗରୂପରେ ପ୍ରକାଶିତ ହୋଇପାରିଲେ ଆମ ଜାତୀୟ ସାହିତ୍ୟ ଓ ଜୀବନର ଏକ ବିରାଟ ଅଭାବ ଯେ ପୂରଣ ହୋଇପାରିବ, ଏହା ନିଃସନ୍ଦେହ।

'ଗ୍ରନ୍ଥାବଳୀ'ର ଏହି ପ୍ରଥମ ଭାଗ ପ୍ରସ୍ତୁତ କଲାବେଳେ ମୁଁ ମୁଖ୍ୟତଃ ଉତ୍କଳ ସାହିତ୍ୟ ସମାଜର ମଧୁସୂଦନ ପାଠାଗାର, ଭୁବନେଶ୍ୱରସ୍ଥିତ କେଦାରନାଥ ଗବେଷଣା ପରିଷଦର ପାଠାଗାର, ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପାଠାଗାର ଓ ଓଡ଼ିଶା ରାଜ୍ୟ ଅଭିଲେଖାଗାର ପାଠାଗାରର ସାହାଯ୍ୟ ନେଇଛି। 'ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ : ପ୍ରଥମ ଭାଗ'' ପ୍ରକାଶନ ଅବସରରେ ସଂପୃକ୍ତ ଅନୁଷ୍ଠାନର କାର୍ଯ୍ୟନିର୍ବାହକ ତଥା ଗ୍ରନ୍ଥାଗାରିକମାନଙ୍କ ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି। କେତୋଟି କବିତାର କାଳକ୍ରମ ସଂପର୍କରେ ବିଶିଷ୍ଟ ଗବେଷକ ଓ ସମାଲୋଚକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସହ ଆଲୋଚନା କରି ମୁଁ ଅନୁଗୃହୀତ ହୋଇଛି। ବନ୍ଧୁ ଡକ୍ଟର ଗୌରାଙ୍ଗଚରଣ ଦାଶ, ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ ଓ ଡକ୍ଟର ଦୀପ୍ତିରଞ୍ଜନ ପଟ୍ଟନାୟକ ବିଭିନ୍ନ ସମୟରେ ସହଯୋଗର ହାତ ବଢ଼େଇଛନ୍ତି। ଅନୁଜପ୍ରତିମ ଏହି ବନ୍ଧୁମାନେ ସେଥିପାଇଁ ଧନ୍ୟବାଦର ପାତ୍ର।

ଆର୍ଥିକ ଦିଗକୁ ବିଚାର ନକରି ସାହସର ସହିତ ଏହି ଗ୍ରନ୍ଥାବଳୀର ପ୍ରକାଶନ ଦାୟିତ୍ୱ ବହନ କରିଛନ୍ତି 'ଗ୍ରନ୍ଥମନ୍ଦିର'ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର।

'ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ' ମୂଳତଃ ତାଙ୍କର ପରିକଳ୍ପନା । ଶ୍ରୀମାନ୍ ମନୋଜ କୁମାର ମହାପାତ୍ର ମୋ ପଛେ ପଛେ ଲାଗିନଥିଲେ ଗ୍ରନ୍ଥାବଳୀର ସଂପାଦନା କାର୍ଯ୍ୟ ଯେ ବହୁ ବିଳମ୍ବିତ ହୋଇଥାନ୍ତା, ତାହା ନିଶ୍ଚିତ । ଗ୍ରନ୍ଥଟିର ସୁଦୃଶ୍ୟ ମୁଦ୍ରଣ ଶ୍ରୀମାନ୍ ତପନ କୁମାର ମହାପାତ୍ରଙ୍କ ପରିଶ୍ରମର ଫଳ । ଏହି ଅବସରରେ ଶ୍ରୀଯୁକ୍ତ ମହାପାତ୍ର, ଶ୍ରୀମାନ୍ ମନୋଜ ଓ ଶ୍ରୀମାନ୍ ତପନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ପରିବାରର ସମସ୍ତ ଜଞ୍ଜାଳ ଏକୁଟିଆ ମୁଣ୍ଡେଇ, ଏଭଳି ଅନ୍ତଃହୀନ କାର୍ଯ୍ୟରେ ବୁଡ଼ିରହିବାର ସୁଯୋଗ ମୋତେ ଦେଇଛନ୍ତି ମୋର ସ୍ତ୍ରୀ ଗୀତାଞ୍ଜଳି । କୌଣସି ଧନ୍ୟବାଦ ବା କୃତଜ୍ଞତା ଜଣାଇ ତାଙ୍କର ଭୂମିକାକୁ ମୁଁ ନ୍ୟୂନ କରିବାକୁ ଚାହୁଁନାହିଁ ।

'ଗୋପବନ୍ଧୁ ଗ୍ରନ୍ଥାବଳୀ'ର ପାଠ-ନିର୍ଣ୍ଣୟ କଲାବେଳେ ଗୋଟିଏ ଦୁଇଟି ସ୍ଥାନରେ ମୋର ସନ୍ଦେହ ରହିଯାଇଛି । କେଉଁଠି କେଉଁଠି ଅନିଚ୍ଛାକୃତ ତ୍ରୁଟି ମଧ୍ୟ ରହି ଯାଇଥାଇପାରେ । ସୁଧୀ ପାଠକବୃନ୍ଦ ତାହା ମୋର ଦୃଷ୍ଟିକୁ ଆଣିଲେ, ସେମାନଙ୍କ ପ୍ରତି କୃତଜ୍ଞ ରହିବି । ଇତି ।

ରାଉରକେଲା — ଦେବେନ୍ଦ୍ର କୁମାର ଦାଶ

ମକର ସଂକ୍ରାନ୍ତି, ୧୩୨୦ ସାଲ

# ଅବକାଶ ଚିନ୍ତା ।

ଅର୍ଥାତ୍ ।

( ଅବକାଶ ସମୟେ ଲିଖିତ )

ଶ୍ରୀ ଗୋପବନ୍ଧୁ ଦାସ କର୍ତ୍ତୃକ ବିରଚିତ

ଏବ

କର୍ତ୍ତବ୍ୟ ବୋଧିନୀ ସମିତିର ପ୍ରଥମ ବାର୍ଷିକ

ମହୋତ୍ସବ ଉପଲକ୍ଷେ

ପ୍ରକାଶିତ ।

CUTTACK.

Printed at the Orissa Patriot Press.

1899

ମୂଲ୍ୟ ୪ ୦ /୯

# ପ୍ରାକ୍-ସୂଚନା

'ଶ୍ରୀ ଗୋପବନ୍ଧୁ ଦାଶଙ୍କ କର୍ତ୍ତୃକ ବିରଚିତ ଏବଂ କର୍ତ୍ତବ୍ୟବୋଧିନୀ ସମିତିର ପ୍ରଥମ ବାର୍ଷିକ ମହୋତ୍ସବ ଉପଲକ୍ଷେ ପ୍ରକାଶିତ' ଅବକାଶଚିନ୍ତା 'ଅର୍ଥାତ୍ ଅବକାଶ ସମୟେ ଲିଖିତ' କବିତାସଂଗ୍ରହ ୧୮୯୯ ମସିହାରେ କଟକସ୍ଥିତ ଓଡିଶା ପାଟ୍ରିଅଟ୍ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ଏହି ପୁସ୍ତିକାର ପରିଚୟ ଦେଇ 'ଉତ୍କଳ-ସାହିତ୍ୟ'ର ସଂପାଦକ ବିଶ୍ୱନାଥ କର 'ସଂକ୍ଷିପ୍ତ ସମାଲୋଚନା' ସ୍ତମ୍ଭରେ ଲେଖିଥିଲେ :

ଅବକାଶ ଚିନ୍ତା— ଶ୍ରୀ ଗୋପବନ୍ଧୁ ଦାଶଙ୍କ ବିରଚିତ ଏବଂ କର୍ତ୍ତବ୍ୟବୋଧିନୀ ସମିତିର ପ୍ରଥମ ବାର୍ଷିକ ଉତ୍ସବ ଉପଲକ୍ଷରେ ପ୍ରକାଶିତ । ମୂଲ୍ୟ ଏକ ଅଣା ଏକ ପଇସା । ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡିକରେ ୯ଟି କ୍ଷୁଦ୍ର କବିତା ପ୍ରକାଶିତ ହୋଇଅଛି । ଆମ୍ଭେମାନେ ଏହି ପୁସ୍ତିକା ଖଣ୍ଡି ପାଠ କରି ସୁଖୀ ହୋଇଅଛୁଁ ଏବଂ ନବୀନ କବିଙ୍କୁ ସାଦର ସମ୍ଭାଷଣ ଜଣାଉଅଛୁଁ । ବର୍ତ୍ତମାନ ଉତ୍କଳ ପ୍ରଦେଶରେ କୌଣସି ପ୍ରକାର ଅକ୍ଷର ଯୋଡାଯୋଡି କରି ପଦକେତେ ଲେଖିଦେଇ ଲୋକେ କବି ହେବାକୁ ଭାରି ଇଚ୍ଛୁକ । ଏହି ଶ୍ରେଣୀର ଲେଖା ଦେଖି ଦେଖି, ଶୁଣି ଶୁଣି ଆଖି କାନ ଅସ୍ଥିର ହେଲାଣି ! ଏ ଦେଶରେ ସମ୍ପାଦକ ହେବାର ଯେତେ ପ୍ରକାର ବିଡମ୍ବନା ଅଛି, ତନ୍ମଧ୍ୟରେ ଗୋଟିଏ ପ୍ରଧାନ ଏହି ଯେ ଅନେକ ସମୟରେ ରାଶି ରାଶି ହସ୍ତଲିଖିତ ଓ ମୁଦ୍ରିତ ଆବର୍ଜନା ଆଦ୍ୟୋପାନ୍ତ ପାଠ କରିବାକୁ ହୁଏ । ସେଥିରେ କେବଳ କ୍ଳାନ୍ତି, ଅବସାଦ ଓ ଦୀର୍ଘନିଶ୍ୱାସ ସାର ହୁଏ । 'ଅବକାଶଚିନ୍ତା' ପାଠ କରି ଆମ୍ଭମାନଙ୍କର ସେ ଅବସ୍ଥା ହୋଇନାହିଁ । ଲେଖକଙ୍କର ଶକ୍ତି ଅଛି, ସାଧନାରେ ପ୍ରବୃତ୍ତ ହେଲେ ସେ ଜଣେ ସୁକବି ହୋଇପାରିବେ । ଯୁବକ ଲେଖକଙ୍କର ସ୍ୱଦେଶପ୍ରୀତି ମଧ୍ୟ ପ୍ରଶଂସନୀୟ (ଉତ୍କଳ-ସାହିତ୍ୟ ୩/୧୧; ନଭେମ୍ବର, ୧୮୯୯; ପୃ. ୨୬୪-୬୫)

'ଅବକାଶଚିନ୍ତା' ଥିଲା ନଅଟି କବିତାବିଶିଷ୍ଟ ଉଣେଇଶ ପୃଷ୍ଠାର କ୍ଷୁଦ୍ର ପୁସ୍ତିକା । ଏହି ନଅଟି କବିତା ହେଲା : (କ) କବିତାଦେବୀ, (ଖ)କାଠଯୋଡିତୀରେ ସାୟଂକାଳ (୧), (ଗ) କାଠଯୋଡିତୀରେ ସାୟଂକାଳ (୨), (ଘ) କାଠଯୋଡି-ତୀରେ ଚନ୍ଦ୍ରାଲୋକ ନିଶୀଥ, (ଙ) ପଣ୍ଡିତ ହରିହର ଦାଶଶର୍ମା, (ଚ) ମୋ ନାନୀ,

(ଛ) ଚନ୍ଦ୍ର, (ଜ) କୋକିଳ, (ଝ) ଗ୍ରୀଷ୍ମେ ଖୁଣ୍ଟା ଗଛ । ଏଥିମଧ୍ୟରୁ ସପ୍ତମ କବିତା 'ଚନ୍ଦ୍ର' ବର୍ଷକ ପୂର୍ବରୁ 'ଉତ୍କଳ-ସାହିତ୍ୟ' ପତ୍ରିକାର ଦ୍ୱିତୀୟ ଭାଗ ପଞ୍ଚମ ସଂଖ୍ୟା (ମେ, ୧୮୯୮)ରେ ପ୍ରକାଶିତ ହୋଇଥିଲା । ପୁସ୍ତକରେ ସ୍ଥାନିତ ହେଲାବେଳେ 'ଚନ୍ଦ୍ର' କବିତାରେ ଦୁଇଟି ପାଦରେ ପରିବର୍ତ୍ତନ କରାଯାଇଥିଲା ।

୧. ଉ. ସା. ପାଠ— ତୋ ତତ୍ତ୍ୱ ଚିନ୍ତା ମନନ କରିବାକୁ ଏ ଭାଜନ ?
 ଅ. ଚି. ପାଠ— ତୋ ନିଗୂଢ ତତ୍ତ୍ୱମାନ ବୁଝିବ କି ଏ ଅଜ୍ଞାନ ?
୨. ଉ. ସା. ପାଠ— ନିର୍ଜୀବ ବୋଲି ବା ତୋତେ ବୋଲିବି କେମନ୍ତେ ?
 ଅ. ଚି. ପାଠ— ନିର୍ଜୀବ ବୋଲିଣ ତୋତେ ବୋଲିବି କେମନ୍ତେ ?

ନଅଟି କବିତା ବ୍ୟତୀତ ପୁସ୍ତିକାଟିରେ ଏକ ଉତ୍ସର୍ଗ ପତ୍ର ଥିଲା । 'ଅବକାଶ-ଚିନ୍ତା' ପୁସ୍ତିକାଟିକୁ ଜ୍ୟୋତିର୍ବିଜ୍ଞାନୀ ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କୁ ଉତ୍ସର୍ଗ କରି କୁହାଯାଇଥିଲା—

> କଠିନ ସାଧନାଦ୍ୱାରା ଯେଉଁ ମହାତ୍ମା ପ୍ରାଚୀନ ଆର୍ଯ୍ୟ ଜ୍ୟୋତିର୍ବିଦ୍ୟାରେ ସିଦ୍ଧି ଲାଭ କରି ଉତ୍କଳର ନାମକୁ ଗୌରବାନ୍ୱିତ କରିଅଛନ୍ତି, ଯାହାଙ୍କ ଜୀବନରେ ଆର୍ଯ୍ୟ ଋଷିପ୍ରାଣ ପ୍ରତିଫଳିତ ହୋଇଛି ଏବଂ କବି ଯାହାଙ୍କୁ 'ଉତ୍କଳ ଶ୍ମଶାନେ ତୁଳସୀ' ଆଖ୍ୟା ପ୍ରଦାନ କରିଅଛନ୍ତି, ସେହି ମହା-ମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ହରିଚନ୍ଦନ ମହାପାତ୍ର ମହୋଦୟଙ୍କ ଶ୍ରୀକର କମଳରେ ଆନ୍ତରିକ ଭକ୍ତିର ଚିହ୍ନ ସ୍ୱରୂପ ଏହି ପୁସ୍ତିକା ଖଣ୍ଡିକ ଅର୍ପିତ ହେଲା— ରଚକ ।

'ଅବକାଶଚିନ୍ତା' ସଂକଳିତ ନଅଟି କବିତା ମଧ୍ୟରୁ ପ୍ରଥମ କବିତାର ଶୀର୍ଷକ : 'କବିତାଦେବୀ' । କବିତାଟିର ଏକ ଦୀର୍ଘ ପାଦଟୀକାରେ ଗୋପବନ୍ଧୁଙ୍କ କବି-ଜୀବନର ନୈରାଶ୍ୟ ଓ ନୈରାଶ୍ୟ-ମୁକ୍ତିର ସୂଚନା ପ୍ରଦତ୍ତ :

> ବହୁ ଯତ୍ନ ସହକାରେ ଏଥିପୂର୍ବକ ଅନେକଗୁଡିଏ ପଦ୍ୟ ଲେଖିଥିଲି, କିନ୍ତୁ ଦୁର୍ଭାଗ୍ୟବଶତଃ ସେ ସକଳ ଦୁଇବାର ନଷ୍ଟ ହୋଇଅଛି । ସେଥିରେ ନିତାନ୍ତ ବ୍ୟଥିତ ହୋଇ କବିତାଦେବୀଙ୍କଠାରୁ ଚିରବିଦାୟ ପ୍ରକାଶ କରିବା ଲାଗି ଯେଉଁ ପଦ୍ୟଟି ରଚନା କରିଥିଲି ସେହି ପଦର ପ୍ରଥମ ତିନିପଦ ଏହି 'କବିତାଦେବୀ'ର ପ୍ରଥମ ତିନିପଦ ସଙ୍ଗେ ଅବିକଳ ସମାନ, କିନ୍ତୁ ୪ର୍ଥ ଓ ୫ମ ଏହାଠାରୁ ଭିନ୍ନ ।
>
> "ତୋ ଚରଣେ ସେବି ସୁଖେ କାଟିବି ଜୀବନ
> ବାଳକାଳୁ ପୋଷିଥିଲି ଏହି ଅଭିଳାଷ
> ଜାଣିଲି ସେ ସାଧୁ କାର୍ଯ୍ୟେ ନୁହେଁ ମୁଁ ଭାଜନ

ସଂସାର ଘଟଣାଚକ୍ରେ ହୋଇଣ ନିରାଶ । (୪ର୍ଥ)
ସୁଧାମୟି ! ତୋ ସେବାରେ ନୁହଇଁ ମୁଁ କ୍ଷମ
ଚିରଦିନ ଲାଗି ଏବେ ଦିଅ ଗୋ ବିଦାୟ,
କରିବି କିପାଁଇ ଆଉ ପଣ୍ଡ ପରିଶ୍ରମ ?
ସେ ବନ୍ଧୁ ଉଦ୍ୟମେ ସତୀ ହୁଅ ଗୋ ସହାୟ । (୫)''

ପ୍ରେମାସ୍ପଦ ବନ୍ଧୁ ଶ୍ରୀ ବୈଦ୍ୟନାଥ ମିଶ୍ରଙ୍କର ପଦ୍ୟରଚନା ପ୍ରତି ନୂତନ ରୁଚି ଦେଖି, ତାହାଙ୍କ ଉତ୍ସାହାର୍ଥେ ଉକ୍ତ ବିଦାୟ ଗ୍ରହଣ ପଦ୍ୟଟି ତାହାଙ୍କୁ ଅର୍ପିତ ହେଲା । କିନ୍ତୁ ମୋହର ସମସ୍ତ ବନ୍ଧୁମାନେ ପୁନରାୟ ଲେଖିବାକୁ ଅନୁରୋଧ କରିବାରୁ ଏହି ପଦ୍ୟ କେତୋଟି ଲେଖିଅଛି ।

ଉଦ୍ଧୃତାଂଶରୁ ସ୍ପଷ୍ଟ ଯେ ପୂର୍ବରୁ ସେ ଲେଖିଥିବା ସମସ୍ତ କବିତା ଦୁଇଥର ନଷ୍ଟ ହୋଇଥିବାରୁ ଗୋପବନ୍ଧୁଙ୍କର ଉପଲବ୍ଧ କବିତାବଳୀ ମଧ୍ୟରେ 'କବିତାଦେବୀ' ହେଉଛି ପ୍ରଥମ କବିତା । 'ଚନ୍ଦ୍ର' ତାଙ୍କର ପ୍ରଥମ ପ୍ରକାଶିତ କବିତା ହୋଇଥିଲେହେଁ 'କବିତାଦେବୀ'ର ରଚନା 'ଚନ୍ଦ୍ର' ପୂର୍ବରୁ – ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲାବେଳେ ଏହାର ରଚନା । ଏଠାରେ ସୂଚନାଯୋଗ୍ୟ ବୈଦ୍ୟନାଥ ମିଶ୍ର ପୁରୀ ଜିଲ୍ଲା ସ୍କୁଲରେ ଗୋପବନ୍ଧୁଙ୍କର ସହପାଠୀ ଥିଲେ ଓ ସେ ଗୋପବନ୍ଧୁଙ୍କ ଭଳି ୧୮୯୮ ମସିହାରେ ପ୍ରଥମ ବିଭାଗରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । (ଉତ୍କଳ-ଦୀପିକା-୩୩/୨୭; ୨.୭.୧୮୯୮)

ଦ୍ୱିତୀୟ ଶ୍ରେଣୀର ବୃତ୍ତି ଲାଭ କରି ଗୋପବନ୍ଧୁ ରେଭେନ୍‌ସା କଲେଜରେ ଏଫ.ଏ. ଶ୍ରେଣୀରେ ଯୋଗଦେଇଥିଲେ ୧୮୯୮ ଜୁଲାଇ/ଅଗଷ୍ଟ ମାସରେ । ପରବର୍ତ୍ତୀ ତିନୋଟି କବିତା କଟକର କାଠଯୋଡୀ ନଦୀ ସଂପର୍କିତ ହୋଇଥିବାରୁ ଏଗୁଡିକର ରଚନା ୧୮୯୮ ଅଗଷ୍ଟ ପରେ ହୋଇଥିବା ସମ୍ଭବ । ଅବଶିଷ୍ଟ ଚାରିଗୋଟି କବିତା– ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶଶର୍ମା, ମୋ ନାନୀ, କୋକିଳ ଓ ଗ୍ରୀଷ୍ମେ ଖୁଣ୍ଟାଗଛର ରଚନାର ସମୟ ନିର୍ଦ୍ଦିଷ୍ଟ ଭାବେ କହିବାପାଇଁ ଆମ ପାଖରେ କୌଣସି ତଥ୍ୟ ନାହିଁ ।

ଯୌବନରେ ଲିଖିତ ଓ ପ୍ରକାଶିତ କବିତା ପୁସ୍ତିକା 'ଅବକାଶଚିନ୍ତା'କୁ ଗୋପବନ୍ଧୁ ଆଉ ଥରେ ପୁନର୍ମୁଦ୍ରଣ କରିବାର ଅବକାଶ ପରବର୍ତ୍ତୀ କାଳର ବ୍ୟସ୍ତ ଜୀବନ ଭିତରେ ପାଇନଥିଲେ । କିନ୍ତୁ ଏଭଳି ଏକ ପୁସ୍ତକ ସଂପର୍କରେ ତାଙ୍କ ଆଦ୍ୟ ଜୀବନୀକାର ଦ୍ୱୟ ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବନ୍ଧୁ ତ୍ରିପାଠୀ ଅବହିତ ଥିଲେ ଓ ପାଠ ମଧ୍ୟ କରିଥିଲେ । ସେମାନଙ୍କ ଦ୍ୱାରା ଲିଖିତ ଓ ଗୋପବନ୍ଧୁଙ୍କ ଦେହାନ୍ତର ମାତ୍ର ଦୁଇମାସ ମଧ୍ୟରେ ପ୍ରକାଶିତ 'ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ' ପୁସ୍ତକରେ

'ଅବକାଶଚିନ୍ତା' ସଂପର୍କରେ କୁହାଯାଇଥିଲା : ''ସ୍କୁଲ ସମୟରେ ଲେଖିଥିବା ସମସ୍ତ ପଦ୍ୟ ତାଙ୍କର 'ଅବକାଶଚିନ୍ତା' ବା ଅବକାଶ ସମୟରେ ଲିଖିତ । [?] ଏହିପରି ଖଣ୍ଡିଏ ପୁସ୍ତକ ୧୮୯୯ ମସୀହାରେ ସେ ଲେଖିଥିଲେ । ତାହା 'କର୍ତ୍ତବ୍ୟବୋଧିନୀ ସମିତି'ର ପ୍ରଥମ ବାର୍ଷିକ ଉପଲକ୍ଷେ ପ୍ରକାଶିତ ହୋଇଥିଲା'' (ପୃ.୨୪) ଆଲୋଚ୍ୟ ପୁସ୍ତକରେ 'କବିତାଦେବୀ' (ପୃ.୨୪) ଓ 'ମୋ ନାନୀ'– (ପୃ.୬) ଏହି ଦୁଇ କବିତାକୁ ପ୍ରସଙ୍ଗକ୍ରମେ ଆଲୋଚନା କରାଯାଇଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଗୋପବନ୍ଧୁଙ୍କ ଦେହାନ୍ତପରେ 'ସମାଜ'ରେ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା ପ୍ରକାଶିତ ଓ ପ୍ରକାଶ ଅପେକ୍ଷାରେ ଥିବା ତାଙ୍କ ପୁସ୍ତକାବଳୀର ଯେଉଁ ବିଜ୍ଞାପନ ସବୁ ଦିଆଯାଇଛି, ସେଥିରେ 'ଅବକାଶଚିନ୍ତା'ର ନାମ ମଧ୍ୟ ନାହିଁ । 'ବାଲ୍ୟବିଳାସ' ଶୀର୍ଷକରେ ଗୋପବନ୍ଧୁଙ୍କର 'ବାଲ୍ୟ ଓ ଯୌବନର କବିତାବଳୀ' (ଅପ୍ରକାଶିତ)ର ବିଜ୍ଞାପନ 'ସମାଜ'ର ୧୯୩୧ ମସିହାର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ଦେଖିବାକୁ ମିଳେ । ତେଣୁ ମନେହୁଏ, ୧୯୩୧ ମସିହା ପର୍ଯ୍ୟନ୍ତ 'ଗୋପବନ୍ଧୁ ସାହିତ୍ୟ ମନ୍ଦିର'ର କାର୍ଯ୍ୟନିର୍ବାହକମାନେ 'ଅବକାଶଚିନ୍ତା' ଦେଖି ନଥିଲେ କିମ୍ବା ଦେଖିଥିଲେ ମଧ୍ୟ ତାହାକୁ ମୂଳରୂପରେ ପୁନର୍ମୁଦ୍ରିତ କରିବାକୁ ଚାହିଁନଥିଲେ, ବରଂ ପରବର୍ତ୍ତୀ କାଳରେ ଲିଖିତ/ପ୍ରକାଶିତ ଅନ୍ୟାନ୍ୟ କବିତା ସେଥିରେ ସଂଯୋଜନ କରି ନୂତନ ଶୀର୍ଷକରେ ପ୍ରକାଶ କରିବାକୁ ମନସ୍ଥ କରିଥିଲେ ।

ସେ ଯାହାହେଉ, ଏହି ବିଜ୍ଞାପନର ଦଶବର୍ଷ ମଧ୍ୟରେ 'ଗୋପବନ୍ଧୁ ସାହିତ୍ୟ ମନ୍ଦିର' ପୂର୍ବ ବିଜ୍ଞାପିତ 'ବାଲ୍ୟବିଳାସ' ପ୍ରକାଶ କରିନଥିଲା । ୧୩.୭.୧୯୪୨ ତାରିଖରେ 'ଅବକାଶଚିନ୍ତା' ଶୀର୍ଷକରେ ସ୍ୱର୍ଗତ ରାଧାନାଥ ରଥଙ୍କ ପାଞ୍ଚପୃଷ୍ଠାର ଏକ ଦୀର୍ଘ ସୂଚନା ସହ ୯୪ ପୃଷ୍ଠାର ଏକ କବିତା ପୁସ୍ତକ ପ୍ରକାଶିତ ହୁଏ । ଏହି ନୂତନ 'ଅବକାଶଚିନ୍ତା'ରେ ରହିଛି ପୂର୍ବୋକ୍ତ ନଅଟି କବିତା ସହ ନୂତନ ଭାବେ ସଂଯୋଜିତ ତିରିଶଟି କବିତା । 'ସୂଚନା'ରେ ନୂତନ 'ଅବକାଶଚିନ୍ତା'ର ପରିଚୟ ଦେଇ ରଥ ମହାଶୟ ଲେଖିଥିଲେ :

> 'ଅବକାଶଚିନ୍ତା' ତାଙ୍କ ଜୀବନ-ପ୍ରଭାତ ଓ ଯୌବନରେ ଲିଖିତ ସେହିଭଳି କ୍ଷୁଦ୍ର ଖଣ୍ଡକବିତାର ଗ୍ରନ୍ଥ । 'ପ୍ରାର୍ଥନା', 'ବାଣୀ' କବିତାଠାରୁ ଆରମ୍ଭ କରି 'ସାରଳା ଦାସ', 'ଜଗନ୍ନାଥ ଦାସ', 'କବି ଉପେନ୍ଦ୍ର ଭଞ୍ଜ' ଲଗାଏତ 'କାଠଯୋଡୀ ତୀରେ ସାୟଂକାଳ', 'ଗ୍ରୀଷ୍ମେ ଖୁଣ୍ଟାଗଛ', 'ମୋ ନାନୀ', 'ଗୋଟିଏ କାଙ୍କଣ ଗଛ', 'ଅନାଥ କଳିକା' ଓ 'ନୀରବ' ପ୍ରଭୃତି କବିତାଗୁଡିକ ତାଙ୍କର ପ୍ରାରମ୍ଭ ଓ ଯୌବନ-କାଳୀନ କବିଜୀବନର

ଲେଖା । ଏସବୁ ସାମୟିକ ଲେଖା ସେତେବେଳେ ପ୍ରକାଶ ପାଉଥିବା 'ମୁକୁର' ପ୍ରଭୃତି ମାସିକ ପତ୍ରରେ ପ୍ରକାଶ ପାଇଥିଲା ଏବଂ ପ୍ରାୟ ୩୦ ବର୍ଷ ପୂର୍ବେ ଏଥି ମଧ୍ୟରୁ କେତେଗୁଡିଏ ଥରେ ''ଅବକାଶଚିନ୍ତା'' ନାମରେ ଏକ କ୍ଷୁଦ୍ର ପୁସ୍ତିକା ଆକାରରେ ପ୍ରକାଶିତ ହୋଇଥିଲା । ମାତ୍ର ସେ ପୁସ୍ତକର ଆଉ ପୁନର୍ମୁଦ୍ରଣ ହୋଇନଥିଲା ଏବଂ ସେଥିରେ ସବୁ କବିତାଗୁଡ଼ିକ ସ୍ଥାନ ପାଇ ନଥିଲା । ଏଥିମଧ୍ୟରେ ବିଭିନ୍ନ ମାସିକ ପତ୍ରଗୁଡ଼ିକରୁ ସଂଗୃହୀତ ଏହିସବୁ କ୍ଷୁଦ୍ର ଓ ଖଣ୍ଡକବିତା ଆଜି ପ୍ରକାଶ କରାଗଲା । (ପୃ-ଦୁଇଅଣା)

ରଥ ମହୋଦୟ 'ସୂଚନା'ର ଉଦ୍ଧୃତାଂଶରେ ବହୁ କଥା ଅତ୍ୟନ୍ତ ଅସ୍ପଷ୍ଟ ଭାବରେ କହିଥିବାରୁ ପରବର୍ତ୍ତୀ ପାଠକ/ଆଲୋଚକମାନେ ବହୁ ଭାବରେ ବିଭ୍ରାନ୍ତ ହୋଇଛନ୍ତି । (କ) 'ପ୍ରାର୍ଥନା'ରୁ 'ନୀରବ' ପର୍ଯ୍ୟନ୍ତ ତାଙ୍କଦ୍ୱାରା ଉଲ୍ଲେଖ କରାଯାଇଥିବା ସମସ୍ତ କବିତା କ'ଣ 'ମୁକୁର' ପ୍ରଭୃତି ମାସିକପତ୍ରରେ ପ୍ରକାଶ ପାଇଥିଲା ? ପୁଣି 'ମୁକୁର' ପ୍ରଭୃତି କହିଲେ ସେ 'ମୁକୁର' ସହିତ ଆଉ କେଉଁ ମାସିକପତ୍ର କଥା କହିବାକୁ ଚାହାନ୍ତି ? (ଖ) 'ଅବକାଶଚିନ୍ତା' ୧୯୪୨ର ତିରିଶବର୍ଷ ପୂର୍ବେ ଅର୍ଥାତ୍ ୧୯୧୨ ମସିହାରେ ପ୍ରକାଶିତ ବୋଲି ସେ କହନ୍ତି – ତେବେ ୧୯୧୨ ମସିହାରେ 'ଅବକାଶଚିନ୍ତା'ର ଆଉ ଏକ ସଂସ୍କରଣ ହୋଇଥିଲା କି ? ଅପରପକ୍ଷରେ 'ଅବକାଶଚିନ୍ତା'ର ପୁନଃମୁଦ୍ରଣ ହୋଇନଥିବା କଥା ମଧ୍ୟ ସେ କହନ୍ତି । (ଗ) 'ଅବକାଶଚିନ୍ତା'ର ପୂର୍ବ ସଂସ୍କରଣରେ କେତୋଟି କବିତା ଥିଲା ତଥା ସେଗୁଡ଼ିକର ଶୀର୍ଷକ କ'ଣ ଓ ପରବର୍ତ୍ତୀ କାଳରେ କେଉଁ ସୂତ୍ରରୁ ସଂଗୃହୀତ ହୋଇ କେତୋଟି ଓ କେଉଁସବୁ କବିତା 'ଅବକାଶଚିନ୍ତା'ରେ ନୂତନଭାବେ ସଂଯୋଜିତ, ତାହାର ଉଲ୍ଲେଖ ସ୍ପଷ୍ଟଭାବେ କରାଯାଇନାହିଁ । ତେବେ ଟିକେ ତଳେଇ କରି ଅନୁଧ୍ୟାନକଲେ ଜଣାଯାଏ ଯେ, ଯଦିଓ ପ୍ରକାଶକ ମହାଶୟ 'ଅବକାଶଚିନ୍ତା' ପ୍ରଥମ ସଂସ୍କରଣ ଦେଖିଛନ୍ତି, ତେବେ ସେ ବ୍ୟବହାର କରିଥିବା ପୁସ୍ତକରେ ମଲାଟ ବୋଧହୁଏ ନ ଥିଲା; ତେଣୁ ତାହାର ରଚନାକାଳ ସଂପର୍କରେ ନିର୍ଦ୍ଦିଷ୍ଟ ମତ ନଦେଇ **ପ୍ରାୟ ୩୦ ବର୍ଷ** ତଳେ ବୋଲି ଲେଖିଛନ୍ତି । ଦ୍ୱିତୀୟତଃ, ନୂତନଭାବେ ସଂଯୋଜିତ ୩୦ଟି କବିତାରୁ ୨୩ଟି କବିତା 'ମୁକୁର' ମାସିକପତ୍ରରେ ଓ ଗୋଟିଏ 'ଉତ୍କଳ ସମ୍ମିଳନୀର କାର୍ଯ୍ୟବିବରଣୀ'ରେ ଓ ଅନ୍ୟ ଗୋଟିଏ ତାଙ୍କ ଦେହାନ୍ତ ପରେ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶିତ । ଅବଶିଷ୍ଟ ପାଞ୍ଚଟି କବିତା ବୋଧହୁଏ ପାଣ୍ଡୁଲିପି ଆକାରରେ ପ୍ରକାଶକଙ୍କ ନିକଟରେ ଥିଲା । ଏହି ପାଞ୍ଚଟି ମଧ୍ୟରୁ ଚାରୋଟି ସଂପର୍କରେ ସତ୍ୟବାଦୀ ଓ ବାଉରୀବନ୍ଧୁ ଆଲୋଚନା କରିଛନ୍ତି । ତେଣୁ ବିଷୟଟିକୁ ସ୍ପଷ୍ଟ ଭାବରେ ନ କହି 'ମୁକୁର' ପ୍ରଭୃତି ମାସିକ-

ପତ୍ରରେ ପ୍ରକାଶ ପାଇଥିଲା' କହିଛନ୍ତି । ଏଠାରେ ସ୍ମରଣଯୋଗ୍ୟ ଯେ ରଥ ମହୋଦୟ ଗୋପବନ୍ଧୁଙ୍କ 'ଅବକାଶଚିନ୍ତା' ସଂପର୍କରେ ଗବେଷଣା-ପ୍ରବନ୍ଧ ଲେଖିନାହାନ୍ତି, ପ୍ରକାଶକ ଭାବରେ ସାଧାରଣ ପାଠକମାନଙ୍କ ଉଦ୍ଦେଶ୍ୟରେ ଏକ ପରିଚୟାତ୍ମକ ସୂଚନା ଦେଇଛନ୍ତି । ତେଣୁ ସେଥିରେ ଅସ୍ପଷ୍ଟତା ରହିବା ସ୍ୱାଭାବିକ ।

ପୂର୍ବରୁ ସୂଚିତ, ୧୯୪୨ ମସିହାରେ ପ୍ରକାଶିତ 'ଅବକାଶଚିନ୍ତା'ରେ ନୂତନଭାବେ ୩୦ଟି କବିତା ସଂଯୋଜିତ । ଏହି ସଂଯୋଜନା କଲାବେଳେ ପ୍ରଥମ ସଂସ୍କରଣରେ ପ୍ରକାଶିତ କବିତାଗୁଡ଼ିକ ସହ କ୍ରମ ରକ୍ଷାକରି ନୂତନ କବିତାଗୁଡ଼ିକ ସଂଯୁକ୍ତ କରାଯାଇନାହିଁ । ପୁରାତନ ଓ ନୂତନ ସମସ୍ତ କବିତାକୁ ଆପଣା ରୁଚି/ ଆଭିମୁଖ୍ୟ/ତଥ୍ୟ ଅନୁସାରେ ନୂତନ ଭାବେ ପ୍ରକାଶକ ସଜ୍ଜିତ କରିଛନ୍ତି । ତା' ସହିତ କେତେକ କବିତାର ଶିରୋନାମାରେ ମଧ୍ୟ ପରିବର୍ତ୍ତନ କରାଯାଇଛି । 'କବିତାଦେବୀ'ର ଶୀର୍ଷକ ହୋଇଛି 'କବିତା' । କେତେକ କବିତାର ପାଦଟୀକା ବାଦ୍ ଦେଲାବେଳେ, 'ଗଞ୍ଜାମ ଜାତୀୟ ସମିତି' ଓ 'କ୍ରୋଧ' କବିତାରୁ ଦୁଇ ପାଦ ଲେଖାଏଁ ବାଦ୍ ପଡିଛି । 'କବିତା·ଦେବୀ' ଓ 'ଗିରିଶିଖେ ଲକ୍ଷ୍ୟ ରଖି...' କବିତାର କେତୋଟି ଧାଡିରେ ପାଠଗତ ପରିବର୍ତ୍ତନ ମଧ୍ୟ କରାଯାଇଛି । ଏହିସବୁକୁ ଆଖି ଆଗରେ ରଖି ନୂତନ ଭାବେ ସଂଯୋଜିତ ୩୦ଟି କବିତାର ପ୍ରକାଶକାଳ ଆଦି ସଂପର୍କରେ ସୂଚନା ଦିଆଯାଉଛି ।

(୧) **ପ୍ରାର୍ଥନା** – ନୂତନ ସଂସ୍କରଣର ଏହା ପ୍ରଥମ କବିତା । ସ୍ୱର୍ଗତ ରଥ ମହୋଦୟ ଗୋପବନ୍ଧୁଙ୍କର ଏହା ପ୍ରଥମ କବିତା ବୋଲି କହିଛନ୍ତି । କିନ୍ତୁ 'ଅବକାଶଚିନ୍ତା' ପ୍ରଥମ ସଂସ୍କରଣ ପ୍ରକାଶର ଛଅ ବର୍ଷ ପରେ ଏହି କବିତାଟି ରଚିତ । ବାଲେଶ୍ୱରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ତୃତୀୟ ବାର୍ଷିକ ଅଧିବେଶନ (୧୩.୪.୧୯୦୬/୧୪.୪.୧୯୦୬)ରେ ଏହାକୁ ଗାନ କରାଯାଇଥିଲା ଓ ଉତ୍କଳ ସମ୍ମିଳନୀର ସେହିବର୍ଷ କାର୍ଯ୍ୟବିବରଣୀ ପୁସ୍ତିକାରେ ତାହା ପ୍ରକାଶିତ ହୋଇଥିଲା ।

(୨) **ବାଣୀ** – ମୁକୁର ୩/୧ (ଏପ୍ରିଲ୍, ୧୯୦୮)

(୩) **ଶମ୍ଭୂକର ବାଜପେୟୀ** – ମୁକୁର ୧/୬ (ସେପ୍ଟେମ୍ବର, ୧୯୦୬) । ଶମ୍ଭୂକର ବାଜପେୟୀଙ୍କ ସଂପର୍କରେ 'ମୁକୁର'ରେ ଥିବା ଦୀର୍ଘ ପାଦଟୀକା ନୂତନ ସଂସ୍କରଣ 'ଅବକାଶଚିନ୍ତା'ରୁ ବାଦ୍‌ଦିଆଯାଇଥିଲା ।

(୪) **ଭକ୍ତ କବିବର ଜଗନ୍ନାଥ ଦାସ** – ମୁକୁର ୧।୧ (ଏପ୍ରିଲ, ୧୯୦୬)

(୫) **ବଳରାମ ଦାସ** – ମୁକୁର ୧।୪ (ଜୁଲାଇ, ୧୯୦୬)

(୬) **ସାରଳା ଦାସ** – ମୁକୁର ୧/୩ (ଜୁନ, ୧୯୦୬)

(୭) ଅନଙ୍ଗ ଭୀମଦେବ – ମୁକୁର ୧/୭ (ଅକ୍ଟୋବର, ୧୯୦୬)
(୮) ଶ୍ରୀ ପୁରୁଷୋତ୍ତମ ଦେବ – ମୁକୁର ୧/୧୨ (ମାର୍ଚ୍ଚ, ୧୯୦୭)
(୯) ଉପେନ୍ଦ୍ର ଭଞ୍ଜ – ମୁକୁର ୧/୫ (ଅଗଷ୍ଟ, ୧୯୦୬)
(୧୦) ସାମନ୍ତ ଚନ୍ଦ୍ରଶେଖର – ମୁକୁର ୧/୨ (ମେ, ୧୯୦୬)
(୧୧) ଭାର୍ଗବୀ ପ୍ରତି – ମୁକୁର ୨/୪ (ଜୁଲାଇ, ୧୯୦୭)
(୧୨) ଖଣ୍ଡଗିରି ଶିଖରେ – 'ଅବକାଶଚିନ୍ତା'ର ନୂତନ ସଂସ୍କରଣରେ ସ୍ଥାନିତ ହେବାପୂର୍ବରୁ ବୋଧହୁଏ ଏହା ପ୍ରକାଶିତ ହୋଇନଥିଲା । କବିତାଟି ଗୋପବନ୍ଧୁ ରେଭେନ୍ସା କଲେଜରେ ପଢୁଥିବାବେଳେ ଲେଖିଥିବା କଥା ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବନ୍ଧୁ କହନ୍ତି : "…. କଟକ ଅବସ୍ଥାନ କାଳରେ ସେ ନିଜର ସହାଧ୍ୟାୟୀମାନଙ୍କ ସହିତ ନାନା ଇତିହାସ-ପ୍ରସିଦ୍ଧ ସ୍ଥାନମାନ ଦର୍ଶନ କରିଥିଲେ । 'ଖଣ୍ଡଗିରି ଶିଖରେ' ନାମକ କବିତାରେ ଖଣ୍ଡଗିରିର ଶୋଭା ବର୍ଣ୍ଣନା କରି ବୌଦ୍ଧତାପସମାନଙ୍କର ବିହାର କନ୍ଦରାମାନ ସନ୍ଦର୍ଶନ କରି ସେ ଲେଖିଛନ୍ତି…" (ପୃ.୩୧)
(୧୩) କଟକର ଶିଳାସେତୁ – ଏଇଟି ବୋଧହୁଏ ପୂର୍ବରୁ କୌଣସି ପତ୍ରିକାରେ ପ୍ରକାଶିତ ହୋଇନଥିଲା । ସତ୍ୟବାଦୀ ଓ ବାଉରୀବନ୍ଧୁ ଏହି କବିତାର ରଚନାକାଳ ସଂପର୍କରେ କହନ୍ତି : "…ଅନେକ କବିତା ସେ ପ୍ରଥମ ବର୍ଷୀୟ ଶ୍ରେଣୀରେ ପଢୁଥିଲା ବେଳେ ଲେଖିଥିଲେ । …ଏଫ.ଏ. ପରୀକ୍ଷା ଦେଇ 'କାଠଯୋଡ଼ୀର ପଥରବନ୍ଧ ଉପରେ ଏକାନ୍ତରେ ବସି 'କଟକରେ ଶିଳାସେତୁ' କବିତାଟି ସେ ଲେଖିଛନ୍ତି; " (ପୃ.୨୭-୨୮)
(୧୪) **ବିଂଶ ଶତାବ୍ଦୀର ପ୍ରଥମଦିନ ବାରବାଟୀ ଦର୍ଶନ** – ଏଇ କବିତାଟି ମଧ୍ୟ ପୂର୍ବରୁ କୌଣସି ପତ୍ରିକାରେ ପ୍ରକାଶିତ ହୋଇନଥିଲା । ୦୧.୧.୧୯୦୧ ତାରିଖରେ କବିତାଟି ଲେଖାହୋଇଥିବା ସତ୍ୟବାଦୀ ଓ ବାଉରୀବନ୍ଧୁ କହନ୍ତି । (ପୃ.୨୬)
(୧୫) **ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରେ** – ମୁକୁର ୧/୮ (ନଭେମ୍ବର, ୧୯୦୬) । କବିତାଟି କିନ୍ତୁ ପୂର୍ବରୁ ଗୋପବନ୍ଧୁ ଲେଖିଥିବା ତ୍ରିପାଠୀଦ୍ୱୟ କହନ୍ତି : "କଲେଜର ପ୍ରଥମ ଶ୍ରେଣୀରେ ଅଧ୍ୟୟନ କଲାବେଳେ କାର୍ତ୍ତିକ ପୂର୍ଣ୍ଣିମା ଦିନ ମହାନଦୀ କୂଳରେ 'ବାଲିଯାତ୍ରା' ଦର୍ଶନ କରିବାକୁ ଯାଇ ବାଲିଯାତ୍ରାରେ ସଂକୀର୍ତ୍ତନ ମଣ୍ଡଳରେ ପ୍ରାଣ ନ ଥିଲାପରି ଜଣାପଡ଼ିବାରୁ ସେ ମହାନଦୀ କୂଳରେ ବସି ଗାଇଛନ୍ତି": (ପୃ.୨୪-୨୫)
(୧୬) **ରେଲ ଉପରେ ଚିଲିକା ଦର୍ଶନ** – ମୁକୁର ୧/୧୦-୧୧ (ଜାନୁଆରୀ-ଫେବ୍ରୁଆରୀ, ୧୯୦୭)

(୧୭) **ଗଞ୍ଜାମ ଜାତୀୟ ସମିତି** – ମୁକୁର ୧/୯ (ଡିସେମ୍ବର, ୧୯୦୬)। ଏଠାରେ ସ୍ମରଣଯୋଗ୍ୟ ଯେ ଗଞ୍ଜାମ ଜାତୀୟ ସମିତି ବା ଗଞ୍ଜାମ ସମ୍ମିଳନୀ ୧୧.୪.୧୯୦୩ ଓ ୧୨.୪.୧୯୦୩ରେ ଅନୁଷ୍ଠିତ ହୋଇଥିଲା। ତେଣୁ କବିତାଟି ସେହି ସମୟରେ ଲେଖା ହୋଇଥିବା ସମ୍ଭବ, ଯଦିଓ ଏହା ପ୍ରକାଶ ପାଇଛି ଡିସେମ୍ବର, ୧୯୦୬ରେ।

(୧୮) **ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ଛାତ୍ରମାନଙ୍କ ପ୍ରତି** – ମୁକୁର ୨/୬ (ସେପ୍ଟେମ୍ବର, ୧୯୦୭)

(୧୯) **କାମ** – ମୁକୁର ୨/୩ (ଜୁନ, ୧୯୦୭)

(୨୦) **କ୍ରୋଧ** – ମୁକୁର ୨/୪ (ଜୁଲାଇ, ୧୯୦୭)

(୨୧) **ରେଭେନ୍‌ସା କଲେଜରୁ ବିଦାୟ** – ମୁକୁର ୪/୯-୧୦ (ଡିସେମ୍ବର, ୧୯୦୯-ଜାନୁଆରୀ, ୧୯୧୦)। ଗୋପବନ୍ଧୁ ଦ୍ୱିତୀୟ ଉଦ୍ୟମରେ ବି.ଏ. ପାସ୍ କରନ୍ତି ୧୯୦୩ ମସିହା ମେ ମାସରେ (ଉତ୍କଳ ଦୀପିକା ୩୮।୨୧; ୨୩.୫.୧୯୦୩)। ତେଣୁ କବିତାଟି ୧୯୦୩ ମସିହାରେ ଲିଖିତ ହୋଇଥିଲେ ହେଁ ଛଅବର୍ଷ ପରେ ପ୍ରକାଶିତ।

(୨୨) **ଛବିଶ ବର୍ଷ ପ୍ରବେଶ** – ଗୋପବନ୍ଧୁଙ୍କ ଦେହାନ୍ତ ପରେ 'ସମାଜ'ର ତୃତୀୟ ବାର୍ଷିକ ଶ୍ରାଦ୍ଧସଂଖ୍ୟା (୨୫.୭.୧୯୩୧)ରେ ଏହା ପ୍ରଥମେ ମୁଦ୍ରିତ ହୋଇଥିଲା। ଗୋପବନ୍ଧୁଙ୍କୁ ପଚିଶବର୍ଷ ପୂର୍ଣ୍ଣ ହୋଇ ଛବିଶ ବର୍ଷ ଆରମ୍ଭ ହେଲା ୦୯.୧୦.୧୯୦୨ ତାରିଖରେ। ତେଣୁ କବିତାଟି ସେହି ଦିନ ଲିଖିତ।

(୨୩) **ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି** – ମୁକୁର ୨/୫ (ଅଗଷ୍ଟ, ୧୯୦୭)। ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବନ୍ଧୁ ତ୍ରିପାଠୀ କବିତାଟି ୧୯୦୬ ମସିହାରେ ଲିଖିତ ବୋଲି କହନ୍ତି। (ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ପୃ.୩୩)

(୨୪) **ଏକ ଅସରା ବର୍ଷାର ଅବ୍ୟବହିତ ପରେ ନରାଜ ଦର୍ଶନ** – ୧୯୪୨ ମସିହା ପୂର୍ବରୁ ବୋଧହୁଏ କବିତାଟି ମୁଦ୍ରିତ ହୋଇନଥିଲା। ଡକ୍ଟର ନଟବର ସାମନ୍ତରାୟ, ସତ୍ୟବାଦୀ ଓ ବାଉରୀବନ୍ଧୁଙ୍କ ଉଲ୍ଲେଖକୁ ଭିତ୍ତିକରି, ଏହା ୧୯୦୪ ମାର୍ଚ୍ଚ ପରେ ଲିଖିତ ବୋଲି କହିଛନ୍ତି (ପୃ. ୧୩୬ ଓ ୧୩୮)। କିନ୍ତୁ ଗୋପବନ୍ଧୁଙ୍କ ବି.ଏ ପରୀକ୍ଷା ୧୯୦୪ ମସିହାର ମାର୍ଚ୍ଚ ମାସରେ ନହୋଇ ସେମାନଙ୍କ ଯୁକ୍ତି ଅନୁସାରେ ୧୯୦୩ ମସିହା ମାର୍ଚ୍ଚ ପରେ ହିଁ ହେବ।

(୨୫) **ଗୋଟିଏ କାଙ୍କଣ ଗଛ** – ମୁକୁର ୨/୧ (ଏପ୍ରିଲ, ୧୯୦୭)। ୧୯୬୧ ମସିହାରେ ପ୍ରକାଶିତ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶିତ ଭରତଚନ୍ଦ୍ର ନାୟକଙ୍କ ପ୍ରବନ୍ଧକୁ ଅନୁସରଣ କରି ଡକ୍ଟର ସାମନ୍ତରାୟ ଏହାକୁ

୧୯୦୦ ମସିହାର ରଚନା ବୋଲି କହିଛନ୍ତି । 'ମୁକୁର'ରେ ପ୍ରକାଶିତ କବିତାରେ ଗୋପବନ୍ଧୁଙ୍କ ବନ୍ଧୁ ଓ 'ମୁକୁର' ସଂପାଦକ ବ୍ରଜସୁନ୍ଦର ଦାସଙ୍କର ଏକ ପାଦଟୀକା ଥିଲା । ସେଥିରେ କବିତାର ପୃଷ୍ଠଭୂମି ସୂଚନା ଦେଇ କୁହାଯାଇଥିଲା : "ଲେଖକ ରେଭେନ୍‌ସା କଲେଜ ବୋର୍ଡିଂରେ ଥାଇ ଅଧ୍ୟୟନ କରୁଥିଲାବେଳେ ସେଠାରେ ଗୋଟିଏ କାଙ୍କଣ ଗଛ ହୋଇ ସ୍ୱତଃ ବଢୁଥିଲା । ଦିନେ କେହି ତାହାର ବୃଦ୍ଧି ଲାଗି ଖଣ୍ଡିଏ ରଞ୍ଜା ଦେବାରୁ ଗଛଟି ଝାଉଁଳି ପଡ଼ିବାର ଦେଖି ଲେଖକ ସେ ସମୟରେ ଏହି କବିତାଟି ଲେଖିଥିଲେ ।" (ମୁକୁର ୨।୧ ପୃ.୨୪)

(୨୬) ଅନାଥା କଳିକା – ମୁକୁର ୩/୧ (ଏପ୍ରିଲ, ୧୯୦୮) । ସତ୍ୟବାଦୀ ଓ ବାଉରୀବନ୍ଧୁଙ୍କୁ ଅନୁସରଣ କରି ଡକ୍ଟର ସାମନ୍ତରାୟ କବିତାଟି ସେପ୍ଟେମ୍ବର, ୧୯୦୭ ପୂର୍ବରୁ ଲିଖିତ ବୋଲି ଅନୁମାନ କରିଛନ୍ତି ।

(୨୭) ଶିବରାତ୍ରି – ମୁକୁର ୧/୧୨ (ମାର୍ଚ୍ଚ, ୧୯୦୭) ।

(୨୮) ପଥିକ – କବିତାଟି ବୋଧହୁଏ ପୂର୍ବରୁ ମୁଦ୍ରିତ ହୋଇନଥିଲା ।

(୨୯) ଗିରିଶିଖେ ଲୟ ରଖି ଚାଲିବି ମୁକର – ମୁକୁର ୩/୫ (ସେପ୍ଟେମ୍ବର, ୧୯୦୮) । ପତ୍ରିକାରେ ପ୍ରକାଶିତ ହେଲାବେଳେ ଏହାର ଶିରୋନାମା ଥିଲା 'ପଥିକ' । 'ଅବକାଶଚିନ୍ତା' ସଂକଳନର ଅନ୍ତର୍ଭୁକ୍ତ କଲାବେଳେ ପ୍ରକାଶକ ଏହି ନୂତନ ନାମକରଣ କରିଛନ୍ତି; କାରଣ 'ପଥିକ' ଶୀର୍ଷକରେ ଆଉ ଏକ କବିତା ତାଙ୍କଦ୍ୱାରା ଏହି ସଂକଳନଭୁକ୍ତ । ୧୯.୪.୧୯୧୯ରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ଚତୁର୍ଦ୍ଦଶ ବାର୍ଷିକ ଅଧିବେଶନରେ ସଭାପତି ଅଭିଭାଷଣ ଦେଇ ଶେଷରେ କବିତାର ଭାଷାରେ ଗୋପବନ୍ଧୁ କହିଥିଲେ, "ଗଲେ ପଛେ ଯାଉ ଜୀବ, ଯାହା ହେବ ଦେଖାଯିବ, ଗିରିପଥେ ଲୟ ରଖି ଚାଲିବି ମୁକର ।" ଏହି ଅଭିଭାଷଣକୁ ଅନୁସରଣ କରି ଡକ୍ଟର ସାମନ୍ତରାୟ କବିତାଟିର ସମୟ ନିର୍ଣ୍ଣୟ କରିଛନ୍ତି ୧୯.୪.୧୯୧୯ । ବସ୍ତୁତଃ, ଗୋପବନ୍ଧୁ ଭାଷଣର ଶେଷରେ, ଦଶବର୍ଷ ପୂର୍ବରୁ ଲିଖିତ ଓ ପ୍ରକାଶିତ, ନିଜର 'ପଥିକ' କବିତାର ଦୁଇ ପଂକ୍ତି ଆବୃତ୍ତି କରିଛନ୍ତି ।

(୩୦) ନୀରବ – ମୁକୁର ୪/୧ (ଏପ୍ରିଲ, ୧୯୦୯)

ପ୍ରସ୍ତୁତ ସଂକଳନରେ ୧୯୪୨ ମସିହାରେ ପ୍ରଥମଥର ପାଇଁ ମୁଦ୍ରିତ 'ଅବକାଶଚିନ୍ତା'ର ସମସ୍ତ କବିତା ସ୍ଥାନିତ ହୋଇଥିଲେ ହେଁ ସେଥିରେ ଥିବା କବିତାଗୁଡ଼ିକର କ୍ରମ ଓ ପାଠରେ ପରିବର୍ତ୍ତନ କରାଯାଇଛି । ଗୋପବନ୍ଧୁଙ୍କ ଜୀବଦ୍ଦଶାରେ ପ୍ରକାଶିତ 'ଅବକାଶଚିନ୍ତା'ରେ ଥିବା ନଅଟି କବିତାକୁ ପ୍ରଥମରେ

ସ୍ଥାନିତ କରି ୧୯୪୨ ମସିହାରେ ପ୍ରକାଶିତ 'ଅବକାଶଚିନ୍ତା'ରେ ନୂତନ ଭାବେ ସଂଯୋଜିତ କବିତାଗୁଡ଼ିକୁ ତା'ପରେ ରଖାଯାଇଛି । ୧୮୯୯ ସଂସ୍କରଣର କବିତାଗୁଡ଼ିକର ପାଠ ସେହି ସଂସ୍କରଣ ଭିତ୍ତିରେ ସଂଶୋଧନ କରାଯାଇଛି । ତେଣୁ ଏବର ଅବକାଶଚିନ୍ତାର 'କବିତା' ଶିରୋନାମାରେ ଥିବା କବିତାର ଶେଷପଂକ୍ତି 'ପ୍ରକାଶୁ ଏ ପ୍ରାଣେ ପୁଣ୍ୟ ମଧୁର ଉଲ୍ଲାସ' ବାଦ୍ ଦିଆଯାଇଛି । ୧୮୯୯ରେ ପ୍ରକାଶିତ 'ଅବକାଶ ଚିନ୍ତା'ର 'ଉତ୍ସର୍ଗପତ୍ର' ଓ 'ପାଦଟୀକା'କୁ ଏହି 'ପ୍ରାକ୍-ସୂଚନା'ରେ ଉଦ୍ଧାର କରାଯାଇଥିବାରୁ ସେଗୁଡ଼ିକ ସ୍ୱତନ୍ତ୍ରଭାବେ/'ପାଦଟୀକା' ଆକାରରେ ଦିଆଯାଇନାହିଁ । ୧୯୪୨ ମସିହା ସଂସ୍କରଣରେ ସଂଯୋଜିତ କବିତାଗୁଡ଼ିକର ଅନୁକ୍ରମାଙ୍କ ୧୦ରୁ ଆରମ୍ଭ ହୋଇଛି । ତେଣୁ ୧୯୪୨ ସଂସ୍କରଣର ପ୍ରଥମରେ ଥିବା କବିତା 'ପ୍ରାର୍ଥନା'ର ଅନୁକ୍ରମାଙ୍କ ହୋଇଛି ୧୦ । ଏହି ପଚିଶଟି କବିତାର ପାଠରେ ପତ୍ରିକାର ପାଠ (ଯେଉଁ ପଚିଶଟି ପତ୍ରିକାରେ ପ୍ରକାଶିତ) ଓ ସତ୍ୟବାଦୀ ଓ ବାଉରୀବନ୍ଧୁଙ୍କ 'ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ' ପୁସ୍ତକ ଆଧାରରେ ସଂଶୋଧନ କରାଯାଇଛି । ଫଳରେ 'ଗଞ୍ଜାମ ଜାତୀୟ ସମିତି' ଓ 'କ୍ରୋଧ' କବିତାରେ ଅଧିକ ଦୁଇଟି ପଂକ୍ତି ରହିଛି । 'ଗିରିଶିଖେ ଲୟ ରଖି...' କବିତାର ଗୋଟିଏ ଧାଡି 'କରି ଥରେ ବିଲୋକନ'କୁ ବାଦ୍ ଦିଆଯାଇ 'ପଥିକ' କବିତାର ଅନୁରୂପ ସ୍ଥାନରେ ଥିବା ପଂକ୍ତିକୁ ରଖାଯାଇଛି । ଗୋପବନ୍ଧୁଙ୍କ ଲେଖାର ମୂଳରୂପକୁ ଯଥାସାଧ୍ୟ ପାଠକମାନଙ୍କ ଆଗରେ ଉପସ୍ଥାପନ କରିବା ଏଭଳି ପରିବର୍ତ୍ତନର ମୌଳ ଉଦ୍ଦେଶ୍ୟ ।

ସଂପାଦକ

# କବିତାଦେବୀ

କି ମୋହନ ବେଶ ତୋର ହେ ସୁର-ସୁନ୍ଦରି[୧] !
କିଏ ସେ ଏପରି ଅଛି ଅହୃଦୟ ଜନ,
ତୋତେ ଦେଖି ନ ଯାଏ ଯା ଦୁଃଖ ଅପସରି,
ଆହ୍ଲାଦେ-ଅମୃତେ ନୁହେଁ ପରିପ୍ଲୁତ ମନ ?

ଶୁଦ୍ଧ ସରଳତା ତୋର ବାହ୍ୟ ଆଭରଣ,
ଦିବ୍ୟ ରସମୟ ଭାବେ ଅନ୍ତର ପୂରିତ,
ବାହ୍ୟ ଦୃଶ୍ୟେ ବିମୋହିତ ଜନ ସାଧାରଣ,
ଅନ୍ତର ରସେ ମଗନ କେବଳ ପଣ୍ଡିତ ।

ପ୍ରକୃତିର ବିଚିତ୍ରତା ତୋ ପବିତ୍ର ଅଙ୍ଗେ,
ନାନାବିଧ ମାନବର ବିଭିନ୍ନ ସ୍ୱଭାବ,
ହୋଇଣ ପ୍ରତିଫଳିତ ଆହା କେଡ଼େ ରଙ୍ଗେ
ଉପୁଜାଏ ହୃଦ-କ୍ଷେତ୍ରେ ନବ ନବ ଭାବ ।

ବିବେକ-ସଙ୍ଗିନୀ ଧନୀ କଳ୍ପନା-ସୁନ୍ଦରୀ
ଜ୍ଞାନଦାତ୍ରୀ ସଦାଶୟା ଭାବନା ସଙ୍ଗତେ,
ନିବସନ୍ତି ବେନି ପାଶେ ବେନି କର ଧରି
ଅନୁଗତ ପରିକରୀ[୨] ପରାୟେ ନିରତେ ।

ରଜୋଗୁଣମୟୀ[୩] ଦେବି, ବାଣୀସ୍ୱରୂପିଣି,
ନାନା ଭାବେ ନାନା ସ୍ଥାନେ ହୁଏ ତୋ ପ୍ରକାଶ,
ଏ ମୂଢ଼ ଅଜ୍ଞାନେ ଦୟା କର ଗୋ ଭାବିନି !
ବହୁବାର ଯତ୍ନେ ଯେଣୁ ହୋଇଛି ନିରାଶ ।

---

୧- ଦେବୀ; ୨- ସହକାରୀ; ୩- କବିତା ଦେବୀଙ୍କୁ, ସତ୍ତ୍ୱ, ରଜଃ ଓ ତମଃ ଏହି ତିନି ଗୁଣ ମଧ୍ୟରୁ, ରଜଃ-ଗୁଣସମ୍ପନ୍ନା ବୋଲି କୁହାଯାଇଛି ।

# କାଠଯୋଡ଼ୀ ତୀରେ ସାୟଂକାଳ(୧)

ଅତି ରମଣୀୟ କାଠଯୋଡ଼ୀ ତୀର,
ଧୀରେ ଧୀରେ ବହେ ଶୀତଳ ସମୀର ।
କଲ୍ଲୋଳିନୀ ବହୁ ସଲିଳ ସମ୍ପଦେ,
ପୂଜିବାକୁ ଧାଏଁ ମହାର୍ଣ୍ଣବ ପଦେ ।
ସ୍ତରେ ସ୍ତରେ ଉଠି ଉନ୍ନତ ଲହରୀ,
ପକାଏ ଉଠାଏ ପ୍ରତିକ୍ଷଣେ ତରୀ ।
ପାରିହେବା ଲୋକେ ମନେ କରି ଭୟ
ଲଗାନ୍ତି ଆପଣା ଇଷ୍ଟଦେବେ ଲୟ ।
ସୁଦକ୍ଷ ନାବିକ ବୁଦ୍ଧି କଉଶଳେ,
ଚଳାଏ ତରଣୀ ନିଜ ବାହୁବଳେ ।
ସାହସେ ଆହୁଲା ମାରେ ତରତର;
ନାକ ଫନ୍ଦିବାକୁ ନାହିଁ ଅବସର ।
ସାମାନ୍ୟ ଏ ନଦୀ ଏପରି ଦୁର୍ଗମ,
ଭବ-ସିନ୍ଧୁ ଆହା ନୁହେଁ କି ବିଷମ ।
ବିନା ଶ୍ରମ ଯତ୍ନେ କିଏ ହେବ ପାର,
ଦୁସ୍ତର ଅନନ୍ତ ଭବ-ପାରାବାର ?
ନୈତିକ ସାହସେ ହୋଇଣ ସାହସୀ
କର୍ତ୍ତବ୍ୟ-ରୂପିଣୀ ତରୀ ପରେ ବସି,
ବିବେକ-ଆହୁଲା ଅବିରତେ ମାର,
ହେବ ଯେବେ ଭବ-ମହାସିନ୍ଧୁ ପାର ।
ବ୍ରାହ୍ମଣ ଚଣ୍ଡାଳ ଧନେଶ ଭିଖାରି,
ଏକ ନାବେ ବସି ହେଉଛନ୍ତି ପାରି ।
ବିକାର କାହାରି ମନେ ନାହିଁ ଲବେ,
ଧର୍ମନାବେ ସମ ଅଟନ୍ତି ସରବେ ।
ଧନ୍ୟ କାଠଯୋଡ଼ୀ ପ୍ରିୟ ଶୈବଳିନି[୧],
ଧନ୍ୟ ପୂତନୀରା ତରଙ୍ଗମାଳିନି !

---

୧- ନଦୀ

ତୋର ବଡ଼ ଦୟା ଅକିଞ୍ଚନ ଜନେ,
ଧର୍ମଭାବ ତେଣୁ ଉପୁଜାଉ ମନେ ।

ଅସ୍ତାଚଳେ ଏବେ ପ୍ରବେଶ ତପନ,
ଲୋହିତ ରଞ୍ଜିତ ପ୍ରତୀଚୀ ଗଗନ ।
ଅସ୍ତମିତ ରବି ହିରଣ୍ମୟ କର,
ପ୍ରତିବିମ୍ବି ମେଘେ ଦିଶେ କି ସୁନ୍ଦର !
କୃଷ୍ଣ ମେଘେ ପଡ଼ି କନକ କିରଣ,
ସୃଜିଛି ଆହା କି ବିଚିତ୍ର ବରଣ !
ଏପରି ମହତ ଜନର ପ୍ରଭାବ,
ଜନ୍ମାଏ ଅପର ପ୍ରାଣେ ନିଜ ଭାବ ।
ମହତ ଜନର ଲାଗି ଅଙ୍ଗ ଛାୟା,
ପବିତ୍ର ହୁଅଇ କ୍ଷୁଦ୍ର ପ୍ରାଣିକାୟା ।
କ୍ଷଣମାତ୍ର ହେଲେ ସଜ୍ଜନ ସଙ୍ଗତି,
ତୁଟେ ସିନା ସତେ ସଂସାର-ଦୁର୍ଗତି ।

ପାଣ୍ଡୁର ଶ୍ୟାମଳ କଳା ଧଳା ରଙ୍ଗେ,
କ୍ରମେ ନଭସ୍ଥଳ ଶୋଭିଲା କି ରଙ୍ଗେ ।
ଯେତେବେଳେ ଆସେ ଯେଉଁ ରୂପ ମନେ,
ଦିଶଇ ତକ୍ଷଣେ ସେ ଛବି ଗଗନେ ।
ପ୍ରତିଭାତ ହୋଇ ସେ ଛବି ସକଳ,
ସରିତ ଅନ୍ତରେ ଶୋଭେ ଅବିକଳ ।
ଆବର ଶ୍ୟାମଳ ଶୈଳ ପ୍ରତିରୂପ,
ନଦୀଗର୍ଭେ ଦିଶେ ଯଥା ତମ-ସ୍ତୂପ !
ମହତ ଜନର ହୃଦେ ଏହି ମତି,
ଆଭାସେ ସତତ ଶତ ପ୍ରତିକୃତି ।
ପ୍ରେମ-ଭାବେ ଯାର ଅନ୍ତର ପୂରିତ,
ସର୍ବ ପ୍ରାଣୀ-ହୃଦ ତା ହୃଦେ ଅଙ୍କିତ ।
ସର୍ବ-ଅନୁଭୂତି ସର୍ବଭୂତେ ତାର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।

ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି,
ଅନ୍ୟ ହୋଇ ତାର ନାହିଁ ଆଉ କେହି ।
ଧନ୍ୟ ପ୍ରେମମୟୀ, ପ୍ରିୟ କଲ୍ଲୋଳିନୀ
ଶତ ଶତ ପ୍ରାଣୀ ଆହ୍ଲାଦ-ଦାୟିନୀ ।
ଧନ୍ୟ ଧନ୍ୟ ତୋର ପବିତ୍ର ଜୀବନ,
ଦେଖାଏ ମହାତ୍ମା-ହୃଦ-ନିଦର୍ଶନ ।

ଚାହୁଁ ଚାହୁଁ ଏବେ ବୁଡ଼ିଗଲେ ରବି,
ତିରୋହିତ ହେଲା କ୍ରମେ ସବୁ ଛବି ।
କ୍ଷଣ ମଧ୍ୟେ ସେହି ସୁଦୃଶ୍ୟ ନିଚୟ,
ଅନ୍ଧକାର-ଗର୍ଭେ ଭଜିଲେ ବିଲୟ ।
ଘୋର ତମେ ମତେ ଛାଡ଼ିଦେଇ ଏକା,
ଚାଲିଗଲେ ଆଉ ଦେଲେ ନାହିଁ ଦେଖା ।
ଏହିପରି ସବୁ ସଂସାର-ବେଭାର,
ଘୋର ଅନ୍ଧକାରେ ଆପେ ଆପଣାର ।
ନୁହେଁ କେବେ ଚିର ପ୍ରିୟ ବସ୍ତୁଗଣ,
ସଖା ମାତ୍ର ଏକା ଶ୍ରୀହରି ଶରଣ ।

## କାଠଯୋଡ଼ୀ ତୀରେ ସାୟଂକାଳ(୨)

ପଶ୍ଚିମ ଗଗନ କୂଳରେ ଉପଗତ ତରଣୀ,
ଖର ଖରାତାପୁଁ ମୁକତ ଏବେ ହେଲା ଧରଣୀ ।
ମୃଦୁଳେ ସୁଗନ୍ଧ ପବନ କରେ ପ୍ରଦୋଷ ଖେଳା,
ମଧୁକାଳେ ଏହା ମଧୁର ସନ୍ଧ୍ୟା-ବିହାର ବେଳା ।
କ୍ଷୀଣ-ଅଙ୍ଗୀ କାଠଯୋଡ଼ୀର ମନୋହର ପୁଳିନେ
ପରମ ଉଲ୍ଲାସ ଅନ୍ତରେ ଏବେ ଭ୍ରମିଲି ଦିନେ ।
ଅଦୂରେ ଶ୍ୟାମଳ ଶଇଳ ଆହା କି ଶୋଭାବନ୍ତ !
ପ୍ରକୃତିଦେବୀ କି କରିଚି ନଦୀ ଚାରୁ-ସୀମନ୍ତ !

ସୀମନ୍ତ ମଧ୍ୟରେ ସିନ୍ଦୂର- ବିନ୍ଦୁ ସମ ବର୍ତ୍ତୁଳ
ଅସ୍ତମିତ ରବିମଣ୍ଡଳ ଦିଶେ କେଡ଼େ ମଞ୍ଜୁଳ ।
ନିଶି ଆଗମନେ ରସିକା- ରୂପବତୀ ପରାୟେ,
ଦିବ୍ୟ ବେଶ ସାଜି ତଟିନୀ ସିନ୍ଧୁ ସଙ୍ଗମେ ଯାଏ ।
କ୍ରମେ ଚାଲିଗଲା ଏ ଛବି, ରବି ହୋଇଲେ ଲୀନ,
ଆଗତ ପ୍ରଦୋଷ ସମୟ, ଶେଷ ହୋଇଲା ଦିନ ।
ପାଣ୍ଡୁର ବରଣେ ରଞ୍ଜିତ ହୋଇଅଛି ଗଗନ,
କି ଅବା ଏପରି ଦିଶଇ ମୃତ-ଦିବା ବଦନ ।
ଚକ୍ରବାଳ ମୂଳୁ କ୍ଷଣକ ଅନ୍ତେ ହୋଇ ବାହାର,
ଧୂସରିତ କୃଷ୍ଣ ବରଣ କଲା ସବୁ ସଂହାର ।
ଘଟୁଅଛି ନିତି ଏପରି ଭବେ ଘଟନାଚୟ,
ଆଖି ବୁଜିଦେଲେ ସକଳ ବିଶ୍ୱ ଅନ୍ଧାରମୟ ।

କ୍ରମେ କ୍ରମେ ଏବେ ହୋଇଲା ଆସି ମୁହଁ ଅନ୍ଧାରି,
କଳନାଦ ରଚି ସଧୀରେ ବହେ ତଟିନୀ-ବାରି ।
ମୃଦୁ ଊର୍ମିପୁଞ୍ଜ ମଞ୍ଜୁଳ ଦିଶୁଥିଲା କି ରଙ୍ଗେ,
ବାରି ନୁହେ ଏବେ ଯିବାରୁ ମିଶି ତିମିର ଅଙ୍ଗେ ।
ଏହି ଦଶା ଦିନେ ଲଭିବ ଖିଳ ବିଶ୍ୱମଣ୍ଡଳ,
ସର୍ବଗ୍ରାସୀ କାଳ-ଅନ୍ଧାରେ ମଜ୍ଜିଯିବ ସକଳ ।
ଧନ୍ୟ କାଠଯୋଡ଼ି ! ତୋ ତୀରେ ନିତି ଏପରି ଚିତ୍ର,
ଦେଖି କେଉଁ ମୂଢ଼ ମାନସ ନ ହୁଅଇ ପବିତ୍ର
ଏହିପରି ନିତି ବିଲୋକି ନବ ଛବି ସକଳ,
କଠିନ ନାସ୍ତିକ ହୃଦୟ ପ୍ରେମେ ହୁଏ ତରଳ ।

ତୋର ପ୍ରାଣପତି ସାଗର— ତୀରେ ଅନେକ ବାର,
ପ୍ରଦୋଷ ସମୟେ ଆନନ୍ଦେ କରିଅଛି ବିହାର ।
ଏତେ ନବ ଛବି କଦାପି ଦେଖି ନ ଥିଲି ଥରେ,
ଗମ୍ଭୀର ଔଦାର୍ଯ୍ୟ ପ୍ରକାଶେ ତହିଁ ସଦା ଅନ୍ତରେ ।
ବିଶ୍ୱପତିଙ୍କର ଅନନ୍ତ ଶକ୍ତି ହୃଦେ ପ୍ରକଟେ,
ପରିପୁଷ୍ଟ ହୁଏ ସେ ଭାବ ଚାହିଁ ଗଗନ-ପଟେ ।
ନିତି ନିତି ଦେଖି ତୋ ତୀରେ ନବ ଛବି ପଟଳ

ଜାଣିଲି ସ୍ୱଭାବେ କାମିନୀ— ହୃଦ ଅତି ଚପଳ ।
ହେଉ ପଛେ ଯେତେ ମାନିନୀ ଗୁଣବତୀ ଯୁବତୀ,
ନବ ନବ ବେଶ ଭୂଷଣେ ସଦା ବଳାଏ ମତି ।
ସୁଦୃଢ଼ ଗମ୍ଭୀର ନୁହଇ ଯେଣୁ ନାରୀ-ହୃଦୟ;
ତେଣୁ ସିନା ନରେ ଅଟନ୍ତି ନାରୀ ଜାତି ଆଶ୍ରୟ ।
ସୁକୋମଳ କ୍ଷୀଣ ବଲ୍ଲରୀ ଲଭି ପାଦପ ସଙ୍ଗ,
ଆହା କି ପରମ ମଞ୍ଜୁଳ ଦିଶେ ଉଭୟ ଅଙ୍ଗ !
ତେବେ କିପାଁ ଏତେ ଯୁଝନ୍ତି ସଭ୍ୟ ନାରୀ-ସମାଜ,
ପତିଗଣ ସଙ୍ଗେ ସର୍ବାଂଶେ ସମ ହେବାକୁ ଆଜ ।
ରହିବ ବେନିଙ୍କ ପ୍ରକୃତି ମଧ୍ୟେ ନିଶ୍ଚେ ଭିନ୍ନତା,
କିଏ ସେ କରିବ ଅନ୍ୟଥା ଯାହା କଳ୍ପିଛି ଧାତା ।
ପ୍ରିୟ କଲ୍ଲୋଳିନି ! ତୋ ତୀରେ ଆଜି କଲି ଲୋକନ,
ପବିତ୍ର ସରଳ ଆଦର୍ଶ— ନାରୀ ଶୁଦ୍ଧ-ଜୀବନ ।
ପତି ପାଦସେବା କରିବା ପାଇଁ ହେ ସ୍ରୋତସ୍ୱତି !
ଅକ୍ଷୁଣ୍ଣ ମାନସେ ସନ୍ତତ କରୁ ଏକାନ୍ତେ ଗତି ।
ପରଶିବା ମାତ୍ରେ ତୋ ତନୁ ସୁଶୀତଳ ସମୀର,
ଊର୍ମି ଛଳେ ଲାଜ ଭୟରେ କମ୍ପିଉଠେ ତୋ ନୀର ।
କୁଳକାମିନୀର ଏପରି ସିନା ମହତ ରୀତି,
ଲଜ୍ଜାବତୀ ହୋଇ ଏକାନ୍ତେ କାନ୍ତେ ଆଚରେ ପ୍ରୀତି ।
ପ୍ରେମ ମଧୁରତା ସ୍ନେହାଦି ସ୍ନିଗ୍ଧ ଭାବ ସକଳ,
ତୋ ସ୍ୱଚ୍ଛ ଜୀବନେ ଦେଖଇ ଜ୍ଞାନୀ ନେତ୍ର କେବଳ ।
ନବ ନବ ବେଶ ଭୂଷଣେ ତୁ ଯେ ବଳାଉ ମନ
ଚପଳତା ସତ ନୁହଇ କିନ୍ତୁ ତାହା ଭୂଷଣ ।
ଦୁର୍ବଳ ପ୍ରକୃତି ଏପରି ଯେତେ ନାରୀ ପରାଣେ
ସଦ ବ୍ୟବହାରେ ବିମୁଖ ନୁହେଁ ପ୍ରମୋଦ ଦାନେ ।
ଉଚ୍ଚ ନୀଚ ବୃତ୍ତି ସକଳ ଯେବେ ସମେ ବିକାଶେ
ପୂର୍ଣ୍ଣ ହୁଏ ନର ସଂସାର ପୂରେ ସ୍ୱର୍ଗ ଉଲ୍ଲାସେ ।

# କାଠଯୋଡ଼ୀ ତୀରେ ଚନ୍ଦ୍ରାଲୋକ ନିଶୀଥ

ସୁଧାକର-କରଜାଳେ ବିଭୂଷିତା ମହୀ,
ଶାନ୍ତି ଦେବୀ ପଦେ ଖଟେ ମନ୍ଦାନିଳ ବହି ।
ମାୟାବିନୀ-ନିଦ୍ରାବଳେ ଜଗତ ମୋହିତ,
ଆହା କି ସୁନ୍ଦର ବେଶେ ପ୍ରକୃତି ଶୋଭିତ !
ନାହିଁ ଏବେ ଦିବସର ଘୋର କଳନାଦ,
କ୍ଷୁଦ୍ର ଚେତା ମାନବର ଜାତୀୟ ବିବାଦ ।
ନାହିଁ ଅଶାନ୍ତିରୂପିଣୀ ନୀଚ ନିଶାଚରୀ,
ସ୍ୱାର୍ଥପରତାର ଦୀର୍ଘ ଉଚ୍ଛ୍ୱାସ ଲହରୀ ।
ଆତ୍ମାଭିମାନର ନାହିଁ ଗମ୍ଭୀର ଶବଦ,
ଏକାବେଳେ ସର୍ବ ବିଶ୍ୱମଣ୍ଡଳ ସ୍ତବଧ ।
ସଂସାର ତୁମୁଳ ରଣ କ୍ଷଣେ ତିରୋହିତ,
ଗାଏ କି ସରିତ ତେଣୁ ସୁଶାନ୍ତ ସଙ୍ଗୀତ ?
ଅବ୍ୟକ୍ତ ଅବୋଧ ଅତି ସୁମଧୁର ତାନ,
କିବା ସେ ନିଗୂଢ଼ ତତ୍ତ୍ୱ ସାମବେଦ ଗାନ ।
ଅସଂଖ୍ୟ ତାରକାପନ୍ତି ଗଗନମଣ୍ଡଳେ,
ଶୁଣନ୍ତି ସେ ମହାଗୀତି ନୀରବ ନିଶ୍ଚଳେ ।
ମୂଢ଼ ଜ୍ଞାନହୀନ ମୁହିଁ କିଛି ନ ବୁଝଇ,
ତେବେ ହେଲେ ମୋ ଅନ୍ତର ଉଲ୍ଲସି ଉଠଇ ।
ଦେଖି ଶାନ୍ତିମୟ ଦୃଶ୍ୟ ଶୁଣି ଏ ସୁସ୍ୱର,
ଅପୂର୍ବ ସ୍ୱର୍ଗୀୟ ସୁଖେ ପୂରେ ମୋ ଅନ୍ତର ।
ଜାଣିଲି ମାନବ-ହୃଦ ସଙ୍ଗେ ଆଦିକନ୍ଦ,
ସ୍ଥାପିଛନ୍ତି ପ୍ରକୃତିର ବିଚିତ୍ର ସମ୍ବନ୍ଧ ।
କିନ୍ତୁ ଦୁରାଚାରୀ ନର ମୂଢ଼ ନିରନ୍ତର,
ସେ ସଂଯୋଗ ଛେଦିବାକୁ ବଡ଼ ତତପର ।
ନୀଚ ବୃତ୍ତି ସକଳର ହୁଏ ଯେଣୁ ଦାସ,
ସୁନ୍ଦର ପ୍ରବୃତ୍ତିଚୟ ଲଭନ୍ତି ବିନାଶ ।
ଧନ୍ୟ ସେହି କୃଷିଜୀବୀ ଆଦି ଆର୍ଯ୍ୟଦଳ,
ଗାଇଲେ ଯେ ଆଦି-ତତ୍ତ୍ୱ ସଙ୍ଗୀତ ସରଳ ।

ଜଡ଼ ବସ୍ତୁ ହୃଦେ ଯେହୁ କଲେ ବିଲୋକନ,
ମହାଶକ୍ତି ମହାତେଜଃ ଅନାଦି କାରଣ ।
ଜନମି ଥାନ୍ତି ସେ ଯୁଗେ ହେଲେ ମୁଁ ପାମର,
ସୁଖେ ସେବା କରିଥାନ୍ତି ପ୍ରକୃତି-ପୟର ।
ବାହ୍ୟ ଆବରଣ ଫେଡ଼ି ପ୍ରକୃତି ଅନ୍ତରେ
ଦିବ୍ୟ ଜ୍ଞାନନେତ୍ରେ ହେଲେ ଦେଖିଥାନ୍ତି ଥରେ ।
ଅପ୍ରାକୃତ ପ୍ରେମ-ରୂପ ସତ୍ୟ ସନାତନ,
ଅନନ୍ତ ବାସନା ହୋଇଥାଆନ୍ତା ପୂରଣ ।
ଧନ୍ୟ କାଠଯୋଡ଼ି ! ଧନ୍ୟ ପ୍ରିୟ ଶୈବଳିନି !
ତାପିତ ହୃଦେ ତୁ ଶାନ୍ତି-ସୁଧା-ସଂଚାରିଣୀ ।
ସଂସାରର ଲଜ୍ଜା-ଘୃଣା-ପ୍ରବଞ୍ଚନା-ଜାଳେ
ପ୍ରପୀଡ଼ିତ ହୁଏ ମୋର ମାନସ ଯେକାଳେ,
ନିଭୃତେ ତୋ ତୀରେ ଆସି କଲେ ବିଚରଣ,
କି ମୋହନ ମନ୍ତ୍ରେ କରୁ ସକଳ ହରଣ ।
ବିବିଧ ସ୍ୱର୍ଗୀୟ ଚିନ୍ତା ନାନା ପ୍ରିୟ ଭାବ,
କଳୁଷିତ ହୃଦେ ମୋର କରାଉ ଉଦ୍ଭବ ।
ତୋର ପଦଯୁଗେ ମୁହିଁ ଚିରକାଳ ଋଣୀ,
ଏହି ଭାବ ଥାଉ ନିତି ହେ ସୁରତରୁଣି !

## ପଣ୍ଡିତ ହରିହର ଦାଶଶର୍ମା*

ଆହେ ହରିହର ! ସୁଯୋଗ୍ୟ କୁମର
ଥିଲ ଉତ୍କଳମାତାର,
କି ମଙ୍ଗଳ କ୍ଷଣେ ଉତ୍କଳ-ଭୁବନେ
ହେଲା ତୁମ୍ଭ ଅବତାର !

ସମାଜ-ଦୁର୍ଗତି ସମୟର ରୀତି
ବୁଝିଥିଲ ତୁମ୍ଭେ ଏକା,
ସଂସ୍କାର-ବାସନା ସାଧୁ ପ୍ରାଣେ ସିନା
ତେଣୁ ଦେଇଥିଲା ଦେଖା ।

କେତେ ଉଚ୍ଚଭାବ ଲଭିଥିଲା ଠାବ
ତୁମ୍ଭ ଉଦାର ହୃଦୟେ,
କି କଲା ଦଇବ କେ ତାହା ସହିବ
ଚାଲିଗଲ ଅସମୟେ ।

ମୂକ ହୋଇକରି** ଆଜିଯାଏ ହରି
ଯେବେ ରହିଥାନ୍ତ ବଞ୍ଚି,
ଓଡ଼ିଆଙ୍କ ହାତେ ଦେଉଥାନ୍ତ ସତେ
ଉନ୍ନତି-ଭଣ୍ଡାର-କଞ୍ଚି ।

ନବ୍ୟ ପୁରାତନ ରୁଚି ସମ୍ମିଳନ
କରିବ ଏବେ କିଏ ସେ ?
ଉତ୍ସାହ ଉଦ୍ୟମ ସାହସ ଅଦମ୍ୟ
କାହିଁ ଏ ଉତ୍କଳ ଦେଶେ !

ପାଞ୍ଚିଥିଲ ମନେ ଠେକିବେ ବ୍ରାହ୍ମଣେ
ଯେବେ ଚିର କୁସଂସ୍କାର,
ଅନ୍ୟ ଯେତେ ଜାତି ଉଠିବେ ଝଟତି
ହେବ ଉନ୍ନତି ପ୍ରଚାର ।

ନିଦାରୁଣ କାଳ କିନ୍ତୁ ଏ ସକଳ
ସହି ନ ପାରିଲା କ୍ଷଣେ;
ବନଫୁଲ ପରି ଅଚିରେ ବିକଶି
ଝାଉଁଳି ପଡ଼ିଲ ବଣେ ।

କିଶୋର ବୟସେ କେତେ ସ୍ୱାର୍ଥତ୍ୟାଗ
କରିଥିଲ ଦେଶ-ହିତେ,
ଏବେ ଦେଶ ଦଶା ଆହେ କ୍ଷଣଜନ୍ମା
ନ ପଡ଼େ କି ଦିବ୍ୟ ଚିତ୍ତେ ?

ଉତ୍କଳମଣ୍ଡଳେ ନବ୍ୟ ସଭ୍ୟ ଦଳେ
ସର୍ବେ ଆଜି ସ୍ୱାର୍ଥପର,
ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।

* ଏ ଜଣେ ପୁରୀର ବିଖ୍ୟାତ ପଣ୍ଡିତ ଥିଲେ । ଏହାଙ୍କ ଯତ୍ନରେ ପୁରୀ ସଂସ୍କୃତ ବିଦ୍ୟାଳୟ ସଂସ୍ଥାପିତ । ଭାରତର ନାନା ସ୍ଥାନର ସଭାମାନଙ୍କରେ ଏ ନିଜ ଅସାଧାରଣ ବାଗ୍ମିତାର ପରିଚୟ ଦେଇଥିଲେ । ୩୫ ବର୍ଷ ବୟସରେ ମାନବଲୀଳା ସମ୍ବରଣ କରିବାରୁ ନିଜର ଉଚ୍ଚ କଳ୍ପନାମାନ କାର୍ଯ୍ୟରେ ପରିଣତ କରିପାରିଲେ ନାହିଁ ।

** ମରିବାର ଏକବର୍ଷ ପୂର୍ବରୁ ଏ ମହୋଦୟ ମୂକ ହୋଇଯାଇଥିଲେ ।

## ମୋ ନାନୀ

ଆବାଲ୍ୟ ବିଧବା ଆହା, କେବେ ମାତ୍ର ବାରେ
ଭୋଗି ନାହଁ ଦିବ୍ୟ ଶୁଦ୍ଧ ଦାମ୍ପତ୍ୟ-ପ୍ରଣୟ,
ପର ସେବାବ୍ରତେ ନିଜ ଜୀବନ ସମୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।
ସଦା ସମଭାବ ତବ ଭିତରେ ବାହାରେ,
ପରଲାଗି ଆଲୋଡ଼ିତ ସତତ ହୃଦୟ,
ଆଜୀବନ ତେଜି ନିଜ ସୁଖ ସମୁଚ୍ଚୟ,
ସୁଧାମୟ ମାତୃଭାବ ମିଳେ ତୁମ୍ଭଠାରେ ।
ସଦାଶୟା ସ୍ନେହମୟୀ ପରମ ପାବନୀ,
ଜୀବନ ମହତ ଲକ୍ଷ୍ୟ ସାଧୁଛ ଗୁପତେ,
ତୁମ୍ଭ ରୀତି ଆଚରିଲେ ସକଳ କାମିନୀ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।
ତୁମ୍ଭର ନିଷ୍କାମ ସ୍ନେହ ସଦା ଥିବି ମାନି,
ଯହିଁ ଥିଲେ ସ୍ମରୁଥିବି ନିତି "ନାନୀ, ନାନୀ" ।

# ଚନ୍ଦ୍ର

## (୧)

ଆରେ ପୂର୍ଣ୍ଣ ନିଶାମଣି ! ଯେ କାଳେ ତୁ ନିଶିରାଣୀ
ସଙ୍ଗେ କରୁ ପ୍ରିୟ ସମ୍ଭାଷଣ,
କାହୁଁ କିପାଁ ତୋ ଉତ୍ପତ୍ତି କଲା କେଉଁ ମହାମତି
ଏ ତତ୍ତ୍ୱ ସକଳ ସଦା ଭାବଇ ମୋ ମନ,
ଦେଖିଲେ ସେ କାଳେ ତୋର ବିମଳ ବଦନ ।

## (୨)

କେ କହେ ତୋର ଶରୀର ଧରିଛି ବହୁ ଭୂଧର,
ବହୁ ଶତ ନିବିଡ଼ କାନନ,
ନାହିଁ ତୋହର ପରାଣ, ଅଟୁ ତୁ ଧରା ସମାନ,
ଅତି ସୁପ୍ରକାଣ୍ଡ ଏକ ବସ୍ତୁ ଅଚେତନ;
ମାତ୍ର ଏ ବିଚାର କେବେ ନ କରେ ମୋ ମନ ।

## (୩)

ଯଥାର୍ଥ ଅଟୁ ତୁ କିସ ? କହ ରେ ରଜନୀ-ଈଶ
ନିସ୍ତବ୍‌ଧେ କି କରୁଛୁ ସାଧନ ?
ହସୁଛୁ ଅତି ଆନନ୍ଦେ, ଏ ନିଶୀଥେ ମନ୍ଦେ ମନ୍ଦେ;
ଅଂଶୁମାଳେ ବିମଣ୍ଡିଣ ସମସ୍ତ ଭୁବନ,
ଏ ମହାଲକ୍ଷ୍ୟ କି କେବେ ଜାଣିବ ଏ ଜନ ?

## (୪)

ଏ ଛାର ପାର୍ଥିବ ଜନ କି ଛାର ଏହାର ଜ୍ଞାନ,
ତୁହି ପୁଣି ସୁରଲୋକବାସୀ,
ତୋ ନିଗୂଢ଼ ତତ୍ତ୍ୱମାନ, ବୁଝିବ କି ଏ ଅଜ୍ଞାନ,
ଶାନ୍ତମୟୀ ନିଶିରାଣୀ ଯା ପାଦର ଦାସୀ,
ଅନୁଗତ ଯାର ତାରା ଗ୍ରହ ରାଶି ରାଶି ।

(୫)

ଚିତ୍ତେ ହୁଏ ଅନୁମିତ, ଗାଉ ତୁ ବିଭୁ-ସଙ୍ଗୀତ;
ପ୍ରକାଶିବା ପାଇଁ ଏ ଜଗତେ,
କର୍ତ୍ତାଙ୍କର ଅବସ୍ଥିତି କଲେ ଯେ ତୋର ଉତ୍ପତ୍ତି,
ନିର୍ଜୀବ ବୋଲିଣ ତୋତେ ବୋଲିବି କେମନ୍ତେ ?
ରହୁ ଏ ମୋ ମୂଢ଼ ମନ ତୋ ବିଭୁ-ସଙ୍ଗୀତେ ।

## କୋକିଳ

ମଧ୍ୟାହ୍ନ ତପନ-କର ପ୍ରଚଣ୍ଡ ପ୍ରଖର
ଅବସନ୍ନ ତରୁଲତା ପଶୁ-ପକ୍ଷୀ-ନର,
ଏବେ ଶ୍ରମବାଧା ପାଇ
ପ୍ରବେଶିଲି ଛାୟାପ୍ରଦ ଘନ ବନେ ଯାଇ ।୧।

ଆହା କେଡ଼େ ଶାନ୍ତିମୟ ଏହୁ ବନସ୍ଥଳୀ !
ଶୁଭୁନାହିଁ ସୁଦ୍ଧା ଏଥି ବିହଙ୍ଗ-କାକଳୀ,
ବହେ ଭାର୍ଗବୀ ସୁନ୍ଦରୀ,
ନୀରବ ଗମ୍ଭୀରେ ନିଜ ଗତି ଅନୁସରି ।୨।

ସୁଶ୍ୟାମଳ ତୃଣବାସେ ଆଚ୍ଛାଦିତ ମହୀ
ସୁଶୀତଳ ସମୀରଣ ବହେ ରହି ରହି,
ଆହା କିଏ ସେ ଏକାଳେ,
ମୋ ଶ୍ରୁତିପଥରେ ସୁଧାମୟ ବାଣୀ ଢାଳେ ?୩।

ସଂସାର-ସମରେ ଦଗ୍ଧ ମୋ ବ୍ୟସ୍ତ ଜୀବନ
ପରମ ଉଲ୍ଲାସ-ରସେ ହେଲା ନିମଗନ,
ଆହା ସେ ମଧୁର ଗୀତି
ମୋ ତାପିତ ହୃଦେ ଜାତ କଲା ଦିବ୍ୟ ପ୍ରୀତି ।୪।

ନିରେଖିଲି ଚଉଦିଗେ ସାବଧାନ ନେତ୍ରେ
କାହାକୁ ଦେଖିଲି ନାହିଁ ଡାଳେ କିବା ପତ୍ରେ

ବହେ ସେ ସଙ୍ଗୀତ-ସୁଧା,
ପୁଲକି ଉଠେ କି ସତେ ନିଖିଳ ବସୁଧା !୫।

ମନେ ବିଚାରିଲି ଶାନ୍ତିଦେବୀ ରାଜପଣେ
କରନ୍ତି ସଙ୍ଗୀତ ସ୍ୱର୍ଗ-ଅପସରାଗଣେ
ରହି ଅଦୃଶ୍ୟେ ଗୋପନେ
ବୁଝିବେ ଏହାର ଅର୍ଥ କାହୁଁ ମର୍ତ୍ତ୍ୟଜନେ ?୬।

କ୍ଷୁଦ୍ର ପକ୍ଷୀ ଏକ ତରୁଶାଖାରୁ ଏକାଳେ
ଉଡ଼ି ପଶିଗଲା ଲତାକୁଞ୍ଜ ଅନ୍ତରାଳେ,
ବାଣୀସ୍ରୋତ ପରମ୍ପରା
ଏବେ ତାହା ପଛେ ପଛେ ବହିଗଲା ପରା !୭।

ସେ ଲତାମଣ୍ଡପୁ ପୁଣି ବାହାରିଲା ତାନ
ଜାଣିଲି ସେ କ୍ଷୁଦ୍ରପକ୍ଷୀ କରୁଅଛି ଗାନ,
ଧନ୍ୟ ଧନ୍ୟରେ ବିହଙ୍ଗ,
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ?୮।

ଗୁଣ ଥିଲେ ରୂପରେ କି ଅଛି ପ୍ରୟୋଜନ ?
ରୂପ ଅଟଇ କେବଳ ବାହ୍ୟ ଆଭରଣ,
ଧନ୍ୟ ଧନ୍ୟ ରେ ବିହଙ୍ଗ
କି ହେବ ବା ହେଲେ ତୋର ଅସୁନ୍ଦର ଅଙ୍ଗ ? ।୯।

ଭାରତ ପ୍ରାଚୀନ ଆର୍ଯ୍ୟ ମୁନିଗଣ ପରି
ମହାଲକ୍ଷ୍ୟ ସାଧୁ ଗୁପ୍ତେ ସାଧୁରୀତି ଧରି,
ତେଣୁ ତେଜି ଆଡ଼ମ୍ବର,
ଉଚ୍ଚାରୁ ନିଭୃତେ ବସି ଏ ମହାମନ୍ତର ।୧୦।

ସେ ମହାପୁରୁଷେ ଯଥା ବସି ବନସ୍ଥଳେ
ପ୍ରକାଶିଲେ ଦିବ୍ୟତତ୍ତ୍ୱ ଧରଣୀ-ମଣ୍ଡଳେ,
ତଥା କରୁ ଦିବ୍ୟନାଦ
ଶୁଣି ଯାହା ତୁଟେ ନର-ହୃଦ ଅବସାଦ ।୧୧।

ଏ ଯୁଗର ପ୍ରାଣୀ ନୋହୁ ଜାଣିଲି ରେ ପକ୍ଷୀ ।
ପ୍ରାଚୀନ ମହତ ରୀତି ଅଛୁ ତେଣୁ ରଖି,

ନାହିଁ ଗର୍ବ ଅହଙ୍କାର,
ତୋ ନିବାସ ଉପଯୋଗୀ ନୁହେ ଏ ସଂସାର ।୧୨।

କେଡ଼େ କ୍ଷୁଦ୍ର ଦେହେ କେଡ଼େ ଗୁରୁତର ଭାବ
ଲାଗଇ ଆଶ୍ଚର୍ଯ୍ୟ ମୋତେ ଦେଖି ତୋ ପ୍ରଭାବ,
ଆରେ ପ୍ରବୀଣ ବିହଙ୍ଗ,
ଲଭିବାକୁ ମୋର ଇଚ୍ଛା ତୋର ସାଧୁସଙ୍ଗ ।୧୩।

ଅଜ୍ଞାନ ତିମିରେ ଅନ୍ଧ ଭାରତ ସନ୍ତାନ
ହରାଇଛନ୍ତି ଜାତୀୟ ମାନ ଅଭିମାନ
ଆରେ ପ୍ରିୟ ପକ୍ଷୀବର,
ଗାଅନାହିଁ ପୂର୍ବସ୍ମୃତି ବିଦାରେ ଅନ୍ତର ।୧୪।

ଜାଣିବ କି ହେ ପାଠକ ଏ ବିହଙ୍ଗ ନାମ,
ଜାଣିବ କି କାହିଁ ଏହା ସୁଖମୟ ଧାମ ?
ନାମ ଏହାର କୋକିଳ,
ବସନ୍ତ-ରାଜ୍ୟ-ନିବାସୀ 'ସୁରକ୍ଷଣଶୀଳ'* ।୧୫।

* ପ୍ରାଚୀନ ଉଭମବିଧି ସକଳର ରକ୍ଷକ ।

## ଗ୍ରୀଷ୍ମେ ଖୁଣ୍ଟାଗଛ

ହେ ତରୁବର ! କାହିଁ ସେ କଳେବର ?
ଅଳପଦିନ ତଳେ ଏଡ଼େ ସୁନ୍ଦର !
ମନୋଜ୍ଞ କିଶଳୟଦଳେ ଶୋଭିତ,
ମୋହିତ କରିଥିଲୁ ଭାବୁକ ଚିତ୍ତ ।
ନବୀନ ଯୁବାଜନ ସମ ପ୍ରଫୁଲ୍ଲ,
ଦିଶୁଥିଲୁରେ ଦ୍ରୁମ କେଡ଼େ ମଞ୍ଜୁଳ !
ଏବେ କିପାଇଁ ତେଜି ସେ ଦିବ୍ୟ ଦେହ,
ଏ ଦୀନହୀନ ବେଶେ କରୁଛୁ ସ୍ନେହ ?
ଖୁଣ୍ଟା ଶରୀରେ ଛିରେ ହୋଇଛୁ ଛିଡ଼ା,
ପୂର୍ବପରି ପବନେ ନାହିଁ ତୋ କ୍ରୀଡ଼ା ।

କଙ୍କାଳ ମାତ୍ର ଅଛି ତୋ ଅବଶିଷ୍ଟ,
ନ ଜାଣଇ ପଡ଼ିଲା କି ଦଶା ରିଷ୍ଟ।
ନିଦାରୁଣ ନିଦାଘ ହୋଇ ଭଗାରି,
ବଳ ବୟସ ବପୁ ଦେଲା କି ସାରି ?
ତୋ ପୂର୍ବତନୁଶୋଭା ସୁମରି ମନେ,
ଏ ରୂପ ଦେଖି ଅଶ୍ରୁ ଆସେ ନୟନେ;
କ୍ଷଣ-ଭଙ୍ଗୁର ସିନା ନର-ଯୌବନ
ପ୍ରସ୍ଫୁଟିତ କୁସୁମେ ବାସ ଯେସନ।
ଦେଖିଣ ଭବେ ନିତି ଏପରି ରୀତି,
ଆଚରେ ଯୁବାଜନ କେତେ ଅନୀତି।
ହେ ବୃକ୍ଷରାଜ ! କଲି ଯେଉଁ ବିଚାର,
ନୁହେଁ ତୋର ସେପରି ହୀନ ଆଚାର।
ତୋ ଯୁବାକାଳେ ସାଧି ପ୍ରାଣୀ-ମଙ୍ଗଳ,
କରିଛୁ ରେ ପାଦପ ! ଜନ୍ମ ସଫଳ।
ଦେଇ କୋମଳ ଛାୟା ସୁପକ୍ୱ ଫଳ,
କରିଛୁ କେତେ ଦଗ୍‌ଧ-ପ୍ରାଣ ଶୀତଳ।
କାଟିଲୁ ଯୁବାକାଳ ପରୋପକାରେ,
ଧନ୍ୟ ଧନ୍ୟ ଜୀବନ ତୋର ସଂସାରେ !
ଏବେ ମାୟା ମମତା ସବୁ ବିହରି,
ନୀରବେ ଏକ ଲୟେ ଭଜୁ ଶ୍ରୀହରି।
ଧରିଣ ଯତି-ଦୀକ୍ଷା ସାଧୁଛୁ ଯୋଗ,
ପରମବ୍ରହ୍ମେ ଚିତ୍ତ କରି ସଂଯୋଗ।
ପ୍ରଖର ରବି-କରେ ଟେକିଛୁ ମଥା,
ତପ-ପ୍ରଭାବେ ହୃଦେ ନ ଲାଗେ ବ୍ୟଥା।
ଚଉପାଶେ ଦାବାଗ୍ନି ପ୍ରଚଣ୍ଡେ ଜଳେ,
ଅନଳକୁଣ୍ଡ ଯଥା ତପସ୍ୟା ସ୍ଥଳେ।
କଷ୍ଟଯୋଗୀ ପରାୟେ ଦିଶେ ଶରୀର,
ରହିଛି ଅସ୍ଥି-ଚର୍ମ, ନାହିଁ ରୁଧିର।
ଦେଖିଣ ଏ ନୀରସ ସ୍ଥବିର ତନୁ,
ଭୟ ଭକତି ଭାବ ଉପୁଜେ ମନୁ।

ପଡ଼ଇ ସ୍ମୃତି-ପଥେ ଅତୀତ କଥା,
ଭାରତର ଗୌରବ ଆଶ୍ରମ ପ୍ରଥା ।
ସମାଜ ସୁରକ୍ଷଣେ ଅପୂର୍ବ ବିଧି,
କାହିଁ ଗଲା ଏବେ ସେ ଅମୂଲ୍ୟ ନିଧି ।
ମୁକତି ଲାଭେ ସେହି ଧର୍ମ-ନିଶୁଣି
ସତେ କି କେବେ ଫେରି ଆସିବ ପୁଣି ?
ଗୃହସ୍ଥାଶ୍ରମ ଏକା ଏ ଯୁଗେ ସାର,
ନ ତୁଟେ ମଲାଯାଏ ମାୟା-ସଂସାର ।
ଗୃହସ୍ଥାଶ୍ରମେ ପୁଣି ନାହିଁ ସେ ନୀତି,
ଧର୍ମ-କର୍ମ-ସାଧନେ ସରଳ ପ୍ରୀତି ।
ସ୍ୱାର୍ଥସାଧନେ ରତ ସର୍ବେ ନିରତେ,
କେତେ କାଳ ଏପରି ହେବ ଭାରତେ !

## ପ୍ରାର୍ଥନା

ପ୍ରଭୁ ଦୟାମୟ ଜଗତପତି
ଅନାଥର ନାଥ ଅଗତିଗତି
ତବ ଶ୍ରୀଚରଣେ ଏହି ବିନତି
କରୁଛୁ ଉତ୍କଳ-ଶିଶୁ ସନ୍ତତି
ମିଳି ଆଜି ଏକମନେ ହେ,
ଦିଅ ନବ ତେଜ ନବୀନ ସାହସ
ଉତ୍କଳମାତା ଜୀବନେ ହେ ।୧।

ହିନ୍ଦୁ ଖ୍ରୀଷ୍ଟ ଜୈନ ମୁସଲମାନ,
ଭେଦ ଭୁଲି ଏବେ ସର୍ବେ ସମାନ,
ଭ୍ରାତୃ-ପ୍ରେମ-ଡୋରେ ହୋଇଣ ବାନ୍ଧି
ଜଣାଉଛୁ ତବ ଛାମୁରେ କାନ୍ଦି
ଅରକ୍ଷିତ ଶିଶୁକୁଳ ହେ,
ଜନନୀ ବିଷାଦେ ଭସାଇ ନ ଦିଅ
କେବେ ପ୍ରଭୁ ଆଦିମୂଳ ହେ ।୨।

ଉତ୍କଳ ମାତାର ଅତୀତ ଯଶ,
ବିପୁଳ ବିଭବ ବଳ ସାହସ
ସୁମରଣେ ଫାଟିଯାଏ ହୃଦୟ,
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ
ରକ୍ତ-ମାଂସ-ଦେହ ଧରି ଯେ,
ଅଧୀର ଆତୁର କିଏ ସେ ନ ହେବ
ଦେଖି ମାତା ଏତେ ସରି ଯେ ।୩।

ଅଛି ସେହି ନଦୀ, ଅଛି ସେ ଗିରି,
ଅଛି ସେ ବିପିନ, କାହିଁ ସେ ଶିରୀ ?
ଅଛି ସେହି ସେତୁ, ସେହି ଦେଉଳ,
କାହିଁ ସେହୁ ଦକ୍ଷ କରସଂକୁଳ[1] ?
କଲା ଯା ଏତେ କୀରତି ଯେ,
ଦଶ ଦିଗ ଶୂନ୍ୟ କାହିଁ ପୂର୍ବ ପୁଣ୍ୟ,
କାହିଁ ସେ ପୂର୍ବ ଶକତି ଯେ ? ।୪।

ରହିଅଛି କାବ୍ୟ ନାହାନ୍ତି କବି,
ଅଛି ସେହି ଦେଶ ନାହିଁ ସେ ଛବି,
କାଳବଳେ ସବୁ ସରିଛି ସାର,
ଆହା କି ସୁନ୍ଦର କି ନାରଖାର !
କି ଘୋର କର୍ମବିପାକ[2] ହେ,
ହର ଏ ଦୁର୍ଗତି ହରି ବିଶ୍ୱପତି
ଶୁଣ ଏ କାତର ଡାକ ହେ ।୫।

ସର୍ବ ଧର୍ମ ଧାମ ପୁଣ୍ୟ ଉତ୍କଳ-
ବଦନେ ବିକାଶୁ ଚାରୁ ବିମଳ,
ଜାଗୁ ଚଉଦିଗେ ନବ ପରାଣ,
କର ଏ କରୁଣା ଆରତତ୍ରାଣ,
ନୀଳାଚଳ, ନୀଳାଚଳ ହେ,
ବୋଲି ସୁବିଶାଳ ଭାରତ ଭୁବନେ
ପଡୁ ସତତ ଚହଳ ହେ ।୬।
ବ୍ରାହ୍ମଣ-ଶାସନ ଶବରପଲ୍ଲୀ,
କୃଷକ କୁଟୀର ନୃପ ଅଟ୍ଟାଳି,

୧- ହାତମାନ, ୨- ମନ୍ଦ ପରିଣାମ/ଭାଗ୍ୟ-ବିଡ଼ମ୍ବନା

ଜାତୀୟତା-ସ୍ରୋତେ ହେଉ ପ୍ଲାବିତ,
ଉଠୁ କୋଟି କଣ୍ଠୁ ଜାତୀୟ ଗୀତ,
ତେଜି ସ୍ୱାର୍ଥ ଅଭିମାନ ଯେ,
ଜନନୀ-କଲ୍ୟାଣେ ସାଧୁ ଅନୁଷ୍ଠାନେ
ରହୁ ସଦା ମନ ଧ୍ୟାନ ଯେ ।୭।

ସଂସାର ତୁମୁଳ ରଣପ୍ରାଙ୍ଗଣେ,
ଉତ୍କଳର ଦୀନ ତନୟ-ଗଣେ,
ପଛରେ କେବେହେଁ ନ ପଡୁ ଦେବ,
ଶ୍ରୀଛାମୁରୁ ଏହି ଆଦେଶ ହେବ,
ଘେନି ଅପୂର୍ବ ଉତ୍ସାହ ଯେ,
ଭାରତର ମହା- ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ ଯେ ।୮।

## ବାଣୀ

(୧)

ସୃଷ୍ଟି ଆଦ୍ୟକାଳୁ ଦେବୀ ତୋହର ଉତ୍ପତ୍ତି,
ତୋର ନିତ୍ୟ ଲୀଳାଭୂମି ଅନନ୍ତ ଅପାର[୧],
ଅନନ୍ତ ଅଦ୍ଭୁତ ଅତି ତୋ ମହାଶକତି,
ସହଜେ ବୁଝିବ କାହିଁ ତାହା ନର ଛାର ।

(୨)

ଅନଳେ ଆହୁତିଧାରା କରି ବରଷଣ,
ପୂତନୀରା ସରସ୍ୱତୀ-ପୁଳିନ[୨] ପ୍ରଦେଶେ
ଗାଇଲେ ସଙ୍ଗୀତ ଯେବେ ଆଦି ଋଷିଗଣ[୩]
ପ୍ରକାଶିଲୁ ତହିଁ ମାତଃ କି ଶୁଦ୍ଧ ସୁବେଶେ !

୧- ଅଗାଧ ୨- ପୁରାଣକଥିତ ସରସ୍ୱତୀ ନଦୀର କୂଳ, ୩- ବେଦର ସ୍ରଷ୍ଟା ଋଷିଗଣ ।

(୩)

ସେ କାଳର ଶୁଦ୍ଧ ବେଶ ଦିବ୍ୟ ଭାବମାନ
ବିଭାସିଣ[୪] ଆଲୋକିଛି ସର୍ବ ବସୁନ୍ଧରା
ତମାବୃତ କିନ୍ତୁ ଆଜି ଭାରତ-ସନ୍ତାନ,
ନ କରଇ କହ କିବା କାଳ ପରମ୍ପରା[୫] !

(୪)

ପଙ୍କଜ-ବାସିନୀ ଦେବୀ ନିତ୍ୟ ବୀଣାପାଣି,
ବାଅ[୬] ସେ ଅମର ବୀଣା କୃପା କରି ଥରେ,
ପ୍ରବେଶୁ ତା ଦିବ୍ୟନାଦ ମୃତସଞ୍ଜୀବନୀ
ମୃତ ପ୍ରାୟ ଭାରତର ହୃଦୟ-କନ୍ଦରେ ।

(୫)

ଭାରତେ ଉତ୍କଳ ପୁଣି ଅତି ଅଭାଗିନୀ,
ଧନେ, ଜନେ, ମାନେ, ଜ୍ଞାନେ, ବିକ୍ରମ, ସାହସେ;
ଆଦେଶେ ମା ଫୁଟି ତବ ଆବାସ-ନଳିନୀ[୭]
ଗୌରବ-ତପନେ ବରୁ ଉତ୍କଳ-ନଭସେ[୮] ।

(୬)

ମହାନନ୍ଦେ ବିହରିଣ ନିତି ଜ୍ଞାନ-ବନେ
ଶାସ୍ତ୍ର-ସୁମନରୁ ସତ୍ୟ-ମକରନ୍ଦ ରାଶି
ଆହରିଣ ଭକ୍ତିଭରେ ହେ ସୁଧୀବନ୍ଦନେ !
ଖଟନ୍ତୁ ତୋ ପଦଯୁଗେ ଉତ୍କଳ-ନିବାସୀ ।

(୭)

ମୁଁ ଅତି ସାମାନ୍ୟ, ମୋର ସାମାନ୍ୟ କାମନା,
ପୂରୁ ମାତଃ ବାକ୍ୟ-ଦେବୀ[୯] ତୋହର ପ୍ରସାଦେ,
ବାସ୍ତବ ବିଶ୍ୱର ଯେତେ ନୀରସ ଘଟନା
ପ୍ରବେଶ ନ କରୁ କେବେ ମୋ ସୁଖ-ପ୍ରାସାଦେ ।

୪- ଆଲୋକିତ ହୋଇ, ୫- ଗତି/କାର୍ଯ୍ୟ, ୬- ବଜାଅ, ୭-ଶ୍ୱେତ ଶତଦଳ ବିଶିଷ୍ଟ ପଦ୍ମ,
୮- ଓଡ଼ିଶାର ଆକାଶରେ, ୯- ସରସ୍ୱତୀ

(୮)

ଆବର୍ଜ୍ଜନାମୟ ଏହୁ ସଂସାର-ଜଞ୍ଜାଳେ
କେବେ ପ୍ରପୀଡ଼ିତ ମୋର ନ ହେଉ ମାନସ,
କଳ୍ପନାର ସୁଖରାଜ୍ୟେ ଦେଖେ କାଳେ କାଳେ
ସ୍ୱର୍ଗୀୟ ସୁଷମା ଆଉ ସ୍ୱର୍ଗୀୟ ରହସ୍ୟ ।

## ଶମ୍ଭୂକର ବାଜପେୟୀ*

କି ଭାଷାରେ ଦେବ, ଆମନ୍ତ୍ରିବି ତବ
ସ୍ୱର୍ଗୀୟ ଆତ୍ମାକୁ ଆଜ ?
ସୁଜ୍ଞାନୀ ଧାର୍ମିକ ଗୋତ୍ର-ପ୍ରବର୍ତ୍ତକ
ହେ ଉତ୍କଳ-ଭରଦ୍ୱାଜ !

ତୁମ ବଂଶୋଦ୍ଭବ ବୋଲି ଗଉରବ
କରନ୍ତି ବିପ୍ର ଅନେକ,
ବର୍ଷ ଶତ ଶତ ହେଲେହେଁ ଅତୀତ
ଅଛି ତୁମ୍ଭ ନାମ ଟେକ ।

ବାଜପେୟ ଯାଗ କରି ମହାଭାଗ
ହେଲେ ନିଜେ ପୂତପ୍ରାଣ,
ସ୍ମୃତି ତ୍ରୟୋଦଶେ ପ୍ରଚାରିଲେ ଦେଶେ
ବେଦ-ବିହିତ-ବିଧାନ ।

ଧର୍ମତତ୍ତ୍ୱେ ରତ ଥିଲେ ହେଁ ସତତ
ସାହିତ୍ୟ-ଶୋଭା-କାନନେ,
ମାନସ ମିଳିନ୍ଦ[୧] ତବ ମକରନ୍ଦ
ଚାଖି ଚଖାଇଲା ଜନେ ।

ରାଜ-ଅନୁଗ୍ରହ ରାଜ୍ୟ-ପ୍ରତିଗ୍ରହ[୨]
କରେ ବ୍ରହ୍ମତେଜ ନାଶ,
ମାନି ରାଜାଦେଶ ତେଣୁ ତେଜି ଦେଶ
କଲ ଚିର କାଶୀବାସ ।

୧- ଭ୍ରମର, ୨-[୨]ରାଜ୍ୟ ଦାନରୂପେ ସ୍ୱୀକାର

ତଥାପି ସ୍ୱଜନ- ମମତା-ବନ୍ଧନ
ହୃଦେ ଥିଲା ନିରନ୍ତର,
ତିରିଶ ବରଷେ ପେଷିଲ ସ୍ୱଦେଶେ
ଯୋଗ୍ୟ ସୁତ ବିଦ୍ୟାଧର ।
ବିସ୍ମୃତି-ତାମସ କରଇ ଗରାସ[୩]
ନର-କୀରତି-ନିଚୟ,
କିନ୍ତୁ ସାଧୁଭାବ ପବିତ୍ର ପ୍ରଭାବ
ପାଏ ନାହିଁ କେବେ ଲୟ ।

ହେ ସମାଜ-ନେତା, ତବ ସ୍ୱାଧୀନତା
ସ୍ୱଦେଶ-ସ୍ୱଧର୍ମ-ପ୍ରୀତି,
ତେବେ କାହିଁ ଆଜ ସେ ଶକ୍ତି, ସେ ତେଜ
କିପାଁ ଏ ଘୋର ଦୁର୍ଗତି ?

ହେ ଉତ୍କଳ ଆଦି- ଋଷି ବ୍ରହ୍ମବାଦୀ,
କର ଏହି ଆଶୀର୍ବାଦ,
ପରକାଶୁ ତବ ପ୍ରଚ୍ଛନ୍ନ ପ୍ରଭାବ
ଘୁଞ୍ଚୁ ଜାତି-ଅବସାଦ ।

*ଶମ୍ଭୂକର ବାଜପେୟୀ କେଶରୀବଂଶୀୟ ନୃତ୍ୟ କେଶରୀଙ୍କ ସମସାମୟିକ । ବୋଧହୁଏ ଏ ମହାତ୍ମା ଉତ୍କଳର ପ୍ରାଚୀନତମ ସ୍ମୃତିକାର । ସେ ଭରଦ୍ୱାଜ ଗୋତ୍ର ସମ୍ଭୂତ ଥିଲେ । ତାହାଙ୍କ ଗୌରବରେ ଉତ୍କଳର ଭରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣମାନେ ଏତେଦୂର ଗୌରବାନ୍ୱିତ ଯେ ସେମାନେ ଆଜିକାଲି 'ଶମ୍ଭୂକର' ମିଶ୍ର ବୋଲି ସାଧାରଣତଃ ପରିଚିତ; ଏବଂ ଏହି ପରିଚୟଦ୍ୱାରା ସେମାନଙ୍କର ଗୋତ୍ର ଓ ଗରିମା ଜଣାପଡ଼େ । ବାଜପେୟାଖ୍ୟ ଯାଗ ଅନୁଷ୍ଠାନ କରି ଶମ୍ଭୂକର ବାଜପେୟୀ ଉପାଧି ଲାଭ କରିଥିଲେ । ସେ ତେରଖଣ୍ଡି ସ୍ମୃତିଶାସ୍ତ୍ର ପ୍ରଣୟନ କରିଥିଲେ, ଯଥା:— ଅହୀନ ପଦ୍ଧତି, ଅଗ୍ନିହୋତ୍ର ହୋମପଦ୍ଧତି, ପ୍ରାୟଶ୍ଚିତ୍ତ ପଦ୍ଧତି, ଅନ୍ୱାରମ୍ଭଣୀୟ ପଦ୍ଧତି, ପ୍ରବାସପଦ୍ଧତି, ଇଷ୍ଟିପଦ୍ଧତି, ଦଶପୌର୍ଣ୍ଣମାସୀଷ୍ଟି, ପଶୁବନ୍ଧନପଦ୍ଧତି, ବୈଶ୍ୱଦେବପଦ୍ଧତି, ବରୁଣପଦ୍ଧତି, ବିଷ୍ଣୁପ୍ରସାଦ ପ୍ରତିଷ୍ଠା ପଦ୍ଧତି, ଶ୍ରାଦ୍ଧ-ପଦ୍ଧତି, ଶୌଚାଧାନ ପଦ୍ଧତି । ଏହା ଛଡ଼ା ତାହାଙ୍କ ପ୍ରଣୀତ ସ୍ମାର୍ତ୍ତରତ୍ନାବଳୀ ପ୍ରଭୃତି କେତେ-ଖଣ୍ଡି ଗ୍ରନ୍ଥ ଦୃଷ୍ଟିଗୋଚର ହୁଏ । ଅନର୍ଘରାଘବ ନାଟକ ଓ ତାହାର ଟୀକା ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ଏହାଙ୍କର ଅନ୍ୟତମ ଅକ୍ଷୟ କୀର୍ତ୍ତି ।

ନୃତ୍ୟ କେଶରୀଙ୍କ ପିତା ନରସିଂହ କେଶରୀ ଏହାଙ୍କୁ ଗ୍ରାମଦାନ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ; କିନ୍ତୁ ପ୍ରତିଗ୍ରହ ପତିତ କାର୍ଯ୍ୟ ବୋଲି ସେ ସେଥିରେ ପ୍ରତିଶ୍ରୁତ ନ ହେବାରୁ ରାଜାଦେଶ ମତେ ତାଙ୍କୁ ଦେଶ ତ୍ୟାଗ କରିବାକୁ ପଡ଼ିଥିଲା, ତହୁଁ ସପରିବାର ଚିରଜୀବନ କାଶୀବାସ କଲେ; କିନ୍ତୁ ୩୦ ବର୍ଷ ପରେ ଆପଣାର ସୁଯୋଗ୍ୟ ପୁତ୍ର

୩- ଗ୍ରାସ/ଧ୍ୱଂସ

ବିଦ୍ୟାଧରଙ୍କୁ ଦେଶ (ଓଡ଼ିଶା)କୁ ପଠାଇଥିଲେ । ବିଦ୍ୟାଧର ମଧ୍ୟ ଅସାଧାରଣ ପଣ୍ଡିତ ଥିଲେ । ଶମ୍ଭୂକର କାଶୀଧାମରେ ଦେହ ତ୍ୟାଗ କରିଥିଲେ ।

## ଭକ୍ତ କବିବର ଶ୍ରୀ ଜଗନ୍ନାଥ ଦାସ

ଉତ୍କଳର ବ୍ୟାସ ଜଗନ୍ନାଥ ଦାସ
ବିଷ୍ଣୁ ଅଂଶେ ଅବତାର,
ଭକତ-ପ୍ରଧାନ ଗୂଢ଼ ଦିବ୍ୟ ଜ୍ଞାନ
କଲ ସ୍ୱଦେଶେ ପ୍ରଚାର ।

ବେଦ-ମହୋଦଧି ବ୍ୟାସ ତପୋନିଧି
ମନ୍ଥି ଯେ ତତ୍ତ୍ୱ ସକଳେ,
ଉଦ୍ଧରି ପୁରାଣେ ନାନା ଉପାଖ୍ୟାନେ
ପ୍ରକାଶି ଥିଲେ ସରଳେ ।

ସଂକ୍ଷିପ୍ତ ସଂସ୍କୃତ ଅମୂଲ୍ୟ ଆଧାରେ
ଥିଲା ସେ ଅମିୟ ରସ,
ସର୍ବେ ଦୁଃଖୀ ଧନୀ ପଣ୍ଡିତ ଅଜ୍ଞାନୀ
ନ ପାଇଲେ ସମ ଅଂଶ ।

ତେଣୁ ବାରସ୍କନ୍ଧ 'ପ୍ରାକୃତ ପ୍ରବନ୍ଧ'[୧]—
ଗୀତେ କଲ ପରକାଶ,
ଥିବାଯାଏ ଭାଷା ଗାଇବ ଓଡ଼ିଶା
"କହେ (କହଇ) ଜଗନ୍ନାଥ ଦାସ ।"

ନୃପତି-ନବରେ କୃଷକ-କୁଟୀରେ
ଆଜି ଉଠେ ତୁମ୍ଭ ନାମ,
ଦିନ ଅବସାନେ ଶ୍ରମକ୍ଳାନ୍ତ ଜନେ
ଦେଉଛ ଶାନ୍ତି ଆରାମ ।

ବ୍ରାହ୍ମଣ ଚଣ୍ଡାଳ ପ୍ରେମେ ଏକମେଳ
ଧର୍ମଭାବେ ହୋଇ ମତ୍ତ,
ବିପଦେ ସମ୍ପଦେ ଗାଆନ୍ତି ଆନନ୍ଦେ

୧- ଓଡ଼ିଆ ଭାଷାରେ ଲିଖିତ ଭାଗବତ ।

ସ୍ଥାନେ ସ୍ଥାନେ 'ଭାଗବତ' ।
ସୁକବି ପ୍ରଶଂସା ପାଇବାକୁ ଆଶା
ମନରେ ନ ଥିଲ ପୋଷି,
ତଥାପି ଉତ୍କଳ– ଭାବୀ କବିକୁଳ
ହେବେ ତୁମ୍ଭ ନାମ ଘୋଷି ।
ତୁମ୍ଭ ସମାଧିରୁ ଆହେ କବିଗୁରୁ !
କେତେ ଦାର୍ଶନିକ କବି
ଜନମିଣ କାଳେ ଉତ୍କଳ-ସାହିତ୍ୟେ
ଦେବେ ନବ ନବ ଛବି ।
କେତେ ଧର୍ମବୀର ଦେବେ ନିଜ ଶିର
ସ୍ୱଦେଶ ସ୍ୱଧର୍ମ ହିତେ,
ଅସଂଖ୍ୟ ନାସ୍ତିକ ହୋଇବେ ପ୍ରେମିକ
ତୁମ୍ଭ ମଧୁମୟ ଗୀତେ ।

## ବଳରାମ ଦାସ

କି ମଧୁର ନାମ ଭକ୍ତ ବଳରାମ
ଉତ୍କଳବାସୀ-ଶ୍ରବଣେ,
ସାହିତ୍ୟ-ସଂସାରେ କଠୋର ସାଧକ
କାହିଁ ତୁମ୍ଭ ପରି ଜଣେ ?

ବାଲମୀକି ବ୍ୟାସ ଅନ୍ତର-ଉଚ୍ଛ୍ୱାସ
ଯମୁନା-ଜାହ୍ନବୀ ପରି
ପ୍ରୟାଗ ପରାଏ ଏକାଧାରେ କିଏ
ପାରେ ତୁମ୍ଭ ବିନେ ଧରି ।

ଗୀତା ଗୂଢ଼ ବାଣୀ ଲୋକରେ ବଖାଣି
ପ୍ରଚାରିଲ ତତ୍ତ୍ୱଜ୍ଞାନ,
ଧର୍ମ ସାଧାରଣ କରିବା କାରଣ
କଲ ଆନ ଗୀତାମାନ ।

"କମଳ ଲୋଚନ"– କୋମଳ ବଚନ
ଶିଶୁମୁଖେ ଜିଣେ ବୀଣା,

ବୃଦ୍ଧ ଯୁବା ଯୋଗୀ ଭକ୍ତ ଅନୁରାଗୀ
ସର୍ବେ ତବ ପଦେ କିଣା ।

ଦୁର୍ଲଭ ସଂସ୍କୃତ- ଭାଣ୍ଡେ ଯେ ଅମୃତ
ରଖିଗଲେ ବାଲମୀକି,
କେବଳ କୋବିଦ ପାଇଲେ ଆସ୍ୱାଦ
ମିଳିଲା ନାହିଁ ସଭିଙ୍କି ।

ପତିତ ପାଷଣ୍ଡ ମୂଢ଼ ମୂର୍ଖ ଗଣ୍ଡ
ତୋଷିବାକୁ ମନେ ଭାଳି,
ମୃତ୍ତିକା ଆଧାରେ ଦେଲ ଦ୍ୱାରେ ଦ୍ୱାରେ
'ରାମାୟଣ'ସୁଧା ଢାଳି ।

ହୁଏ ମୋ ପ୍ରତୀତି ନୀଳାଚଳପତି
ଭକତ-ବନ୍ଧୁ ଠାକୁର
ଉତ୍କଳ-କଲ୍ୟାଣେ ଯୁଦ୍ଧ-ଅଭିଯାନେ
ଜିଣିଲେ ଯେ କାଞ୍ଚିପୁର ।

କବି ରୂପେ ପୁଣି ଅବତରି ବେନି **
ଜଗନ୍ନାଥ ବଳରାମ,
ଧର୍ମ-କର୍ମ-ଦୀକ୍ଷା ସାହିତ୍ୟ ସୁଶିକ୍ଷା
ପ୍ରଚାରି ରଖିଲ ନାମ ।

ଏବେ ନୀଳାଚଳେ ରହିଛ ନିଶ୍ଚଳେ
ଦେଖି ଏ ଦଶା କିପରି ?
ଛାଡ଼ିଣ ଆସ୍ଥାନ ଆସ ଆର୍ତ୍ତତ୍ରାଣ !
ଚଳାଅ ଉତ୍କଳ-ତରୀ ।

* ନାମରତ୍ନ ଗୀତା, ଉଦ୍ଧବ ଗୀତା, ଗୁପ୍ତ ଗୀତା ଇତ୍ୟାଦି ।

** ଜଗନ୍ନାଥ ଦାସ ଓ ବଳରାମ ଦାସ ପଞ୍ଚସଖାରୁ ଯୋଡ଼ିଏ ସଖା । ଯେପରି ଚୈତନ୍ୟଙ୍କ ଶିଷ୍ୟମାନେ ଚୈତନ୍ୟଙ୍କୁ ଓ ରାମକୃଷ୍ଣ ପରମହଂସଙ୍କ ଶିଷ୍ୟମାନେ ପରମହଂସଙ୍କୁ ଅବତାର ବୋଲି ବିଶ୍ୱାସ କରନ୍ତି, ପଞ୍ଚସଖାଙ୍କର ସମ୍ପ୍ରଦାୟମାନେ ସେହିପରି ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତଙ୍କୁ ଅବତାର ବୋଲି ମାନନ୍ତି ।

# ସାରଳା ଦାସ

ତପସ୍ୱୀ ସତ୍ତମ ଭକ୍ତ ଅନୁପମ
ହେ ଭାରତୀ ଜ୍ୟେଷ୍ଠ ସୁତ,
ତବ ପରସାଦେ ସାହିତ୍ୟ-ସମ୍ପଦେ
ଆମ୍ଭେ ସର୍ବେ କୃତକୃତ୍ୟ ।

ଭାଷା ଆଦି-କାଳେ ଅନ୍ଧାର ଉତ୍କଳେ
ସମୁଜ୍ଜ୍ୱଳ ନବ-ରବି,
ପଣ୍ଡିତେ ପାଷଣ୍ଡେ ହାଟେ ବାଟେ ଦାଣ୍ଡେ
ଦେଖାଇଲ ଦିବ୍ୟ ଛବି ।

ମହାଭାରତର ଜଟିଳ ବିଚାର
ଧର୍ମନୀତି ରାଜନୀତି,
ଦୈବ ବଳେ କଲ ସୁନ୍ଦର ସରଳ
ଶିଶୁକଣ୍ଠ-ଗେୟ ଗୀତି ।

ଓଜ ତେଜ ବଳ ଶକତି ଅତୁଳ
ପୂରିଛି ପଦ୍ୟ ପ୍ରବନ୍ଧେ,
ଭାବଗାମୀ ଭାଷା କଲ ମହାଯଶା
ବାନ୍ଧି ନୋହି ଛନ୍ଦୋବନ୍ଧେ ।

ତୁମ୍ଭ ବୀରବାଣୀ ସଂଗ୍ରାମ-କାହାଣୀ
ଶ୍ରବଣେ ଆଜି ଉତ୍କଳେ,
ଚିର ପରାଧୀନ କ୍ଷୀଣ ଜଡ଼ ପ୍ରାଣ
ଜାଗେ କ୍ଷଣେ ନବବଳେ ।
ତୁମ୍ଭ ଗୀତେ ସିନା ଶକ୍ତିଶାଳୀ ସେନା
ହୋଇଣ କୃଷକପନ୍ତି,
ଜିଣି ଶତ୍ରୁଗଣେ ଉଡ଼ାଇଲେ ରଣେ
ଉତ୍କଳର ବୈଜୟନ୍ତୀ ।

ଉଠ ଶୂଦ୍ରମୁନି ! କେତେକାଳ ତୁନି
ହୋଇ ରହିଥିବ ଆଉ,
ଭାରତ ତଇଳେ ନବ ଜ୍ଞାନ-ଦୀପ
ଜଳୁ ଥରେ ଦାଉ ଦାଉ ।

ଉଠୁ ଘରେ ଘରେ ଅକୁଣ୍ଠିତ ସ୍ୱରେ
ସ୍ୱାଧୀନ ସଙ୍ଗୀତ-ଧ୍ୱନି,
ଗାଆନ୍ତୁ ଉତ୍କଳେ ବୃଦ୍ଧ ଯୁବା ବାଳେ
"ଜୟ ଭାରତ ଜନନୀ" ।

## ଅନଙ୍ଗଭୀମ ଦେବ

ଭୀମ ପରାକ୍ରମ ହେ ଅନଙ୍ଗଭୀମ !
କିପରି ଯିବି ପରତେ
ରାଜ-ସିଂହାସନେ ରାଜିଥିଲ ଦିନେ
ବିଶାଳ ଉତ୍କଳେ ସତେ ?

ସତେ କିହେ ଛାମୁ ଅଗଣିତ ଚମୂ[1]
ପଲକେ ହୋଇଣ ଠୁଳ
ବୀର ଦର୍ପଭରେ ଅରାତି-ଅନ୍ତରେ
କରୁଥିଲ ଶଙ୍କାକୁଳ ?

ଏ କି ସେ ଉତ୍କଳ ଯାର ଉର୍ଜସ୍ୱଳ
ବିକ୍ରମୀ ବିରାଟ ଥାଟ,
ଜାତି ଗଉରବେ ଜିଣିଲେ ଆହବେ
ଦୂର ଗଉଡ଼[2] କର୍ଣ୍ଣାଟ ?

ଥିଲା କି ହେ ଦିନ ଯେବେ ପ୍ରଜାଗଣ
ପିତୃତୁଲ୍ୟ ସୁଶାସନେ,
ଧନ ଜ୍ଞାନ ବଳ ଅର୍ପିଲେ ସକଳ
ସ୍ୱଧର୍ମ ଶ୍ରେୟଃ ସାଧନେ ।

ମିଥ୍ୟା ବୋଲି ଅବା କେମନ୍ତେ ବୋଲିବା
ଦେଖୁଁ ଏବେ ନିଜ ନେତ୍ରେ,
ଧରି ଦର୍ପ ଦମ୍ଭ ତୁମ୍ଭ କୀର୍ତ୍ତି-ସ୍ତମ୍ଭ
ରାଜେ ନୀଳାଚଳ କ୍ଷେତ୍ରେ ।

୧- ସୈନ୍ୟଦଳ, ୨- ଗୌଡ଼ ଦେଶ/ବଙ୍ଗ

ନୀରବ ତାଡ଼ନା ପବିତ୍ର ପ୍ରେରଣା
ଦିଏ ନିଷ୍ପନ୍ଦ ଉତ୍କଳେ,
ଅତୀତ ବିଭୂତି- ଗଉରବ ସ୍ମୃତି
ଜଗାଏ ହୃଦେ ଉଜ୍ଜ୍ୱଳେ ।

ସ୍ମୃତି ବଳେ କୃତୀ ହୋଇ କେତେ ଜାତି
ଜଗତେ ଟେକନ୍ତି ମଥା,
କିପାଁ ସେ ବିଧାନ ପୁରାଣ ପ୍ରଧାନ
ଉତ୍କଳ ପକ୍ଷେ ଅନ୍ୟଥା ?

ଉଠ ହେ ଉତ୍କଳୀ ! ଜଡ଼ତା-ଶିକୁଳି
ଫିଙ୍ଗିଣ ଦୂରେ ବହନ,
ଅମର ଭୁବନୁଁ ଶ୍ରୀ ଅନଙ୍ଗଦେବ
କରୁଛନ୍ତି ଆମନ୍ତ୍ରଣ ।

କର୍ଣ୍ଣ ଡେରି ଶୁଣ ସେ ଦିବ୍ୟ ଆହ୍ୱାନ
ସ୍ମର ପୂର୍ବ ଯଶ ବାରେ,
ପୂର୍ବ ବଂଶ ନାମେ ଶ୍ରୀ ଅନଙ୍ଗଭୀମେ
ପୂଜ ଶୌର୍ଯ୍ୟ ଉପହାରେ ।

## ଶ୍ରୀପୁରୁଷୋତ୍ତମ ଦେବ

ଅମିତ ବିକ୍ରମ ଶ୍ରୀପୁରୁଷୋତ୍ତମ
''କ୍ଷାତ୍ରକୁଳ ଧୂମକେତୁ''
ତବ ନାମ ଆଜ ଉତ୍କଳ ସମାଜ
ଜାତୀୟ ଗୌରବ ହେତୁ ।
ତୁମ୍ଭ ଯଶରାଶି ସାକ୍ଷୀରୂପେ ବସି
ବକୁଳ ବନ-ବିହାରୀ
କରନ୍ତି ପ୍ରକାଶ ପୂର୍ବ ଇତିହାସ
ସତ୍ୟବାଦୀ ବଂଶୀଧାରୀ ।
ଯୁଦ୍ଧ-ଅଭିଯାନ କରେ କବି ଗାନ
ହେ ପ୍ରତାପୀ ଶତ୍ରୁଜେତା !

ତବ କାଞ୍ଚି ଜୟ ରଙ୍ଗେ ଅଭିନୟ
କରେ ଏବେ ଅଭିନେତା ।*
ଗାଏ ଜନଶ୍ରୁତି ଅତୁଳ ବିଭୂତି
ଅନୁପମ ଭକ୍ତି ତବ,
ଯାର ବଳେ ନିଜେ ହେଲେ ରଣେ ବିଜେ
ସୈନିକ ରୂପେ କେଶବ* ।

ସତେ କି ନୃପଣି ! ଉତ୍କଳ-ଧରଣୀ
ଥିଲା ଏଡ଼େ ତେଜସ୍ୱିନୀ,
ସତ୍ୟ କି ସକଳ ଅତୀତ ଉଜ୍ଜ୍ୱଳ
ଓଡ଼ିଆ ଗର୍ବ କାହାଣୀ ?
ଏକ ଛତ୍ରତଳେ ଏକତାର ବଳେ
ଜିଣିଲା ଦିନେ ଯେ ଦେଶ,
ସ୍ୱାର୍ଥ ଅଭିମାନେ ଆଜି ତା ସନ୍ତାନେ
କରନ୍ତି ସୋଦର-ଦ୍ୱେଷ** ।

ଦେଖି ଏ ଦୁର୍ଗତି ହୁଏ କି ପ୍ରତୀତି
ଉଡ଼ାଇ ବିଜୟ-ଧ୍ୱଜା,
ଉତ୍କଳ-କୁମରେ ଦେଶ ଦେଶାନ୍ତରେ
କମ୍ପାଇଲେ ଶତ୍ରୁ-ମଜ୍ଜା ?

କୃଷ୍ଣା ଗୋଦାବରୀ ଉତ୍ତୁଙ୍ଗ ଲହରୀ
ଉଚ୍ଛୁଳି ଥିଲା ଯେ ନାଦେ,
ସେ ଶଙ୍ଖ-ମହୁରୀ ଶିଙ୍ଗା ତୂରୀ ଭେରୀ
ନିଃଶବ୍ଦ କି ଅବସାଦେ ?

ନ ରହିବ କେହି ଚିର ଦୁଃଖ ସହି
ବିଧିର ସୃଷ୍ଟି-ବିଧାନ,
ବାଜୁ ତେବେ ଢକ୍କା ତୁଟୁ ହୃଦୁଁ ଦକା
ଜାଗୁ ଉତ୍କଳ-ପରାଣ ।

* ବକୁଳବନ ସୁନ୍ଦର ସତ୍ୟବାଦୀଠାରେ ଅଧିଷ୍ଠିତ ସାକ୍ଷୀଗୋପାଳ କାଞ୍ଚିଜୟ ପରେ ସେଠାରୁ ଆନୀତ ହୋଇଥିଲେ ବୋଲି ଇତିହାସରେ ପ୍ରସିଦ୍ଧ ।

** କବିବର ରାଧାନାଥ ରାୟଙ୍କ 'ଚିଲିକା'ରେ କାଞ୍ଚିଯାତ୍ରାର କଥା ବର୍ଣ୍ଣିତ ଅଛି । ପଣ୍ଡିତ ଶ୍ରୀ ବିଶ୍ୱନାଥ ମହାପାତ୍ରଙ୍କ ବିରଚିତ ସଂସ୍କୃତ କାଞ୍ଚିବିଜୟ କାବ୍ୟ ଅପ୍ରକାଶିତ ।

*** ରାମଶଙ୍କର ରାୟଙ୍କ 'କାଞ୍ଚିକାବେରୀ' ନାଟକ ଉତ୍କଳରେ ସୁପାଠ୍ୟ ।

✦ ଧଳାଘୋଡ଼ା କଳାଘୋଡ଼ାରେ ବଳରାମ ଜଗନ୍ନାଥ ବେନିଭାଇ କାଞ୍ଚିଯୁଦ୍ଧକୁ ଯାଇଥିବା କିମ୍ବଦନ୍ତୀ ଅଦ୍ୟାପି ଉତ୍କଳରେ ଶୁଣାଯାଏ ।

✦✦ ଲାଟସଭାକୁ ଗତଥର ସଦସ୍ୟ ନିର୍ବାଚନ ରହସ୍ୟ ଏଥିରେ ଯଥେଷ୍ଟ ପ୍ରମାଣ ।

## ଉପଇନ୍ଦ୍ର ଭଞ୍ଜ

କବିକୁଳ କଞ୍ଜ[୧] ଉପଇନ୍ଦ୍ର ଭଞ୍ଜ
ନମେ ତବ ପଦତଳେ,
କାବ୍ୟ-ସୁମାଧୁରୀ ଭାଷା-ସୁଚାତୁରୀ
ପରକାଶିଲ ଉତ୍କଳେ ।
ଜନ୍ମି ରାଜକୁଳେ ବଇଭବ କୋଳେ
ଅତୁଳ ସୁଖ-ସଦନେ,
ତେଜି ସେ ସମ୍ଭୋଗ ଆଚରିଲ ଯୋଗ
ବୀଣାପାଣି ଆରାଧନେ ।
ଅତି ମନୋହର ଚାରୁ ଚମତ୍କାର
ଶତ ମାନସୀ ପ୍ରତିମା,
କାବ୍ୟ ଚିତ୍ରପଟେ ଉଜ୍ଜ୍ୱଳେ ପ୍ରକଟେ
ତୁମ୍ଭ ପ୍ରତିଭା ଗରିମା ।
କଳ୍ପନାର କାଚେ ତବ ହୃଦ ଛାଞ୍ଚେ
ନବ ବର୍ଣ୍ଣେ ପ୍ରତିଫଳି,
ନବ ଅଳଙ୍କାରେ ଶୋଭେ କି ରୁଚିରେ
ପୁରାଣ ଘଟଣାବଳୀ ।
ହେ କବିଶେଖର ଭଞ୍ଜ ବୀରବର !
କୋଟି ଉତ୍କଳ-ସନ୍ତାନେ,
ଆଜି ନବଯୁଗେ ଧନ୍ୟ ଧନ୍ୟ ବାଦ
କରୁଛନ୍ତି ତୁମ୍ଭ ନାମେ ।

୧- ବ୍ରହ୍ମା

ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।

କାଳ ବଳିଆର ଆଣଇ ସଂସ୍କାର
ନବ ରୁଚି ନବଜ୍ଞାନ,
କିନ୍ତୁ 'ବୈଦେହୀଶ- ବିଳାସ' ପାଇବ
କାଳେ କାଳେ ଉଚ୍ଚ ସ୍ଥାନ ।

ସୃଜିଣ ସ୍ୱହସ୍ତେ ଓଡ଼ିଆଙ୍କ ଭାଷା
ଗଢ଼ିଛ ଓଡ଼ିଆ ଜାତି,
ତବ ଜନ୍ମସ୍ଥାନ ଓଡ଼ିଶାରୁ ଆନ
ଭାବିଲେ ବିଦାରେ ଛାତି ।

ତଥାପି ଅନେକ ସାହିତ୍ୟ-ସେବକ
ଭାବୀ ଉତ୍କଳ ନନ୍ଦନ,
ପୁଣ୍ୟ ତୀର୍ଥମଣି ଘୁମୁସର ପଦେ
କରିବେ ନିତି ବନ୍ଦନ ।

## ସାମନ୍ତ ଚନ୍ଦ୍ରଶେଖର*

ଉତ୍କଳ-ଭାସ୍କର ହେ ଚନ୍ଦ୍ରଶେଖର
ଋଷିପ୍ରଭ ମହାମତି,
'ସିଦ୍ଧାନ୍ତ-ଦର୍ପଣେ' ଦେଖି ଦେଖାଇଲ
ଚନ୍ଦ୍ର ତାରା ଗ୍ରହ ଗତି ।

ପାର୍ଥିବ ଶରୀରେ ରହିଛ ମହୀରେ
କିନ୍ତୁ ଏଥି ନାହିଁ ଦୃଷ୍ଟି,
ଦିବ୍ୟସୁଖେ ନିତି ନିରେଖ ବିଧାତା
ବିଚିତ୍ର ସ୍ୱରଗ ସୃଷ୍ଟି ।

ଯଶଃ ପ୍ରତି ଆଶା ଆହେ ମହାଯଶା
ନ ପୋଷ ହୃଦୟେ କ୍ଷଣେ,
ସତ୍ୟ ଲାଗି ସତ୍ୟ ନିଃସ୍ୱାର୍ଥେ ଖୋଜିଲ
ଆଜୀବନ ତ୍ରିଭୁବନେ ।
ପଡ଼ା ଖଣ୍ଡ[୧] ମଧ୍ୟେ ଅଲକ୍ଷିତେ ଦିନ
ଯାପିଲ ଧରଣୀ ହିତେ,
ପଡ଼ା ଖଣ୍ଡେ ସୁଦ୍ଧା ଉପହାର ଦେବା
କେହି ନ ବିଚାରେ ଚିତ୍ତେ !
ଶୁକ୍ତିକା[୨] ଅନ୍ତରେ ମୌକ୍ତିକ[୩] ପରାଏ
ଉତ୍କଳେ ତୁମ୍ଭ ସମ୍ଭବ,
ଅଜ୍ଞାନ ଉତ୍କଳ ନ ଜାଣିଲା ଲବେ
ତୁମ୍ଭ ପ୍ରତିଭା-ବିଭବ ।
ସ୍ୱଦେଶର ଘୋର- ଜଡ଼ତା-ଅନ୍ଧାର
ରୋଧିଲା ପ୍ରଭା-ବିକାଶ,
ତଥାପି ବିଦେଶେ ଚିହ୍ନରା ଗ୍ରାହକେ
ଲଭିଲେ କ୍ଷୀଣ ଆଭାସ ।
ନିଜ ବୁଦ୍ଧିବଳେ ବିଜ୍ଞାନ ଆଲୋଡ଼ି
ପାଇଲ ସୁଦିବ୍ୟ ତତ୍ତ୍ୱ,
ଧନ୍ୟ ଯୋଗେଶ[୪] ! ରହୁ ତାଙ୍କ ଯଶଃ
ବୁଝିଲେ ତୁମ୍ଭ ମହତ୍ତ୍ୱ ।
ଅରଣ୍ୟ-ନିବାସୀ ଜ୍ଞାନ ଅଭିଳାଷୀ
ମୁନି ସମାନ ସରଳ,
କେଉଁ ମନ୍ଦ ଗ୍ରହ ଆବୋରିଛି କହ
ଉତ୍କଳର କର୍ମସ୍ଥଳ ?
'ସିଦ୍ଧାନ୍ତ-ଦର୍ପଣେ' ସ୍ୱଦେଶର କୋଷ୍ଠୀ
ଦେଖି କରି ଏକ ଲୟ,
କହ କହ କେବେ ଦୁର୍ଦ୍ଦଶା ଏହାର
ପାଇବ କି ସତେ କ୍ଷୟ ?

* ସାମନ୍ତ ଚନ୍ଦ୍ରଶେଖର ଜୀବିତ ଥିବା ସମୟରେ ଲିଖିତ ।

---

୧- ଖଣ୍ଡପଡ଼ାର ଏକ ଛୋଟ ଗ୍ରାମରେ, ୨- ଶାମୁକା, ୩- ମୁକ୍ତା, ୪- ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ।

# ଭାର୍ଗବୀ ପ୍ରତି

ତେଜି ଅଶାନ୍ତି ନଗର ପାଶ
ଚାରୁ ପଲ୍ଲି-ପଥେ କଲୁ ବାସ
ବାର ବାଙ୍କ ଭ୍ରମି ହେଲୁ ପଥଶ୍ରମୀ
ଶେଷେ ସିନ୍ଧୁ ସଙ୍ଗେ ଗଲା ପ୍ରାସ୍, ଲୋ ତଟିନି !୧।
କାହିଁ କୋମଳ ଶ୍ୟାମଳ ଘାସ
କାହିଁ କୃଷକେ କରନ୍ତି ଚାଷ
ତୋର ବେନି ତଟେ କାହିଁ ଅବା ଚାଟେ
ସୁଖେ ବୋଲନ୍ତି ସରଳ ରାସ, ଲୋ ତଟିନି !୨।
ପଲ୍ଲୀ ପ୍ରାକୃତ ସରଳ କାନ୍ତି
ଉଦବେଗହୀନ ଦିବ୍ୟ ଶାନ୍ତି
ତୋର ଜଳଧାର– ଯୋଗେ ସୁଖତର
ହରେ ସହଜେ ସକଳ ଶ୍ରାନ୍ତି, ଲୋ ତଟିନି !୩।
ନାନାବିଧ ତରୁ-ଗୁଳ୍ମ-ଲତା
ଫଳ-ଫୁଲ-ପଲ୍ଲବେ ଆନତା
ଆବୋରି ତୋ ନୀରେ ରାଜେ ବେନି ତୀରେ
ପଲ୍ଲୀ ସତେ କି ଟେକିଛି ଛତା, ଲୋ ତଟିନି !୪।
ଦେଇ ଆପଣା ଶୁଦ୍ଧ ଜୀବନ
ତୋଷ କେତେ କେତେ ଜୀବଗଣ
ପର ହିତେ ଏକା ନିରନ୍ତର ବିକା
ଧନ୍ୟ ଧନ୍ୟ ତୋ ମହତପଣ, ଲୋ ତଟିନି !୫।
ବର୍ଣ୍ଣିବାକୁ ତୋର ଗୁଣ ଗତି
ଛାର ମୋର କି ଅଛି ଶକତି
କିନ୍ତୁ ସ୍ରୋତସ୍ୱତି ! ସଦା ତୋହ ପ୍ରତି
ଥାଏ ମୋ ମନେ ସ୍ନେହ-ଭକତି, ଲୋ ତଟିନି !୬।
ଦେଖି ନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ

ହୋଇଣ ସଦୟ ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ ଜୀବନ, ଲୋ ତଟିନି !୭।

ଚିନ୍ତାବିହୀନ ବାଲ୍ୟ ସମୟେ
ବହୁ ଖେଳିଅଛି ତୋ ହୃଦୟେ
ମୋର କେତେ ଅଳି ଅଛୁ ତୁ ସମ୍ଭାଳି
ମନେ ଥିବ ଜୀବ ଯିବାଯାଏ, ଲୋ ତଟିନି !୮।

ମୋର ପିତୃ-ପିତାମହଗଣ
କରି ତୋ ନୀରେ ସ୍ନାନ-ତର୍ପଣ
ଲକ୍ଷ୍ମଣ-ବନ୍ଦିତା ଯାଗେଶ୍ୱରୀ ମାତାଂ
ପଦେ ପୂଜିଥିଲେ ଅନୁକ୍ଷଣ, ଲୋ ତଟିନି !୯।

ସୁକୋମଳ ବାଲି-ଶେଯେ ଶେଷେ
ବିଶ୍ରାମିଲେ ତୋ ପୁଳିନ ଦେଶେ
ପାପତାପ-ନାଶୀ ତୋର ବାରିରାଶି
ପୂତ କରେ ପ୍ରତି ଗ୍ରୀଷ୍ମେ ଶେଷେ, ଲୋ ତଟିନି !୧୦।

ଆଜି ତୋ ପୂଜ୍ୟ ପ୍ରିୟ ଆକୃତି
ଦେଖି ଚିତ୍ତେ କେତେ ପୂର୍ବସ୍ମୃତି
ନବଭାବ ଧରି ଉଠି ଏହିପରି
ଅତି ଉଚ୍ଛନ୍ନ କରେ ମୋ ଧୃତି[୨], ଲୋ ତଟିନି !୧୧।

ରଙ୍ଗକରେ[୩] ଅସ୍ତଶିଖୁଁ ହରି[୪]
ପରଶନ୍ତେ ତୋ ବକ୍ଷେ ଲହରୀ
ତୋ ଶୈବାଳଦଳ ଏବେ କି ମଞ୍ଜୁଳ
ହେମ ପ୍ରବାଳ-ବଲ୍ଲରୀ ସରି, ଲୋ ତଟିନି !୧୨।

ଦେଖି ଏହା ମୋର ହୃଦ-ସରିତ
ଆଶା-ସମୀରେ ତରଙ୍ଗାୟିତ
ବିବିଧ ବରଣ କଳ୍ପନା କିରଣ
ସୃଜେ ତହିଁ ଦିବ୍ୟ ଚାରୁଚିତ୍ର, ଲୋ ତଟିନି !୧୩।

କେତେ ରୁଚିର ସୁଖ ସ୍ୱପନ

---

୨- ଧୈର୍ଯ୍ୟ, ୩- ରଙ୍ଗୀନ କିରଣ/ଲାଲ କିରଣ, ୪- ସୂର୍ଯ୍ୟ

ବିଲୋକଇ ମୋ ମନ-ନୟନ
ସାମାନ୍ୟ ଏ ଭବ ଦୂଷିତ ବିଭବ
କରେ ନାହିଁ ମୁଁ ତିଳେ ଗଣନ, ଲୋ ତଟିନି ! ୧୪।

ତେଣୁ ତୋ ପଦେ କରେଁ ବିନତି
ଜୀବ ଥିବାଯାଏ ସ୍ରୋତସ୍ୱତି !
ଭବ-ଦୁଃଖନାଶୀ ଭାବ ରାଶି ରାଶି
ଚିତ୍ତେ ଜନ୍ମାଇବୁ ଏହି ମତି, ଲୋ ତଟିନି ! ୧୫।

ପିଣ୍ଡ ପଡୁ ତୋ ସିକତା-ବାସେ*
ଯାଗେଶ୍ୱରୀ ଜନନୀ ସକାଶେ
ପୁନ୍ନାଗ ବକୁଳ ନାନା ଜାତି ଫୁଲ
ଝଡ଼ି ପଡୁଥାଉ ଚଉପାଶେ, ଲୋ ତଟିନି ! ୧୬।

ଅବଶେଷେ ମୋ ଜୀବନ-ନଦୀ
ମିଶି ତୋ ସଙ୍ଗତେ ନିରବଧି
ଲଭି ଚିର ଶାନ୍ତି ହରୁ ସର୍ବକ୍ଳାନ୍ତି
ଭେଟୁ ଅତଳ କାଳ-ଜଳଧି; ଲୋ ତଟିନି ! ୧୭।

* ଭାର୍ଗବୀକୂଳରେ ଯାଗେଶ୍ୱରୀ ଦେବୀଙ୍କ ମନ୍ଦିର ଅଛି । ପ୍ରବାଦ ଅଛି, ଦଣ୍ଡକାରଣ୍ୟରେ ଭ୍ରମଣ କଲାବେଳେ ଲକ୍ଷ୍ମଣ ଏହାଙ୍କୁ ପୂଜାକରିଥିଲେ ।

## ଖଣ୍ଡଗିରି ଶିଖରେ

ଏହିକି ସେ ଖଣ୍ଡଗିରି ଯା ଶୋଭାସଙ୍କୁଳ,
ଏହିକି ସେ ଖଣ୍ଡଗିରି ଯାର ଫଳ ଫୁଲ,
ଏହିକି ସେ ଖଣ୍ଡଗିରି ଯାର ବିଜନତା,
ଏହିକି ସେ ଖଣ୍ଡଗିରି ଯାର ତରୁଲତା,
ବିମୋହିଲା ପୂର୍ବେ ବୌଦ୍ଧ ତାପସ-ମାନସ
ଶୋଭଇ ଶରୀରେ ଯାର ଏବେ ବୌଦ୍ଧ ଯଶ ।

୫- ବାଲୁକା-ଶଯ୍ୟା ।

ବୌଦ୍ଧ-ମନ୍ତ୍ରାବଳି ଆଜି ଅମର ଅକ୍ଷରେ,
ଅଶୋକ ଆଦେଶେ ରାଜେ ଯା ଶିଳା-ବକ୍ଷରେ ।
କାହାନ୍ତି ସେ ଯୋଗିବୃନ୍ଦ କାହାନ୍ତି ଅଶୋକ ?
କାହା ହୃଦ ଦେଖି ଏହା ନ କରିବ ଶୋକ ?
'ଅହିଂସା ପରମଧର୍ମ' ଏ ମହା ମନ୍ତର,
ଗମ୍ଭୀର ଶବଦେ ଆଉ ନ ତୋଷେ ଅନ୍ତର
ଶୂନ୍ୟ ଗୁମ୍ଫା ଅଭ୍ୟନ୍ତରେ ପଶିଣ ପବନ,
ମନ୍ତ୍ରନାଦ ସ୍ଥାନେ କରେ ସନ ସନ ସ୍ୱନ ।
ଅହୋ ବୃଦ୍ଧ ଖଣ୍ଡଗିରି ପୁରାଣ-ପ୍ରବୀଣ !
ଦେଖିଅଛ ଉତ୍କଳର କେତେ ଶୁଭଦିନ ।
ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା, ବିଭବ,
ସାହସ, ବିକ୍ରମ, ଧୈର୍ଯ୍ୟ, ଜାତୀୟ ଗରବ,
ଉତ୍କଳର କେତେ କେତେ ଗୌରବ-କାହାଣୀ,
ଅତୀତ ଘଟଣା ଦେଖି ସବୁ ଅଛ ଜାଣି ।
ଏହି ଯେ ସମ୍ମୁଖେ ଶୋଭେ ବିରାଟ ମନ୍ଦିର
ଅନ୍ତରୀକ୍ଷ ମାପିବାକୁ ଟେକିଅଛି ଶିର ।
କାଳବଳେ ହୋଇଅଛି ବିବର୍ଣ୍ଣ ଶରୀର
ତଥାପି ସ୍ଥବିର ତନୁ ଗମ୍ଭୀର ରୁଚିର ।
ଚଉପାଶେ ଦିଶେ କେତେ ଦେବାଳୟଚୟ
କାଳଗର୍ଭେ କେତେ ପୁଣି ଭଜିଲେଣି ଲୟ ।
କି ଅସୀମ ଶକ୍ତି କେତେ ବିପୁଳ ବିଭବେ,
କେତେ ଧର୍ମ ଅନୁରାଗେ ଗଢ଼ା ଏ ସରବେ ।
ବେନି ମହାଧର୍ମ ଏଥି ସାମ୍ୟ ମୈତ୍ରୀ ଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ କିପାଁ ଦ୍ୱେଷ ବାଦ ଅହଙ୍କାର,
ଅତୀତ ଉତ୍କଳ ଆହା କି ମହା ଉଦାର !
ଧନ୍ୟ ଲଲାଟେନ୍ଦୁ ! ଧନ୍ୟ କେଶରୀ-ପୁଙ୍ଗବ !
ଉତ୍କଳର ପୁଣ୍ୟଶ୍ଳୋକ ଅମର-ଗୌରବ,
ଶୌର୍ଯ୍ୟ, ବୀର୍ଯ୍ୟ, କଳା, କାବ୍ୟ, ଧନ, ଜ୍ଞାନ, ମାନ,
ଥିଲା ଯାଙ୍କ ସୁଶାସନ ପବିତ୍ର ବିଧାନ ।

କହି ତାଙ୍କ କଥା ତାଙ୍କ ରାଜ୍ୟ ସମାଚାର,
ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।

(ଅପୂର୍ଣ୍ଣ)

## କଟକର ଶିଳାସେତୁ

ସୁଦୃଢ଼ ସୁନ୍ଦର ଆରେ ଶିଳାସେତୁ,
ରହିଛି କଟକ ନଗର ତୋ ହେତୁ ।
ପ୍ରକୃତି-ପ୍ରଭାବେ ଦେଖାଉ ଭ୍ରୂକୁଟି,
କାଳବଳେ ଅଙ୍ଗ ଯାଇ ନାହିଁ ତୁଟି ।
ତରଙ୍ଗ-ପ୍ରହାର ସହୁ ଅନୁକ୍ଷଣେ,
ଶ୍ରମ ହରୁ ନଦୀ ଶୀତଳ ପବନେ ।
ଉଭା ହୋଇଅଛୁ ସୁଗମ୍ଭୀର ଦମ୍ଭେ,
ରାଜେ ବୃଦ୍ଧ ବପୁ ଯେସନ ପ୍ରାରମ୍ଭେ ।
କୋମଳ ଶୈବାଳ ଦଳେ କି ସୁନ୍ଦର,
ତୋର ଶିଳାମୟ ବୃଦ୍ଧ କଳେବର ।
ହେ ପ୍ରାଚୀନ ସେତୁ କରିଛୁ ଦର୍ଶନ
କଟକ ନଗର ଉତ୍‌ଥାନ ପତନ ।
ତୁ ଅଟୁ କଟକ-ଇତିହାସ-ଜ୍ଞାତା,
ଫେଡ଼ି କହ କିଛି ଅତୀତର ଗାଥା ।
କେଶରୀ ବଂଶର ଶେଷ ରାଜଗଣ,
କଲେ ଯେବେ ଏହୁ ନଗର ସ୍ଥାପନ ।
କି ଉତ୍ସାହେ କହ ଏ ଉତ୍କଳ ଜାତି,
ଦେଶ-ହିତ ବ୍ରତେ ଉଠିଥିଲେ ମାତି ।
ମହାପରାକ୍ରମୀ ରାଜା ଚୋରଗଙ୍ଗ
ତୋର ଚଉପାଶେ କଲେ ଯୁଦ୍ଧରଙ୍ଗ ।
ଦେଖିଛୁ ସେଦିନ ଉତ୍କଳ-ବିକ୍ରମ,
ଉତ୍କଳବାସୀର ପ୍ରାଣାନ୍ତକ ଶ୍ରମ ।
ବାରବାଟୀ ଚଉଦୁଆର ବିନଷ୍ଟ,
ଦେଖି ଆଜି ମନେ ନ ପାଉ କି କଷ୍ଟ ?

ଆକ୍ରମିଲେ ଯେବେ ଦୁର୍ଦ୍ଧର୍ଷ ଯବନ,
ବର୍ଷିଲା କମାଣ ଗୋଳା ଅଗଣନ ।
ନିଜ ବକ୍ଷେ ସବୁ ସହି ଅକାତରେ,
ସହଜେ ପୂରାଇ ନ ଦେଲୁ ନଗରେ ।
ସେ ଆଘାତ-ଚିହ୍ନ ଥିବ ଆଜିଯାଏ,
ସ୍ଥାନେ ସ୍ଥାନେ ତୋର ସୁବିପୁଳ କାୟେ ।
ଆଜିଯାଏ ଯେତେ ଏପରି ଘଟଣା,
ଅନୁଭବେ ସବୁ ଅଛି ତୋତେ ଜଣା ।
କହ କହ ସେତୁ, ସମସ୍ତ ବିସ୍ତାରି
ଶୁଣନ୍ତୁ ଉତ୍କଳ ସର୍ବ ନରନାରୀ ।
ହୀନବଳ ଏବେ ଉତ୍କଳ-ସନ୍ତାନ,
ହରାଇଅଛନ୍ତି ଆତ୍ମଶକ୍ତି ଜ୍ଞାନ ।
ଜାଣିବେ ତା ଶୁଣି ପୂର୍ବ ବଡ଼ପଣ,
ସାଧୁ ଅନୁଷ୍ଠାନେ ଦେବେ ପ୍ରାଣମନ ।

## ବିଂଶ ଶତାବ୍ଦୀର ପ୍ରଥମ ଦିନ
## ବାରବାଟୀ ଦର୍ଶନ

ଊନବିଂଶ ଶତ ଖ୍ରୀଷ୍ଟ ଅବ୍ଦ ଗତେ,
ବିଂଶ ଶତ ଅବ୍ଦ ପ୍ରବେଶ ଜଗତେ ।
ଅନନ୍ତ ସମୟ ସାଗର-ଉଦରେ,
ଶତ ବର୍ଷ ଆହା ପଶିଲା କି ଖରେ !
କେତେ କେତେ ମନେ କେତେ କି ବାସନା
ଅପୂର୍ଣ୍ଣ ରହିଲା, ନାହିଁ ଆଶ୍ୱାସନା ।
ନିରପେକ୍ଷ କାଳ ନ ଚାହିଁଲା କ୍ଷଣେ,
ଭବେ ତାର ପ୍ରିୟ ନାହିଁ କେହି ଜଣେ ।
କେତେ କାହା ହୃଦେ ଅପାର କଷଣ,
ନ ତୁଟି ଶୋଣିତ କରଇ ଶୋଷଣ ।
କାଳଠାରେ ନାହିଁ ଦୟା ମାୟା ଲେଶ,

କରିଯାଏ ଚାଲି ନିଜ କାର୍ଯ୍ୟ ଶେଷ ।

ଆସ ନବ ଯୁଗ ନବୀନ ବରଷ,
ନବ ଦିନେ ଘେନି ଅଶେଷ ହରଷ ।

ବିଭୁ-ସ୍ୱର୍ଗଧାମୁଁ ସୁଖ ସମାଚାର,
ଆଣି ଏ ସଂସାରେ କର ହେ ପ୍ରଚାର ।

ବିଗତ ଶତାବ୍ଦୀ ଘୋର ତାପ-ଜ୍ୱାଳ,
ସ୍ୱରଗର ଶାନ୍ତି-ଉଦକେ ପଖାଳ ।

ନନ୍ଦନକାନନ ନବ ଫୁଲବାସ,
ଦୂଷିତ ଧରଣୀ ଧାମେ ପରକାଶ ।

ଦିବ୍ୟ ଭାବ ଦିଅ ମୋର ପିଣ୍ଡେ ଆଣି,
ପବିତ୍ର ଉତ୍ସାହେ ମତ୍ତ ହେଉ ପ୍ରାଣୀ ।

ଆବର ମାଗୁଛି ଯୋଡ଼ି କର ବେନି,
ଭାରତର ପୂର୍ବ ଯଶଃ ଆସ ଘେନି ।

ଭବରଙ୍ଗେ ଦିନେ ଯେହୁ ମହାରାଜ,
ଆହା ଦୀନହୀନ ଭିଖାରି ସେ ଆଜ ।

କର ହେଲେ ଏହା ଦେଖିଣ କରୁଣା,
ନବ ତେଜେ ଥରେ ବିକାଶୁ ପୁରୁଣା ।

ହେ କାଳ ! ତୁମ୍ଭେ ତ ସର୍ବ ଶକ୍ତିମନ୍ତ,
କିଏ ଜାଣେ କାହିଁ ତୁମ ଆଦି ଅନ୍ତ ।

କିଏ ସେ କଳିବ କେତେ ତୁମ୍ଭ ବଳ;
ହୁଏ ଯେଣୁ ଜଳେ ସ୍ଥଳ; ସ୍ଥଳେ ଜଳ ।

ଏହି ଯେ ସମ୍ମୁଖେ ବାରବାଟୀ ପଦା,
ଭାଙ୍ଗିଅଛି ଯହିଁ ଲକ୍ଷ ଲକ୍ଷ ଗଦା,

ଥିଲା ଯେହୁ ବୀର-ବିହାର-ପ୍ରାଙ୍ଗଣ,
ଭ୍ରମେ ତହିଁ ଆଜି ଶ୍ୱାନ-ଶିବାଗଣ ।

ଶୁଭ୍ର ଶୈଳସମ ବିଶାଳ ସଉଧ,
ଶିର ଟେକି ଦିନେ ଭେଦିଣ ବଉଦ,
ଗମ୍ଭୀର ଗରବେ ହୋଇଥିଲା ଠିଆ,

ଦେଖି ଯାହା ଥରୁଥିଲା ଶତ୍ରୁ-ହିଆ ।
ଆହା ଏବେ ତହିଁ ସ୍ତୂପାକାରେ ମାଟି,
ବିଲୋକି ହୃଦୟ ଯାଏ ସିନା ଫାଟି !
ଥିଲା ଯହିଁ କାଳେ ଗଭୀର ପରିଖା,
ଟେକିଛି କୋମଳ ଶସ୍ୟ ତହିଁ ଶିଖା ।
ନାହିଁ ସେ କମାଣ ଅଶନି ଶବଦ,
ଶୁଣି ଯାହା ଶତ୍ରୁ ଶ୍ରବଣ ସ୍ତବଧ ।
ବୀରମଜ୍ଜା-ତେଜା ବାଜା ନାହିଁ ଆଜି,
କାହିଁ ସେ ଅଦମ୍ୟ କରୀ ବାଜିରାଜି ?
ହେ କାଳ, ତୁମ୍ଭରି ଗର୍ଭେ ସବୁ ଲୀନ,
ଶୁଭଗା ଉତ୍କଳ ଆଜି ଦୀନହୀନ ।
ହେ କାଳ, ତୁମ୍ଭରି ଅଟଳ ଆଦେଶେ
ଘୋଟିଛି ଦୁର୍ଗତି ଏ ଉତ୍କଳ ଦେଶେ ।
ଆଲୋ ସ୍ରୋତସ୍ୱତୀ ସତୀ ଚିତ୍ରୋତ୍ପଳା !
(ଯା ଘେନି ଉତ୍କଳ 'ସୁଜଳା ସୁଫଳା' ।)
ପିଆଇ ଆପଣା ସୁଧା ସମ ପୟ
ବଢ଼ାଇଥିଲୁ ଯେ ବୀର ଶୂରଚୟ ।
କିପରି ଦେଖିଲୁ ତାହାଙ୍କ ନିଧନ ?
ଦେଖି ପୁଣି ସତେ ପାଇଲୁ ଜୀବନ !
ଦେଖିଲୁ କିପରି କହ ସେ ଦୁର୍ଦ୍ଦିନ,
ବାରବାଟୀ ଯେବେ ହେଲା ଶିରୀହୀନ !
କରାଳ କଲ୍ଲୋଳେ କରି ଘୋର ନାଦ,
ରିପୁକୁଳ-ହୃଦେ ଆତଙ୍କ ପ୍ରମାଦ ।
ଜନ୍ମାଇଲୁ ନାହିଁ କିପାଁ ଲୋ ଜନନୀ,
ରହିଲା କିପରି ସ୍ଥିର ତୋ ଧମନୀ ?
ଧରିଣ ପ୍ରଳୟ ଭୀମ ରଣବେଶ,
ଶତ୍ରୁ ଦଳେ କିପାଁ ନ କଲୁ ନିଃଶେଷ ?
ଅବା କିପାଁ ତୋର ଭୀଷଣ କବଳ,

ଗରାସିଲା ନାହିଁ ଏହୁ ରଙ୍ଗସ୍ଥଳ ?

ବାରବାଟୀ ଲଭି ତୋ ହୃଦେ ଆରାମ,
ତବୁଁ ଲୁଚିଥାନ୍ତା ବାରବାଟୀ ନାମ ।

ସେ କାଳେ ସ୍ତମ୍ଭିତ ହେଲା ତୋର ଗତି,
ତୁ କାହୁଁ ଲଙ୍ଘିବୁ ସମୟ ନିୟତି ?

ମହାବଳୀ ଧନ୍ୟ ଧନ୍ୟ ତୁମ୍ଭେ କାଳ !
କେ ଲଙ୍ଘିବ ତୁମ୍ଭ ତୀକ୍ଷ୍ଣ କରବାଳ ?

ଥିଲା ଯେବେ କିଛି ଉତ୍କଳର ଦୋଷ,
ଦୋଷ ଅନୁମତେ କରିଅଛ ରୋଷ ।

ହୋଇଅଛି ଶାସ୍ତି କଷଣ ଅପାର,
ନ କର ଅଧିକ ଆଉ ଛାରଖାର ।

ଏଣିକି କରୁଣା ଅଟଇ ବିହିତ,
ସାଧ ନବଯୁଗେ ଉତ୍କଳର ହିତ ।

ଉତ୍କଳ-ତନୟେ ଦିଅ ନବ ବଳ,
ଉତ୍କଳ-ପାଦପେ ରସମୟ ଫଳ ।

ଉତ୍କଳ-ସରିତେ ପବିତ୍ର ଜୀବନ,
ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ,

ଉତ୍କଳ-ଆକାଶେ ନବ ଯଶଃ ରବି
ଉତ୍କଳ-ପ୍ରକୃତି ଧରୁ ନବ ଛବି ।

## ବାଲିଯାତ୍ରା ସନ୍ଧ୍ୟାରେ—ମହାନଦୀ ତୀରରେ

ସୁନ୍ଦର ଶରଦସନ୍ଧ୍ୟା ସୁନୀଳ ଆକାଶେ,
ଚାରୁ ପୂର୍ଣ୍ଣଶଶଧର ଉଜ୍ଜ୍ୱଳେ ବିଭାସେ ।

କୋମଳ ମୟୂଖମାଳେ ହସିଉଠେ ମହୀ,
ସରସ ସରିତ-ବକ୍ଷ କମ୍ପେ ରହି ରହି ।

ଖେଳେ ତଥିପରେ ଶତ ଶତ ଜ୍ୟୋତ୍ସ୍ନାଧାରା,

ନାଚେ ନଦୀଗର୍ଭେ ଶଶୀ ସହ ଶତ ତାରା ।

ପୁଲକେ ପୂରିତ ଏବେ ହୁଅଇ ଅନ୍ତର,
ପ୍ରକୃତି କି କରିଅଛି ମୋହନ ମନ୍ତର ?

ଠୁଳ ହୋଇଛନ୍ତି ଏଥି ବହୁ ଶତ ଜନ
ଏ ଛବି ନିରେଖେ ନାହିଁ କାହାରି ନୟନ !

ନାନା ରଙ୍ଗେ ମାତି ଏବେ ହୋଇଛନ୍ତି ଭୋଳ,
ତେଣୁ ଶୁଭେ ଏଡ଼େ ଘୋର ମୁଖରାବ ଗୋଳ ।

ବାଜେ ଶଙ୍ଖ, ବାଜେ ଘଣ୍ଟା ପଡ଼େ କରତାଳି,
ମୃଦଙ୍ଗ ମନ୍ଦିରା ବାଜେ, ଶୁଭଇ କାହାଳୀ ।

ଧର୍ମନୃତ୍ୟେ ହୋଇଛନ୍ତି ମତ୍ତ ବହୁ ଜନ,
ଏ ନୃତ୍ୟରେ କିନ୍ତୁ ଆହା ନାହିଁ ତ ଜୀବନ !

ଶୁଣି ଏହି ସଂକୀର୍ତ୍ତନ ନାଚେ ନାହିଁ ପ୍ରାଣ,
ବିଗଳିତ ନୁହେଁ ହୃଦ ଶୁଣି ଏହୁ ଗାନ ।

ଅନ୍ତରେ ସଞ୍ଚରେ ନାହିଁ ଲବେ ଧର୍ମଭାବ,
କେ କହିବ ଏ ସଙ୍ଗୀତେ ଅଛି କି ଅଭାବ ?

ଏହି ତ ସେ ମହାନଦୀ ଯାହାର ପୁଳିନେ,
ଏହି ତ ସେ ବାରବାଟୀ ଯହିଁ ଆହା ଦିନେ ।

ବାଜି ତୂରୀ ଭେରୀ ଶିଙ୍ଗା ଘୋର ଘନ ଘୋଷେ,
ଉତ୍ତେଜିଲା ପ୍ରତି ପ୍ରାଣ ସାହସେ ସରୋଷେ ?

ବିପୁଳ ବିକ୍ରମ ସ୍ରୋତେ ପ୍ରତି ହୃଦସ୍ଥଳୀ,
ପ୍ଲାବି ଦେଶହିତେ ଦେଲା କେତେ ନରବଳି ।

ସେ ଦିନର ତେଜଃପୁଞ୍ଜ ଉତ୍ସାହ ଶକତି,
ସ୍ୱଦେଶ ସ୍ୱଧର୍ମ ପ୍ରତି ଅଟଳ ଭକତି ।

ଭାସି ଯାଇଅଛି ସିନା ସମୟ-ତରଙ୍ଗେ,
ଭାସିଯାଏ ଫେନ ଯଥା ମହାନଦୀ-ଅଙ୍ଗେ ।

ଜଗତର ସାକ୍ଷୀ ତୁମ୍ଭେ ଦେବ ନିଶାପତି,
ନଭୋ-ବର୍ତ୍ମେ ନିରନ୍ତର କର ଦିବ୍ୟ ଗତି ।

ଜଗତର ନାନା ସ୍ଥାନ କରିଛ ଦର୍ଶନ,
ନାନା ଜାତି ନାନା ଧର୍ମ ଉତ୍‌ଥାନ ପତନ ।

ପଡ଼େ ଯେହୁ ଥରେ ସେହୁ ଉଠେ ତ ଆବର,
ଶୟନର ଅନ୍ତେ ଯଥା ଆସେ ଉଜାଗର ।

ବାରବାଟୀ ଦଶା ଲଭି କେବେ ରସାତଳେ
ଉଠିଅଛିଟି କି ସ୍ଥାନ ଅଭିନବ ବଳେ !

ତେବେ କିପାଁ ବାରବାଟୀ ହେବ ଆଶାହୀନ ?
ତେବେ କିପାଁ ବାରବାଟୀ ବଦନ ମଳିନ ?

ଢାଳିଦିଅ ସୁଧାକର ଦିବ୍ୟ ସୁଧାଝରୀ,
ଉଠୁ ମହାନଦୀ-ବକ୍ଷେ ଉତ୍ତୁଙ୍ଗ ଲହରୀ ।

ଧୋଇ ବାରବାଟୀ-ମୁଖ କରୁ ସମୁଜ୍ଜ୍ୱଳ,
ଶୁଦ୍ଧ ଧର୍ମମଦେ ସର୍ବେ ହୁଅନ୍ତୁ ବିହ୍ୱଳ ।

ସଞ୍ଚରୁ ଏ ସଂକୀର୍ତ୍ତନେ ପବିତ୍ର ଉଲ୍ଲାସ,
କର୍ମବୀର ଧର୍ମବୀର ହୁଅନ୍ତୁ ପ୍ରକାଶ ।

## ରେଳ ଉପରେ ଚିଲିକା ଦର୍ଶନ

ରହ ରହ କ୍ଷଣେ ବାଷ୍ପୀୟଶକଟ,
ଦେଖିବି ଚିଲିକା ଚାରୁ ଚିତ୍ରପଟ ।

ଚିତ୍ର ମଣେ ଯେଣୁ ନାହିଁ ଅନୁଭବ,
ବାସ୍ତବ ବିଶ୍ୱେ କି ଏ ଛବି ସମ୍ଭବ ?

ନୀଳ ବୀଚିମାଳା ଧୀରେ ଧୀରେ ଯାଏ,
ଲାଗଇ ସ୍ୱପନେ ଦେଖିଲା ପରାଏ ।

ସନ୍ତରନ୍ତି ବକ୍ଷେ ପକ୍ଷୀ ଦଳ ଦଳ,
ଓଲଟିଣ ତଳେ ଦିଶନ୍ତି ଯୁଗଳ ।

ଘୋର ନାଦେ ଯହୁଁ ଉଠିଲେ ସେ ନଭେ,
ଉଠେ ଶତ ଖଗ ଚିଲିକା-ଗରଭେ ।

ସତ୍ୟ ବୋଲି ମନେ ନ ହେଉ ପ୍ରତୀତ,
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।

ଦୂରେ ଘେନିଯାଏ ନିଦାରୁଣ ଯାନ,
ଆସେ ପୁଣି ତରୁ ଶିଳା ବ୍ୟବଧାନ ।

ନିମିଷେ ଲୁଚାଏ ନିମିଷେ ଦେଖାଏ,
ସ୍ୱପ୍ନଲଭ୍ୟ ପ୍ରିୟ ପ୍ରତିମା ପରାଏ ।

କାହିଁ ଦିଶେ ନୀଳ କାହିଁ ସୁଶ୍ୟାମଳ,
କାହିଁ ବା ଧୂସର କାହିଁବା ଧବଳ ।

ନାନା ସ୍ଥାନେ ନାନା ରଙ୍ଗେ ଦୀର୍ଘକାୟା,
ପ୍ରକାଶି ଚିଲିକା କରୁ କେତେ ମାୟା ।

ଦେବୀ ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମା-ଗ୍ରାହକ,

ଭ୍ରମି ବହୁ ସ୍ଥାନ ବିଶାଳ ଭାରତେ,
ବହୁ ନଦୀ ମରୁ କାନନ ପର୍ବତେ,

ଦେଖିଲେ ପ୍ରକୃତି ବିବିଧ ପ୍ରକାଶ
କିନ୍ତୁ ଶୋଭାଲୁବ୍ଧ ଶୁଦ୍ଧ ଅଭିଳାଷ ।

ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ
ନ ପାଇଲେ ଯଥା ମିଳେ ତୋହଠାରେ ।

ଉତ୍କଳର ତୁହି ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେତ୍ରେ ବାଛି ତହୁଁ ମଣି ।

ସୁଦକ୍ଷ ବିନ୍ଧାଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ ଭାରତୀ ଗଳାର,

ଚିରଦିନ ତାହା ରାଜିବ ରୁଚିର,
ତା ଦେଖି ଭାବୁକେ ଲୋଡ଼ିବେ ତୋ ତୀର ।

ମୁଁ ଅଧମ ମୋର ଭାବୁକତା ନାହିଁ
ତଥାପି ଏ ପ୍ରାଣ କେ ଜାଣେ କିପାଇଁ

ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବିଥିଲି ଆସି ତୋର କୂଳେ,

ଦେଖିବି ତୋ ଶୋଭା ଦିନେ ନିକାଞ୍ଚନେ,
କର୍ମ-ବନ୍ଧେ ଥିଲା ମନ କଥା ମନେ,

ଏତେକାଳ ଅନ୍ତେ ପଡ଼ିଥିଲା ଯୋଗ,
ଆହା ସେ ସୁଯୋଗ ହେଲା କାହିଁ ଭୋଗ !

ରହିଣ ଜଞ୍ଜାଳ ବିଷମ ଜଗତେ,
ସଂସାରୀ ସୋଦର ବାନ୍ଧବ ସଙ୍ଗତେ ।

ଇଚ୍ଛାମତେ କାହୁଁ ଚଳିବ ବା ଜନ ?
ସମାଜେ ନିଜର ନୁହେ ନିଜ ମନ ।

ବସି କେତେଥର ନୀରବ ବିଜନେ
ଦେଖିଛି ତୋ ରୂପ କଳ୍ପନା-ନୟନେ ।

ତୋ ନୀଳ ତରଙ୍ଗେ ଖେଳେ ନିରନ୍ତର,
ଅନୁପମ ଦିବ୍ୟ ହିରଣ୍ମୟ କର ।

ଚାରୁ ଶକ୍ରଚାପ ତୋର ବକ୍ଷସ୍ଥଳେ,
ନାଚେ ଶତ ଶତ ମୋ କଳ୍ପନା ବଳେ ।

କଳ୍ପନା ଚିତ୍ରିତ ତୋ ସୁନ୍ଦର ତନୁ,
କାଳେ କାଳେ ଆଉ ନ ଯିବ ମୋ ମନୁ ।

ଆଜି ଲୋ ଚିଲିକା କଳ୍ପନା ପ୍ରଭାବେ
ପୂରଇ ମୋ ମନ ଆହା କେତେ ଭାବେ ।

ଅତୀତର ସୁଖ ସ୍ମୃତି ସମୁଚ୍ଚୟ,
ହର୍ଷ-ଖେଦେ କରେ ଆକୁଳ ହୃଦୟ ।

ତୋ ମଧୁର ନାମେ ରହିଛି ଜଡ଼ିତ,
ଗଉରବାନ୍ୱିତ ଉତ୍କଳ-ଅତୀତ ।

କାହିଁ ଉତ୍କଳର ସେ ସୁକୃତରାଶି ?
ଯାହାର ପ୍ରଭାବେ ପ୍ରଭୁ ବ୍ରହ୍ମରାଶି,

ନିଜେ ନିରଞ୍ଜନ ଜଗତ-ଈଶ୍ୱର,
ଧରିଣ ସୈନିକ ନର କଳେବର,

ଉତ୍କଳର ଯଶଃ ପ୍ରତିଷ୍ଠା ରକ୍ଷଣେ,
ବିଜେ କଲେ ଘୋର ସମର-ପ୍ରାଙ୍ଗଣେ ।

କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ
ପବିତ୍ର ଉତ୍କଳ ଆଜି କି ବିକୃତ ?

ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛି ସବୁ କର୍ମ-ଧର୍ମ-ବଳ ।

ନାହିଁ ମୁଖେ ତେଣୁ ପୂର୍ବ ଧର୍ମକାନ୍ତି,
ହୃଦୟେ ସ୍ୱର୍ଗୀୟ ଧର୍ମଜାତ ଶାନ୍ତି ।

ଜୀବନେ ପବିତ୍ର ଉତ୍ସାହ ଶକତି,
ଉତ୍କଳର ଆହା କି ଘୋର ଦୁର୍ଗତି !

କାହିଁ ଗଲା ପୂର୍ବ ଓଡ଼ିଆ ବୋଇତ ?
କାହିଁ ସେ ନାବିକ କର୍କଶ ସଙ୍ଗୀତ ?

ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ?

କଥାରେ ରହିଛି ସବୁ ଆଜିଯାଏ,
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।

କଙ୍କରିତ ତୋର ଦୃଢ଼ ରମ୍ୟ ତଟ,
ଦୁର୍ଗମ ଶଇଳ ଅଭେଦ୍ୟ ସଙ୍କଟ ।

ଖେଳାଉ ଥିଲେ ଯେ ଧରି ନିଜ ଦେହେ,
ଉତ୍କଳର କେତେ ବୀର ଶିଶୁ ସ୍ନେହେ ।

ଅଛି ସେହି ଗିରି ଅଛି ସେ ବିପିନ,
ଅଛି ତୋର ଶିଳା ସୁଦୃଢ଼ ପୁଳିନ ।

କିନ୍ତୁ କାହିଁ ଆହା ଏବେ ସେ ବୀରତା ?
ଓଡ଼ିଆ ଜାତିର ପୂର୍ବ ଜାତୀୟତା ?

# ଗଞ୍ଜାମ ଜାତୀୟ ସମିତି

(୧)

ଅନ୍ଧାର ଉତ୍କଳ-ନଭେ ଏବେ ଶୁଭଦିନେ,
ଉଇଁଛି ଉଜ୍ଜ୍ୱଳ ଆଶା-ତାରକା ଦକ୍ଷିଣେ;
ନବୋଦିତ ଯୋଗୁଁ ପ୍ରଭା ଅଳପ ବିକାଶ
ତଥାପି ଢାଳଇ ପ୍ରତି ପରାଣେ ଆଶ୍ୱାସ ।
ଉତ୍କଳ ଜାତୀୟ ପୋତ ସୁନିଶ୍ଚିତ ପଥ,
ଦେଖାଇବ ଏହି କ୍ଷୁଦ୍ର ତାରକା ସନ୍ତତ ।
ଓଡ଼ିଆ ଜାତିର ଏହା ହେବ ଧ୍ରୁବତାରା,
ନାଶି ତମଃ ପ୍ରକାଶିବ ଯଶଃ ଜ୍ୟୋତିଧାରା ।

(୨)

ଦିନେ ଆହା ଚାଲି ଯାଇଅଛି ସେ ସୁଦିନ !
ସୁଭଗା ଉତ୍କଳ ତେଣୁ ଆଜି ଦୀନହୀନ ।
ଦିନେ ଯେଉଁ ଧ୍ରୁବତାରା ଉଇଁ ଏହି ଦେଶେ
ଦେଖାଇଲା ପଥ ଜାବା ବାଲି ସେଲିବିଶେ,
ଦିନେ ଯେଉଁ ଧ୍ରୁବତାରା କାଞ୍ଚୀଯାତ୍ରା କାଳେ,
ଚିଲିକାର ଚାରୁବକ୍ଷେ ନୀଳ ଉର୍ମିମାଳେ,
ଚଳାଇଲା ଶତ ଶତ ଓଡ଼ିଆ ବୋଇତ
ଜାତୀୟ ସମିତିରୂପେ ଆଜି ସେ ଉଦିତ ।

(୩)

ଧନ୍ୟ ହେ ଗଞ୍ଜାମବାସୀ ଓଡ଼ିଆ ସକଳ !
ଧନ୍ୟ ତୁମ୍ଭ କଉଶଳ ଧନ୍ୟ ତୁମ୍ଭ ବଳ ।
ରାଧାକୃଷ୍ଣ ପ୍ରେମକଥା ମଧୁର ସଙ୍ଗୀତେ,
ତନ୍ତ୍ରୀମୁଖେ ବଳଦେବ ଯହିଁ ଶୁଣ୍ଢଚିତ୍ତେ,
ଯହିଁ ମହାକବି ଭଞ୍ଜ ଶ୍ରୀରାମ ଚରିତ,
ଗାଇଲେ ପ୍ରଥମ ଦିବ୍ୟ ରସମୟ ଗୀତ,
ରାମ କୃଷ୍ଣ ପଦ ଲାଗି ଯାର ଧୂଳି ପୂତ
ତୁମ୍ଭେମାନେ ସେ ଗଞ୍ଜାମ ଉପଯୁକ୍ତ ସୁତ ।

(୪)

ଦେଖାଇଲ ଯେ ଉତ୍ସାହ ଉଦ୍ୟମ ଶକତି,
ମାତୃଭାଷା ମାତୃଭୂମି ଅଟଳ ଭକତି ।
ଦେଲ ଯେ ଜାତୀୟ ଭାବ ଦୃଢ଼ ପରିଚୟ,
ଚିରଦିନ ଗାଇବେ ତା ଉତ୍କଳ-ତନୟ;
ଉତ୍କଳର ଇତିହାସେ ପାଇବ ତା ସ୍ଥାନ,
ଭାବୀ ବଂଶ ଦେଖାଇବେ ସାଦର ସମ୍ମାନ ।
ଜାତୀୟ ଜୀବନେ ଏହି ପ୍ରଧାନ ଘଟନା,
ସ୍ଥାନେ ସ୍ଥାନେ ଓଡ଼ିଆଏ କରିବେ ବନ୍ଦନା ।

(୫)

ସୁସଭ୍ୟ ଇଂରେଜ-ରାଜ-ପିତୃ-ସୁଶାସନେ
ଶତ ବର୍ଷ ଅନ୍ତେ ଏବେ ଉତ୍କଳ ଭୁବନେ,
ଫଳିଲା ପାଶ୍ଚାତ୍ୟ ଶିକ୍ଷା ସୁମଙ୍ଗଳ ଫଳ,
ସମବେତ ଉଦ୍ୟମର ଅଦଭୂତ ବଳ ।
ସ୍ୱଦେଶ ସ୍ୱଜାତି ହିତେ ସାଧୁ ସ୍ୱାର୍ଥତ୍ୟାଗ,
ସ୍ୱସମାଜ ସ୍ୱଧରମେ ଗାଢ଼ ଅନୁରାଗ ।
ସୁସାହସେ ଦେଖାଇଲ ଯେ ଉଚ୍ଚ ଆଦର୍ଶ,
ଅନୁସରନ୍ତୁ ଉତ୍କଳେ ସର୍ବେ ପ୍ରତି ବର୍ଷ ।

---

* ବଳରାମ ଦାସ ଋଷିକୁଲ୍ୟା ନଦୀକୂଳରେ କେତେକ ଦିନ ଆଶ୍ରମ କରିଥିବାର ତାଙ୍କ 'ରାମାୟଣ'ରୁ ଦେଖାଯାଏ । କବି କୃଷ୍ଣ ସିଂହ ଗଞ୍ଜାମ ଅଧିବାସୀ ଥିଲେ ।

## ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ଛାତ୍ରମାନଙ୍କ ପ୍ରତି

କହିଛନ୍ତି କବି ଯାକୁ ତପୋବନ,
କର ଭାଇ ତାକୁ ସେ ନାମ ଭାଜନ ।
ଅଶାନ୍ତି ଅନୈକ୍ୟ ହିଂସା ଦ୍ୱେଷ ରୋଷ,
ଆଳସ୍ୟ କ୍ଷୁଦ୍ରତା ବୃଥା ଅସନ୍ତୋଷ ।

ବ୍ରହ୍ମବର୍ଚ୍ଚ୍ୱ[1] ବଶେ ନ ପଶୁ ଏ ସ୍ଥଳେ;
ଜ୍ଞାନେ ଉଭାସିତ ହେଉ ଏ ଉତ୍କଳେ ।

ପୁଣ୍ୟ ନୀଳାଚଳ ପୁଣ୍ୟତମ ସ୍ଥାନ,
ହୋଇ ଲଭୁ ସଦା ଲୋକରେ ସମ୍ମାନ ।

କର୍ମୀ ଧର୍ମୀ ଯୋଗୀ ପୁରୁଷ ପ୍ରସୂତି,
ବୋଲି ଚଉଦିଗେ ପ୍ରସରୁ ବିଭୂତି ।

ଶ୍ରେଷ୍ଠବଂଶେ ତୁମ୍ଭେ ଲଭିଛ ଜନମ,
ବିଧିରେ ସମାଜେ ଆସନ ପ୍ରଥମ ।

ବାଣୀ-ଉପାସନା ତୁମ୍ଭ ଜାତିଧର୍ମ;
ସତ୍ୟାନୁସନ୍ଧାନ ପ୍ରିୟ ନିତ୍ୟକର୍ମ ।

ସ୍ୱାର୍ଥତ୍ୟାଗ ତୁମ୍ଭ ବଂଶର ଗରିମା,
ସତତ ସୌଜନ୍ୟ ବିନୟ ବଢ଼ିମା !

କୁଳ ଗଉରବ ବଂଶ ବଡ଼ପଣ,
ରଖିବାକୁ ଭାଇ ଅଛି ଯେବେ ମନ ।

ଗଢ଼ ଏଥି ଦୃଢ଼େ ଜୀବନ-ବୋଇତ,
କର ଆୟୋଜନ ଭବିଷ୍ୟତ ହିତ ।

ଭାରତ ଅର୍ଣ୍ଣବେ କି ଘୋର ତୋଫାନ,
ଦେଖ ଭାଇ ଆଗୁଁ ହୁଅ ସାବଧାନ ।

ବହେ ଅଣଚାଶ ପବନ କରାଳ,
ଉଠଇ ଉଦ୍‌ବେଳ ଭୀମ ଊର୍ମିଜାଳ ।

କେତେ ଦ୍ୱୀପସ୍ତମ୍ଭ ନିମଗନ ଜଳେ,
କେତେ ଶତ ଶୈଳ ମିଶିଲେଣି ତଳେ ।

ଭାରତ ଜାତୀୟ-ଜୀବନ ତରଣୀ,
ପାଏ ନାହିଁ ଏବେ ସହଜ ସରଣୀ ।

ଜାତୀୟତା-ପୋତେ ଜୀବନ-ବୋଇତ,
ଯୋଡ଼ିବା ତ ପ୍ରତି ଜନର ବିହିତ ।

---

୧- ବ୍ରହ୍ମତେଜ

ପଡ଼ିବ ହେବାକୁ ଏ ତୋଫାନେ ପାରି,
ହେବଟି କି ଭାଇ ପାରଗ କାଣ୍ଡାରୀ ?

ସେହିପରି ବଳ କର ଆୟୋଜନ,
ଆଗ ହୁଁ ସେପରି କର ଆୟୋଜନ ।

ଭାରତବାସୀର ଧର୍ମବଳ ସାର,
ଧର୍ମ ବିନା ଆଜି ଏଡ଼େ ଛାରଖାର ।

ଧର୍ମେ ପରା ଆଗେ ତୁମ୍ଭ ଅଧିକାର,
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।

ଦେଖାଅ ଜୀବନେ ଅଦ୍ଭୁତ ଶକତି,
କର୍ମେ ଅନାସକ୍ତି ଧର୍ମେ ଦିବ୍ୟ ମତି ।

ପୂତ 'କର୍ମଭୂମି' ଏ ଭାରତ ଧାମେ,
ଆର୍ଯ୍ୟ ଅଭିମାନ କର କିପାଁ ନାମେ ?

ପ୍ରେମେ ଆଲିଙ୍ଗନ କର ସର୍ବଜନେ,
ଉଛୁଳାଅ ପ୍ରେମ-ଉଲ୍ଲାସ ଜୀବନେ ।

ତୁମ୍ଭ ଆଦରଶେ ଅନ୍ୟ ଯେତେ ଜାତି,
ଉଠିବେ ପଲକେ ସାଧୁ କାର୍ଯ୍ୟେ ମାତି ।

ସାନ ବଡ଼ପଣ ସିନା ଭାଗ୍ୟାଧୀନ,
ସେଥିଲାଗି ମନ ନ କର ମଳିନ ।

ସତ୍ୟ, ଶମ, ଦମ, ଶଉଚ, ତିତିକ୍ଷା,
ଏ ଆଦି ସକଳ ତୁମ୍ଭ କୁଳ-ଦୀକ୍ଷା ।

ଆଚରିଣ ତାହା ଜୀବନେ ନିରତେ,
ବ୍ରହ୍ମତ୍ୱର ତେଜ ପ୍ରକାଶ ଜଗତେ ।

ଲୋକହିତେ ପ୍ରାଣ-ପ୍ରଦାନ-ପ୍ରବଣ-
ଦଧୀଚି ଶୋଣିତ କରିଛ ଧାରଣ ।

ଦିଅ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ,
ଭାରତ ଜାତୀୟ-ମହାଯାଗେ ଲାଗ ।

ବୀରେନ୍ଦ୍ର ଅଗ୍ରଣୀ କୃପ, ଦ୍ରୋଣାଚାର୍ଯ୍ୟ
ତୁମ୍ଭ ପୂର୍ବବଂଶେ ନ କଲେ କି କାର୍ଯ୍ୟ !

ପରଶୁ ପ୍ରଭାବେ ଦେବ ନିରଞ୍ଜନ
କରିଣ ଦୁରନ୍ତ ନୃପତି ନିଧନ ।
ବିଶ୍ୱ ହିତେ କଲେ ଶୋଣିତ ତର୍ପଣ,
ସେ କଥା କି ଆଜି ନ ହୁଏ ସ୍ମରଣ ?
ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ,
ଦିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ,
ସାଧ ବିଶ୍ୱହିତ ତେଜି ଅଭିମାନ ।

## କାମ

କାମଦେବ, ସୃଷ୍ଟି ସ୍ଥିତି ସଂହାରନିଦାନ
ତୁମ୍ଭର ପ୍ରଭାବେ ଫୁଟେ ପୁଷ୍ପରାଜି ବନେ,
ମଞ୍ଜୁ ଗୁଞ୍ଜେ ଅଳି, ଗାଏ କୋକିଳ ସୁତାନ,
ସରସ ଉଲ୍ଲାସ ଜନ୍ମେ ଜଗତ ଜୀବନେ ।
ପାଦପେ ବଲ୍ଲରୀ, ମେଘେ ବିଜୁଳି ଜଡ଼ିତ,
ଉଠେ ଊର୍ମି ସିନ୍ଧୁଜଳେ ଇନ୍ଦୁ ଆଲିଙ୍ଗନେ,
ଅଙ୍ଗେ ଅଙ୍ଗ, ପ୍ରାଣେ ପ୍ରାଣ ହୁଅଇ ମିଳିତ,
ସହଜ ପବିତ୍ର ପ୍ରେମେ, ତୁମରି ପ୍ରେରଣେ ।
ସୁମଧୁର-ମଧୁରାଜ୍ୟ-ଦେବ ରତିପତି !
ତବ ମୃଦୁ ଆଶ୍ୱାସନେ ପୁଲକେ ହୃଦୟ ।
ଦାରୁଣ ତାଡ଼ନା ମୂଢ଼ ଉପାସକ ପ୍ରତି
ଆମରଣ ଦୁଃଖ-ଶୋକ-ଅନୁତାପମୟ ।
ତୁମ୍ଭ ମଧୁଭାବେ ଜ୍ଞାନୀ କରେ ଅନୁଭୂତି
ଶୁଦ୍ଧ ଦିବ୍ୟ ବିଭୂପ୍ରେମ—ଜଡ଼ ପ୍ରତିକୃତି ।

## କ୍ରୋଧ

ମାନବ ଦୁରନ୍ତ ରିପୁ ଅନଳପ୍ରତିମ
ସାଧୁମୁଖେ କ୍ରୋଧ, ସଦା ତବ ନିନ୍ଦାବାଦ;
ତୁମ୍ଭ ଆବିର୍ଭାବେ ଘଟେ ଅଶାନ୍ତି ଅସୀମ,
ସମାଜ ଶାସନେ ଘୋଟେ ଘୋର ପରମାଦ !

ମହାକାଳରୂପୀ ଦେବ, ଯେବେ ପରକାଶେ
ସତ୍ୟର ସପକ୍ଷେ ତବ ଭୀମକାନ୍ତ କାୟା
ନାଶେ ପାପୀ ଭୟେ, ନାଚେ ଧାର୍ମିକ ଉଲ୍ଲାସେ,
ସେ ମୂର୍ତ୍ତି ସମ୍ମୁଖେ ନମେ କ୍ଷୀଣ ଭବମାୟା ।

ଜର୍ଜରିତ ଅତ୍ୟାଚାର ଅନ୍ୟାୟ ଦୂଷଣେ
ଚିର ପରାଧୀନ ଏହୁ ଭାରତ ଶ୍ମଶାନେ,
ତୁମ୍ଭ ନ୍ୟାୟୋଦ୍ଭବ-ମୂର୍ତ୍ତି ନାଚୁ ନାଚୁ କ୍ଷଣେ
ପ୍ରଚଣ୍ଡ ପ୍ରଭାବେ ପ୍ରେରି[୧] ତ୍ରିଂଶକୋଟି ପ୍ରାଣେ

ସତ୍ୟ-ଧର୍ମ-ନ୍ୟାୟ ସଖା ରୁଦ୍ରରୂପୀ କ୍ରୋଧ
ନମେ ତବ ପଦେ, କର ପାପ ପ୍ରତିଶୋଧ ।

## ରେଭେନ୍‌ସା କଲେଜରୁ ବିଦାୟ

ସତେ ଆଜି ଜନନି ! ଏ ଅଧମ ତନୟ
ସଂସାର-ଘଟନା ବଳେ
ଭାସି ଶୋକ-ଦୁଃଖ-ଜଳେ
ଛାଡ଼ିଲା ତୁମ୍ଭର ଚାରୁ ଅଙ୍କ ମଧୁମୟ,
ନିଃସହାୟେ ଲୋଡ଼େ ଏବେ ସଂସାରେ ଆଶ୍ରୟ ।

ସଂସାର ବିଷମ ସ୍ଥାନ
ନାହିଁ ଜ୍ଞାନ, ନାହିଁ ଧ୍ୟାନ
ଅଜ୍ଞାନେ ସକଳେ ଏଥି ସତତ ଚଞ୍ଚଳ,
ତୋ କୋଳ ସମାନ ନାହିଁ ଶାନ୍ତିମୟ ସ୍ଥଳ ।

---

୧- ପ୍ରେରି – ପ୍ରେରଣା କରି (inspiring).

କେତେ ଦିବ୍ୟ ଭାବରାଶି
ମୋ ହୃଦ-ତରଙ୍ଗେ ଭାସି
ଯାଉଥିଲା ଥିଲି ଯେବେ ତୋର କୋଳେ ଭୋଳେ,
ସେସବୁ ରହିବଟିକି ଏବେ ଭବରୋଳେ ?

ତୋ ମନୋହର ଉଦ୍ୟାନେ
ନିକାଞ୍ଚନେ ଏକଧ୍ୟାନେ
ଚନ୍ଦ୍ରାଲୋକେ ବିହରିଣ ପୁଷ୍ପବନ୍ଧୁମେଳେ,
ଦେଖିଛି ଅପୂର୍ବ କେତେ ଚିତ୍ର ବେଳେ ବେଳେ ।

ଦେଲେ ଏ ଯେ ନରଦେହ
ଥିଲେ କରିଥାନ୍ତେ ସ୍ନେହ
ସ୍ୱପ୍ନେ ଦିନେ ଦେଖି ନାହିଁ ତାଙ୍କ ସୁଧାମୁଖ,
ଆଜନମ କାଳୁଁ ମୋର ଚିରସଖା ଦୁଃଖ ।

କିନ୍ତୁ ମୋ ମନ-ନୟନ
କରି ମାତଃ ଉନ୍ମୀଳନ
ଚଖାଇଚ ମୋତେ ଯେଉଁ ସାମାନ୍ୟ ଅମୃତ,
ଆମରଣ ତହିଁ ଯୋଗେ ହେବି କୃତକୃତ୍ୟ ।

ଥିବି ଯହିଁ ତହିଁ ମାତଃ
ଅଜ୍ଞାତ କି ଅବା ଖ୍ୟାତ
ଜାଗ୍ରତ ଥିବ ମୋ ମନେ ତୁମ୍ଭ କଥା ନିତି ।
ହୁଏ ଯେତେ ବର୍ଷୀୟାନ୍
ଥିବ ତୁମ୍ଭ ପଦେ ଧ୍ୟାନ
ତୁମ୍ଭ ହିତେ ଜନନି ଗୋ ! ଲଭିବଇଁ ପ୍ରୀତି ।

ପୂର୍ବେ ଉଇଁ ଦିବାକର
କ୍ରମେ ଉଠେ ଯେତେ ଦୂର
ବଢ଼ଇ ମମତା ତେତେ ଶୈଶବ ସଦନେ ।
ଅସ୍ତାଚଳ ଶିରଦେଶେ
ପରବେଶି ଦିବାଶେଷେ
ପରଶେ ସ୍ଥବିର କରେ ପୂର୍ବାଶା ଚରଣେ ।

ଶିଖାଇଛ ଯେଉଁ ଶିକ୍ଷା
ଦେଇଅଛ ଯେଉଁ ଦୀକ୍ଷା
ନିରନ୍ତର ପ୍ରତିଫଳୁ ତାହା ମୋ ଜୀବନେ
ଏହି ଭିକ୍ଷା ଅକିଞ୍ଚନ କରେ ଶ୍ରୀଚରଣେ ।

## ଛବିଶ ବର୍ଷ ପ୍ରବେଶ

ଅଲକ୍ଷିତେ ନିଶବଦେ ଆହା କି ବେଗରେ
ବହି ଯାଉଅଛି କାଳ-ନିରପେକ୍ଷ ନଦୀ !
ଅସଂଖ୍ୟ କଳ୍ପନା-କଳି ରହିଛି ଅନ୍ତରେ
ବିକଶିତ ହୋଇ ନାହିଁ ଗୋଟିଏ ଅବଧି ।

ପଚିଶ ଛବିଶ ବର୍ଷ ହେଲା ଏବେ ଗତ
ପଛକୁ ଚାହିଁଲେ ହୃଦ ଆହା କି ବିକଳ !
ଅତୀତ କେବଳ ମୋର ରୁକ୍ଷ ସଇକତ,
ଦିଶେ କାହିଁ ନାହିଁ ଏକ ଶ୍ୟାମ ଦୂର୍ବାଦଳ !

ଏ ଦଦରା ନାବ ଆଉ ଜୀବନ-ସରିତେ
ବହିବି ବା କେତେ ଦିନ ବହନୀ[୧] ବିହୀନ ?
ମଧ୍ୟାହ୍ନେ ପ୍ରଦୋଷ ଚିନ୍ତା ପଡ଼ଇ ମୋ ଚିତ୍ତେ,
ମୋ ଆଶା-ମୁକୁଳରାଜି ବସନ୍ତେ ମଳିନ ।

ଧର୍ମ ଅନୁକୂଳ ଯେବେ ମୋ କାମନାଚୟ,
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ !

## ବିଷାଦ ସମୟରେ ଲିଖିତ କତିପୟ ପଂକ୍ତି

ପ୍ରଣୟର ସୁହାସ ଲୋତକ,
ସୁଖ ଦୁଃଖ ଆହ୍ଲାଦ ଯାତନା,

---
୧- ଚାଳକ

ଜୀବନେ ମୁଁ ଭୋଗିଛି ଅନେକ,
ନାହିଁ ଆଉ ଅଧିକ କାମନା !
ମୋ ଜୀବନ-ବୀଣାଯନ୍ତ ତାର,
ସ୍ୱରହୀନ ବଇତମ[୧] ଅତି
ଏବେ କ୍ରମେ ହେଉଛି ଅସାର,
ତେଜି ଆଦ୍ୟ ମୋହିନୀ ଶକତି ।

ମଧୁକାଳ ଆଶା-ଫୁଲରାଜି
ନିଦାଘର ତପନ କିରଣେ,
ଝାଉଁଳିଛି କି ବିଷାଦେ ଆଜି
ଗନ୍ଧହୀନ ଜୀବନ-କାନନେ ।

ପ୍ରଭାତର ମୃଦୁ ଗନ୍ଧବାହ
ହରାଇଛି ନିଜ ଶୀତଳତା,
ଭୀମ ଝଞ୍ଜା ପବନ ପ୍ରବାହ
ନାଶେ ଏବେ ହୃଦ-ସରସତା ।

ଭ୍ରମି ଭ୍ରମି ଅବସନ୍ନ କାୟା
ବିଷମ ଏ ବହୁ ଦୂର ବାଟେ,
ଦେଖିଲଇଁ ଯେବେ ସ୍ନିଗ୍ଧ ଛାୟା
ବିଶ୍ରାମିବି ତହିଁ ଜଳଘାଟେ ।

ଶୁଣି ଖଗ ମଧୁର କାକଳୀ
ଜୀର୍ଣ୍ଣ ବୀଣା ରଖିବି ସମ୍ଭାଦି,
ପକ୍ଷୀଗୀତେ ଦେବି କରତାଳି
କେହି ମୋର ନ ଥିବେ ବିବାଦୀ ।

ତରୁଲତା ନବ କିଶଳୟେ
ବିରଚିଣ କୋମଳ ଆସନ,
ଶୋଇବି ମୁଁ ଉତ୍ତାନ ହୃଦୟେ
ଶୁଣିବାକୁ ବାୟୁ ସନ ସନ ।

୧- ପୁରୁଣା

# ଏକ ଅସରା ବର୍ଷାର ଅବ୍ୟବହିତ ପରେ
# ନରାଜ ଦର୍ଶନ

ସତ୍ୟ ଶାନ୍ତି ସୁଖ ସଦା ମାନବ-ଜୀବନ
ଖୋଜଇ ବ୍ୟାକୁଳେ ବ୍ୟସ୍ତ ସଂସାର ଗହଳେ,
ମିଳିଲେ ଏପରି ସ୍ଥାନ କେବେ ଭାଗ୍ୟଫଳେ
ଅପସରେ କ୍ଷଣେ ଭବ ଦାରୁଣ କଷଣ ।

ସଦ୍ୟସ୍ନାତ ଏହୁ ଛବି ଶୁଦ୍ଧ ଘନଜଳେ
ଅସ୍ତମିତ ରବି-କରେ ଦ୍ୱିଗୁଣ ଉଲ୍ଲାସେ
ବିରାଜେ ଶ୍ୟାମଳ ଶସ୍ୟ କ୍ଷେତ୍ର ଚଉପାଶେ,
ବିଶଦେ ସକଳ ନଦୀ ବକ୍ଷେ ପ୍ରତିଫଳେ ।

ଶଇଳ ଶିଖରେ ଶୋଭେ ଶୁଭ୍ର ଶିବାଳୟ,
ସମଗ୍ର ଶ୍ୟାମଳ ଦୃଶ୍ୟ ମଧ୍ୟେ କି ରୁଚିର !
ନୀଳ ମେଘେ ଯଥା ପୂର୍ଣ୍ଣ ଚନ୍ଦ୍ରମା ଉଦୟ
ଶିବ ସଙ୍ଗବଶେ ଶାନ୍ତି ଅଧିକ ଗମ୍ଭୀର ।

ଦେଖ ଦେଖ ବନ୍ଧୁଗଣ ପୂରାଇ ନୟନ,
ଏ ଯୋଗ ଜୀବନେ ଘଟେ ଅତି ଅଳ୍ପକ୍ଷଣ ।

# ଗୋଟିଏ କାଙ୍କଣ ଗଛ

ନବଦୂର୍ବାଦଳ ଶେଯେ ଧରାଧାତ୍ରୀକୋଳେ
ବଢ଼ିଥିଲୁ ତେଜପୁଞ୍ଜେ ଆହା କେଡ଼େ ଭୋଳେ ।
ଦେଲା ପ୍ରକୃତି-ଜନନୀ ଲୋଡ଼ୁ ଯେବେ ଯାହା,
ନ ଥିଲା ତୋର ଏ ଭବେ କେହି ଆଉ ସାହା ।
ନତଶିଖେ ଲୋଟୁଥିଲୁ ସୁଖେ ନିମ୍ନଦେଶେ,
ସ୍ୱାଧୀନତାବଶେ ଶୋଭୁଥିଲୁ ଚାରୁ ବେଶେ ।

ଧରୁ ରାଶି ରାଶି ଫଳ, ଗଲା ସବୁ ନାଶ,
ତିଳେହେଲେ ମନେ ତୋର ନ ହୁଅଇ ତ୍ରାସ ।
କିନ୍ତୁ ଫଳ-ଅଭିଳାଷୀ ଦୁରାଶୟ ନର,
ଲଗାନ୍ତେ ତୋ ଦିବ୍ୟ ଶୁଦ୍ଧ କଳେବରେ କର;
ଝାଉଁଳି ପଡ଼ିଲୁ ସିନା ପାପର ପରଶେ
ସ୍ୱାଧୀନତା ହରାଇଣ ରହିଛୁ ବିରସେ ?
ରଞ୍ଜା ଖଞ୍ଜା ହେଲା ତୋର ଅଙ୍ଗବୃଦ୍ଧି ଲାଗି
କହ ତ ସଂଯୋଗେ କିପାଁ ହେଲୁ ଦୁଃଖଭାଗୀ ?
ଅନ୍ୟର ଆଶ୍ରୟ ପାଇ ଉଚ୍ଚେ ଶିର ଟେକି,
ବଡ଼ପଣ ଅଭିଳାଷୀ ନର ଅବିବେକୀ ।
ସ୍ୱାଧୀନତାପ୍ରିୟେ ! ଧରି ଅପର ଚରଣ,
ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ ।

## ଅନାଥା କଳିକା

ନବୀନ ମଲ୍ଲିକା ଚାରୁ କୋମଳ କଳିକା,
ପ୍ରକୃତି-ଜନନୀ କୋଳେ ସରଳା ବାଳିକା,
ଭୋଗି ନାହିଁ ଭବ-ଦୁଃଖ ଝଡ଼ ଝଞ୍ଜାବାତ
ଅତିକ୍ରମି ନାହିଁ ବାଳା ଜୀବନ-ପ୍ରଭାତ,
ତରୁଣ ଛଟକ ଭାବ ଅପାଙ୍ଗ-ଚାହାଣୀ,
ଚତୁର ସୁହାସ ଆଦି ନାହିଁ କିଛି ଜାଣି ।
ଦରୋଟି ହସଇ ଶୁଣି ବିହଙ୍ଗମ-ରବ,
ବୃନ୍ତାସନେ ଧୀରେ ଧୀରେ ଦୋଳାଏ ମରୁତ ।
ସ୍ୱର୍ଗୀୟ ସରଳ ଭାବ ପବିତ୍ର ମାଧୁରୀ,
ଏ ନବ କୋରକେ ଅଛି ଅପ୍ରକାଶ୍ୟ ପୂରି ।
ଶୈଶବ ସମୟ ତାର ଅଜ୍ଞାନ ସମୟ
ଏ କାଳେ ଭ୍ରମର ସଙ୍ଗେ ହେଲା ପରିଣୟ ।

ପର ପୁତ୍ରେ ପର କନ୍ୟା ହୁଏ କିପାଁ ବନ୍ଦୀ,
ସାମାନ୍ୟ କଳିକା କାହୁଁ ଜାଣିବ ସେ ସନ୍ଧି ?
ଯୌବନ ସରସେ ନାହିଁ ଲାବଣ୍ୟ-ତରଙ୍ଗ
ସରସ ବସନ୍ତେ ସ୍ଫୁଟ ହୋଇନାହିଁ ଅଙ୍ଗ,
ଅନ୍ତର-ନିହିତ ମଧୁ ଦେଇନାହିଁ ଦେଖା,
ଯୁବତୀ ପଦରେ ଧନୀ ହୋଇନାହିଁ ଲେଖା,
ପ୍ରଣୟୀ ଭ୍ରମର ତେଣୁ କେବେ କେବେ ଆସେ
ଭ୍ରମଇ ଏକାନ୍ତେ ବାଳକଳିକା ସକାଶେ ।
ଗୁଣୁ ଗୁଣୁ ସ୍ୱରେ ଅତି ଅପ୍ରକଟ ତାନେ
ନିତି ନୀତି ଉପଦେଶ କହଇ ତା କାନେ ।
ତାହାର ଶୈଶବ ତନୁ କେବେ ନ ପରଶେ,
ଭବିଷ୍ୟର ସୁଖ ଚିତ୍ର ଆଙ୍କଇ ମାନସେ;
କରେ ଅନୁକ୍ଷଣ ଭାବୀ-ପ୍ରମୋଦ କଳ୍ପନା,
ନ ଜାଣି ସମୟେ ହେବ ଆସି କି ଘଟନା ।
ଆହା କି ବିଚିତ୍ର ଭବେ ବିଧାତା ବିଚାର,
ଆହ୍ଲାଦ ସଙ୍ଗତେ ଥାଏ କଷଣ ଅପାର ।
ବସନ୍ତ ପ୍ରଦୋଷେ ଯେବେ ଫୁଟିଲା ସେ କଳି,
ପାନ୍ଥ ପଦେ ଦଳିହୋଇ ନାଶ ଗଲା ଅଳି ।
ଫୁଲ ପ୍ରକଟିତ ବାସେ ପ୍ରୟୋଜନ କିସ ?
ହୋଇଲା ସରସ ମଧୁ ଏବେ ସିନା ବିଷ !
ମଧୁ ପିଇବାକୁ ଏଥି ନାହିଁ ତ ମଧୁପ,
ରସିକ ନ ଥିଲେ କିଏ ଆଦରେ ଏ ରୂପ ?
ବନ-ନିବାସିନୀ ମଲ୍ଲୀ ଏ ନବ ଯୌବନେ
ଏକାକିନୀ ଅନାଇଛି ଅନନ୍ତ ଗଗନେ ।
ନୀରବେ ଶିଶିର-ଅଶ୍ରୁ ଗଳଇ ନୟନୁଁ,
କମ୍ପେ ବିଧୁରାର ଆହା ନିରାଶ୍ରୟ ତନୁ ।
ଗୁପତେ ବାହୁନି କି ସେ କରଇ ବିଳାପ,
ପାଷାଣ ମାନବ-ହୃଦ ଜାଣେ କି ସେ ତାପ ?
ସହୃଦୟେ କେହି ଥରେ ନ ପକାଏ ଦୃଷ୍ଟି,
ଧରାଧାମେ ଅକାରଣ ହେଲା କି ତା ସୃଷ୍ଟି ?

ବୃଥା ଶୋକ ପରିହର ମଲ୍ଲିକା-ସୁନ୍ଦରି !
ଧୈର୍ଯ୍ୟ ଧର ଏବେ ନିଜ ଅଦୃଷ୍ଟ ସୁମରି ।
ସୁମନ ସମାଜ ହୃଦେ ନାହିଁ ଦୟା ଲେଶ,
ନ ଶୁଣନ୍ତି ତୋ ବିଳାପ, ନ ଜାଣନ୍ତି କ୍ଳେଶ ।
ପ୍ରଣୟର ସ୍ଥାନ ନୁହେ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।'
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣ ମନ,
କ୍ଷଣେ ଏଥି ରହି ଚଳ ଅମର ଭୁବନ ।

## ଶିବରାତ୍ରି

କରିଅଛି ଉପବାସ ପୂଜିବି ଶଙ୍କର,
ଜାଗର ଜାଳିଣ ହେବି ନିଶି ଉଜାଗର ।

କାହିଁଗଲେ ଦେଖିବି ସେ ସତ୍ୟ ଶିବ ରୂପ,
ନାଶିବି କି ଦୀପ ଜାଳି ଘୋର ତମ ସ୍ତୂପ ?

ଉଜାଗର ରହିବାକୁ କାହିଁ ମୋର ବଳ,
କି ଦ୍ରବ୍ୟେ ପୂଜିବି ଅବା ସେ ପଦଯୁଗଳ ?

ଏ ଜଡ଼ ଜଗତେ କାହିଁ ଚିଦାନନ୍ଦ ତନୁ,
ବାହ୍ୟାଲୋକେ ଅନ୍ଧକାର ଯିବ କାହିଁ ମନୁ ?

ରାତିକର ଉଜାଗରେ କିସ ପ୍ରୟୋଜନ ?
ନିଦ୍ରାବିମୋହିତ ମୋର ସମସ୍ତ ଜୀବନ !

କାହିଁ ପାରିଜାତ କାହିଁ ଜାହ୍ନବୀର ଜଳ,
କାହିଁ ବା ଅମରଧାମ ହେମ ଶତଦଳ,

ଉପକରଣର ଲେଶ ନାହିଁ ଯେବେ ଭବେ,
ବ୍ରତ ଅନୁଷ୍ଠାନ କାହୁଁ କରିବେ ମାନବେ ?

ସନ୍ଦେହେ ବ୍ୟାକୁଳ ଏ ମୋ ଦୁର୍ବଳ ପରାଣ,
ନିରାଶ ବିଷାଦେ ଏବେ ମଗ୍ନ ମୋର ଜ୍ଞାନ,

ଅଶାନ୍ତି ଆବେଶେ ହୃଦ ହୁଏ ଆଲୋଡ଼ିତ,
ଘୋର ଅବିଶ୍ୱାସ ତମେ ଚିତ୍ତ ବିଜଡ଼ିତ ।

ପ୍ରକୃତିର ଚାରୁବେଶ ନ ଦେଖେ ନୟନ,
ଭୀମ ମରୁ ସମ ଲାଗେ ସମସ୍ତ ଭୁବନ ।

ଅନ୍ତରୁ ନୀରବେ ଏବେ ହେଲା ଦିବ୍ୟବାଣୀ,
କିପାଁ ଅବିଶ୍ୱାସେ ଜଡ଼ ହେଉ ମୂଢ଼ ପ୍ରାଣୀ ?

ଜଡ଼ ବୋଲି ଯାହା ତୋତେ ହୁଅଇ ପ୍ରତୀତ,
ନ ଜାଣୁ ତହିଁ କି ଶକ୍ତି ରହିଛି ନିହିତ !

ଶକ୍ତି ବିନା ସତ୍ତା କେବେ ନୁହଇ ସମ୍ଭବ,
ତେଣୁ ସଦା ଶିବମୟ ଦେଖ ସର୍ବ ଭବ ।

ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ,
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।

ହୃଦ-କପିଳାସେ ତୋର ବହେ ପ୍ରେମ-ଝର
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର;

ଶୁଚିମନ୍ତ ହୋଇ ନିତି ଜ୍ଞାନ-ଦୀପ ଜାଳି,
ଶୁଦ୍ଧ-ଭକ୍ତି-ରସ ଦିଅ ସେ ଶ୍ରୀପଦେ ଢାଳି,

ଉଜାଗର ରହି କର ତାଙ୍କ ପ୍ରିୟ କର୍ମ,
ପାଇବାକୁ ବାଞ୍ଛ ଯେବେ ଶିବରାତ୍ରି-ଧର୍ମ ।

ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ବୁଡ଼ ପଥ ହେ ସ୍ୱରଗ-ଯାତ୍ରୀ !

## ପଥିକ

ମୁଁ ତ ଚାଲୁଅଛି ମୋ କର୍ମ ଆଦରି
କିଏ ମୋତେ ଥରେ ଥରେ,
ରହ ରହ କ୍ଷଣେ ପଥିକ ବୋଲିଣ
ଆଶ୍ୱାସି ଡାକେ ସାଦରେ !

ଏଣିକି ତେଣିକି ଚାହିଁଇ ନିରେଖି
 କେହି କାହିଁ ନ ଦିଶଇ,
ମୁହୂର୍ତ୍ତକ ଅନ୍ତେ ପୁଣି ସେହି ମତେ
 କିଏ ସେ କାହୁଁ ଭାଷଇ ।

ମୁଁ ତ ଚାଲୁଅଛି ମୋ କର୍ମ ଆଦରି
 କିଏ ମଧ୍ୟେ ଥରେ ଥରେ,
ଅତି ମନୋରମା ପୀରତି-ପ୍ରତିମା
 ଉଭା ହୁଏ ମୋ ପଥରେ !

କାହିଁ କେବେ ପରା ଏ ରୂପ-ମାଧୁରୀ
 ଆସ୍ୱାଦି ତୋଷୁଛି ପ୍ରାଣ
ଭାବୁଁ ଏହିପରି ପଲକେ ସେ ଶିରୀ
 ହୁଏ କାହିଁ ଅନ୍ତର୍ଦ୍ଧାନ ।

ମୋ ପଥ ତ ମରୁ, ନାହିଁ ଲତା ତରୁ,
 ନାହିଁ ବାୟୁ ନାହିଁ ଜଳ;
ତେବେ ବେଳେ ବେଳେ କାହୁଁ ବହିଆସେ
 ଏ ଶୀତଳ ପରିମଳ ?

ଏ ଗନ୍ଧ କାହାର ଅତି ଚମତ୍କାର
 ନିମିଷେ ବିଚାରୁ ମନ,
ନାହିଁ ସେ ସୁବାସ ନିଶ୍ୱାସ ପ୍ରଶ୍ୱାସ
 ନିରୋଧେ ଝଞ୍ଜା ପବନ ।

କାହୁଁ ଏ ଆଶ୍ୱାସ, କାହୁଁ ଏ ସୁବାସ,
 କାହାର ଏ ରୂପକାନ୍ତି,
ଏ ବିଜନ ସ୍ଥଳେ ପ୍ରାଣେ ଏକାବେଳେ
 ଦିଏ ସ୍ନିଗ୍ଧ ଶାନ୍ତି ଭ୍ରାନ୍ତି ।

ଅସରନ୍ତି ପାଟ ଏ ଦୁର୍ଗମ ବାଟ
 ଚାହିଁଲେ ବୁଡ଼େ ଚେତନା
କିଏ ବା ଚାଲନ୍ତା ନ ଲଭିଲେ ଏହି
 ସ୍ୱର୍ଗୀୟ ସ୍ନେହ ସାନ୍ତ୍ୱନା !

ନିରସ ଅନ୍ତରେ ନିର୍ଜନ ପ୍ରାନ୍ତରେ
କିଏ ଧରନ୍ତା ଜୀବନ,
ଯେବେ ମୂର୍ତ୍ତିମତୀ ପୂର୍ବ ପ୍ରୀତି ସ୍ମୃତି
ନ ଦିଅନ୍ତା ଦରଶନ ?

ପବିତ୍ର ବାସନା କରନ୍ତେ ପ୍ରେରଣା
ହୃଦେ ଆସେ ନବ ବଳ,
କର୍ମପଥ ଶ୍ରମ ହରିବାକୁ ଆହା
କି ବିଚିତ୍ର କଉଶଳ !

ବିଭୁ ଆଶ୍ୱାସନା ପବିତ୍ର ବାସନା
ଶ୍ରଦ୍ଧା ସୁଧା ସ୍ନେହାନନା,
କର୍ମ ମହାପଥେ କରୁଛନ୍ତି ପାନ୍ଥେ
ସ୍ଥାନେ ସ୍ଥାନେ ଅଭ୍ୟର୍ଥନା ।

ତେବେ କର୍ମପଥେ ବ୍ୟର୍ଥ ମନୋରଥେ
ଘାରି ମୁଁ ହେବି କିପାଇଁ ?
ଏହି କିଏ କହେ ବାହ୍ୟେ କି ଅନ୍ତରେ
ଆଶ୍ୱାସିଣ 'ନାହିଁ, ନାହିଁ' ?

## ଗିରି-ଶିଖେ ଲୟ ରଖି ଚାଲିବି ମୁକର

ଯେତେ ଦୂର ଯାଏ ଚାଲି
ଚଉପାଶେ ଖାଲି ବାଲି,
ନାହିଁ କାହିଁ ଶ୍ୟାମଶଷ୍ପ[୧] ନବଦୂର୍ବାଦଳ,
ନାହିଁ ଲତା ନାହିଁ ତରୁ,
କେବଳ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଳ ଫୁଲ ଅବା ଫଳ ।
ସୁନୀଳ ସୁନ୍ଦର ଗିରି
ଧରି ଅନୁପମ ଶିରୀ

୧- ନୂଆଁ କଅଁଳ ଘାସ ।

ଦିଶୁଥିଲା ଅଜ୍ଞ ଦୂରେ ଚକ୍ରବାଳମୂଳେ,
ଉଜ୍ଜ୍ୱଳ ତାରକାରାଶି
ଦିବ୍ୟ ଆଲୋକେ ବିଭାସି
ନିରନ୍ତର ଶୋଭୁଥିଲା ତାର ଚାରୁ ଚୂଳେ ।

ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ
ହେବ ବୋଲି ଏତେ ଦୂର ଏ ବିଷମ ପଥ,
କ୍ରମେ ବହିଯାଏ କାଳ
କ୍ରମେ ଘୁଞ୍ଚେ ଚକ୍ରବାଳ
ଶିଥିଳ ସୈକତେ ଚଳେ ମୋର ମନୋରଥ ।

ଆଉ କେତେଦିନ ଅନ୍ତେ
ଏ ଦୁସ୍ତର ବାଲିବନ୍ତେ
ନ ଚଳି ରହିବ ପାଦ ସିନା ଥକ୍କା ମାରି
ନ ଦେଖିବ ଜନ ଆଖି,
ଘୋର ପନ୍ଥାରେ ଏକାକୀ
ଚାଲିଯିବ ସତେ ପ୍ରାଣ ବୃଥା ଘାରି ଘାରି ?

ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ,
ହେଲେ ହେଉ ଯେତେ ଦୂର ଏ ଦୁର୍ଗମ ପଥ;
କହ କେଉଁ ଅନ୍ଧ ଜନ
ସମ୍ମୁଖେ କରି ଦର୍ଶନ
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?

ଅବସନ୍ନ ହେଲେ କାୟା
ଆଶ୍ରିବି ଏ ଗିରି ଛାୟା,
ବାଲିଶେଯେ ଶୋଇବଇଁ ଯାଇ ଅଧେ ବାଟ,
ତାରକିତ ଗିରି ଚୂଡ଼େ
ନିବେଶି ନୟନ ଦୃଢ଼େ
ଫେଡ଼ିବି ପରମ ସୁଖେ ହୃଦୟ-କବାଟ ।
ସୁଦୂର ସାଗର-ଗୀତି
ଶ୍ରବଣେ ସ୍ୱର୍ଗୀୟ ପ୍ରୀତି

ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ;
ଅନୁସରି ସେହି ଗାନ
କରି ମନେ ଏକଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।

ଦେଖି ଚନ୍ଦ୍ର-ଚାରୁଅଙ୍ଗ
ଲଭିବାକୁ ତାର ସଙ୍ଗ
ଧାଇଁ ଧାଇଁ ପଥେ ଶଶା ଛାଡ଼ିଲା ପରାଣ,
କେତେ ଦୂରେ ନିଶାପତି
କାହିଁ ବା ଶଶ ଗତି
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ !

ଶତ ଶଶୀ ବଳି ଶୋଭା
କି ବିଚିତ୍ର ମନୋଲୋଭା,
କିପରି ଏହାର ଆଶା ଛାଡ଼ିବି ମୁଁ ନର ?
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରିଶିଖେ ଲକ୍ଷ୍ୟ ରଖି ଚାଲିବି ମୁକର ।

to recite this poem.

## ନୀରବ

(୧)

ନୀରବେ ପ୍ରସରେ କ୍ଷଣେ ଦିବ୍ୟ ଜ୍ୟୋତିଧାରା,
ନୀରବେ ଆକାଶେ ଉଦେ ରବି-ଶଶୀ-ତାରା,
ନୀରବେ ବଢ଼ଇ ତରୁଲତା-ମହୀଧର,
ନୀରବ ନିଖିଳ ବିଶ୍ୱ ନିଗୂଢ଼ ମନ୍ତର ।

(୨)

ମହା-କାଳ-ପାରାବାର ଅନନ୍ତ ଗରଭେ
ମିଶଇ ସମୟ-ସ୍ରୋତ ସତତ ନୀରବେ,

ନୀରବେ ଜଗତ କରେ ନିଜ କକ୍ଷେ ଗତି,
ନୀରବ ନିଖିଳ ବିଶ୍ୱ ନିଗୂଢ଼ ଶକତି ।

(୩)

ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଢଳ ଢଳ,
ନୀରବେ ସରସୀ-ବକ୍ଷେ ହସେ ଶତଦଳ,
ନୀରବେ ନିରାଶ ହୃଦେ ବହେ ଦୀର୍ଘଶ୍ୱାସ,
ସୁଖେ ଦୁଃଖେ ପରାଣର ନୀରବ ଆଶ୍ୱାସ ।

The lover sheds tears in silence for his beloved
The lotus smiles in the full silently in the gentle breeze
The heavy heart sighs all by itself
The solace either in grief or happiness is the outcome of silence only.

(୪)

ତେବେ କିପାଁ ଚଉଦିଗେ ଚହଲ ଚିତ୍କାର,
କିପାଇଁ ମାନବ କରେ ଏତେ ଅପଚାର ?
ଚାହଁ ଅନ୍ତରୀକ୍ଷ, ଚାହଁ ଆପଣା ଅନ୍ତର,
ଶୁଣ ଶିଖ ସାଧ ସଦା ନୀରବ ମନ୍ତର ।

———

# ବନ୍ଦୀର ଆତ୍ମକଥା

He was arrested in May 1922 and remained in Cuttack jail for six months. Then he was escorted to Hazaribag jail in the then Bihar (now of course in Jharkhand) in January 1923. This long poem was partly written in Cuttack jail and partly in Jharkhand. It is a beautiful piece of Modern Odia poetry with its pathos and elegance. Some lines written are classic lines on poetry with his conviction and philosophy. Let me recite those lines so that you will understand its immortal message and spirit.

# ପ୍ରାକ୍-ସୂଚନା

ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିବାରୁ ବ୍ରିଟିଶ ସରକାର ନୂତନ ଅପରାଧ ଦଣ୍ଡବିଧିର ୧୭ଧାରା ଅନୁସାରେ ପଣ୍ଡିତ ଗୋପବନ୍ଧୁଙ୍କୁ ୧୯୨୨ ମସିହା ମେ ୩୧ ତାରିଖ ଦିନ ଗିରଫ କରାଯାଇଥିଲା ଓ ଜୁନ ଛବିଶ ତାରିଖରେ ତାଙ୍କୁ ଦୁଇବର୍ଷ ସଶ୍ରମ କାରାବାସ ଆଦେଶ ହୋଇଥିଲା । ଜଣେ ରାଜନୈତିକ ବନ୍ଦୀ ଭାବରେ ତାଙ୍କୁ ହଜାରିବାଗ ଜେଲକୁ ନିଆଯିବା କଥା, କିନ୍ତୁ ତାଙ୍କ ବିରୁଦ୍ଧରେ କନିକା ମାନହାନି ମକଦ୍ଦମା ଚାଲିଥିବାରୁ ୧୯୨୩ ମସିହା ଜାନୁଆରୀ ୨୩ ତାରିଖ ପର୍ଯ୍ୟନ୍ତ ତାଙ୍କୁ କଟକ ଜେଲରେ ରଖାଯାଇଥିଲା । ୨୪ ତାରିଖ ଦିନ ସନ୍ଧ୍ୟାରେ ଜେଲରୁ ଆସି ସବ୍-ଇନ୍ସେକ୍ଟର ନୀଳମଣି ମହାନ୍ତିଙ୍କ ଘରେ ରାତ୍ରି ଯାପନ କରି ତା'ପରଦିନ ଟ୍ରେନଯୋଗେ ହଜାରିବାଗ ଯାତ୍ରା କରିଥିଲେ । ୨୭ ତାରିଖ ଅପରାହ୍ନରେ ସେ ହଜାରିବାଗ ଜେଲରେ ପ୍ରବେଶକଲେ । ଏ ସଂପର୍କରେ ନିଜ ଡାଏରୀରେ ଗୋପବନ୍ଧୁ ଲେଖିଛନ୍ତି–

> ୧୯୨୩ ଜାନୁଆରୀ, ୨୪ ତାରିଖ ବୁଧବାର – କନିକା ଅସହଯୋଗୀ ଓ କବିଭୂଷଣ ପ୍ରଭୃତି କଏଦୀଙ୍କଠାରୁ ବିଦାୟ, ସେମାନଙ୍କର ଦାରୁଣ ଦୁଃଖ । ସନ୍ଧ୍ୟା ୫ଟା' ବେଳେ ଜେଲ ମଧ୍ୟରୁ ପ୍ରସ୍ଥାନ । ସେ ସମୟରେ ସାଧାରଣ କଏଦୀମାନଙ୍କର ଭାବ, ଆମ୍ଭମାନଙ୍କ ପ୍ରସ୍ଥାନରେ ସେମାନଙ୍କର ଜେଲ ଅସୁବିଧା ଓ କଷ୍ଟର ଆଶଙ୍କା ।
>
> ଧୂଳି ନାଏକର ସକାଳେ ଖଲାସ । ସନ୍ଧ୍ୟା ୮ଟାରେ ଜେଲ ମଧ୍ୟରୁ ରେଲଯାତ୍ରା, ଷ୍ଟେସନରେ ରାଧାନାଥ ଓ ରାମା ସଙ୍ଗେ ସାକ୍ଷାତ । ରାମା କାନ୍ଦିଲା । ଗୋବିନ୍ଦ ସଙ୍ଗେ ଦେଖା । ରେଲରେ ସ୍ଥାନ ଅଭାବରୁ ଫେରିଲୁ । ସବ୍-ଇନ୍ସପେକ୍ଟର ନୀଳମଣି ମହାନ୍ତିଙ୍କ ଘରେ ରାତ୍ରି ଯାପନ....
>
> ୧୯୨୩ ଜାନୁଆରୀ ୨୭ ତାରିଖ, ଶନିବାର – ସକାଳ ୮ଟାରେ ଗୋମୋଠାରୁ ବାହାରି ୧୧ଟାରେ ହଜାରିବାଗ ରୋଡ ଷ୍ଟେସନରେ ପ୍ରବେଶ । ପାଣ୍ଡେ ହୋଟେଲରେ ଭୋଜନ । ମଟରଯୋଗେ ହଜାରିବାଗ ଯାତ୍ରା । ୨.୩୦ରେ ହଜାରିବାଗ ଜେଲ ପ୍ରବେଶ ।

(ସମାଜ ବିଶେଷାଙ୍କ: ୧୫.୭.୧୯୩୧)

ଛୋଟ ବଡ ଛଅ ଭାଗରେ ବିଭକ୍ତ 'ବନ୍ଦୀର ଆତ୍ମକଥା' ଗୋପବନ୍ଧୁଙ୍କ ବନ୍ଦୀଜୀବନର ଏହି ପ୍ରଥମ ପର୍ଯ୍ୟାୟ ଉପରେ ଆଧାରିତ । ପ୍ରଥମ ଛଅ ମାସର ଜେଲଜୀବନ ଓ ବନ୍ଦୀ ଭାବରେ ହଜାରିବାଗ ଯାତ୍ରାର ବର୍ଣ୍ଣନା ଏଥିରେ ପ୍ରଦତ୍ତ । ଗୋପବନ୍ଧୁ ହଜାରିବାଗ ଜେଲରେ ପହଞ୍ଚିବା ପରେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା ଓ ଅନନ୍ତ ମିଶ୍ର ଗୋପବନ୍ଧୁଙ୍କର କାଗଜପତ୍ର ସଜାଡ଼ିଲା-ବେଳେ 'ବନ୍ଦୀର ଆତ୍ମକଥା' ପାଣ୍ଡୁଲିପି ପାଇଥିଲେ ଓ ଫେବ୍ରୁଆରୀ ୮, ୧୯୨୩ରେ ପ୍ରଚାରକ ମିଶ୍ର ଖଲାସ ହେଲା ପରେ ସେହି ପାଣ୍ଡୁଲିପିକୁ ଧରି କଟକ ଫେରିଥିଲେ । ଏ ସଂପର୍କରେ ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବଂଧୁ ତ୍ରିପାଠୀ 'ଉତ୍କଳମଣି ପଣ୍ଡିତ ଗୋପବଂଧୁ' ପୁସ୍ତକରେ ବିବରଣୀ ଦେଇ କୁହନ୍ତି : ''ତାଙ୍କର ଏହି ଜେଲଖାନାରେ କିଛିଦିନ ରହିବାପରେ ଫେବୃଆରୀ ତା ୮(୧୯୨୩)ରେ ପ୍ରଚାରକ ଅନନ୍ତ ମିଶ୍ର ଗୋପବନ୍ଧୁଙ୍କର ବହିପତ୍ର ସଜାଡୁ ସଜାଡୁ 'ବନ୍ଦୀର ଆତ୍ମକଥା' ବୋଲି ଗୋଟିଏ ହସ୍ତଲେଖା ପାଇଥିଲେ ।'' (ପୃ.୧୫୪) ସମାଜର ଭିନ୍ନ ଭିନ୍ନ ସଂଖ୍ୟାରେ 'ବନ୍ଦୀର ଆତ୍ମକଥା' ୧୯୨୩ ମସିହାରେ ପ୍ରକାଶିତ । ଶେଷ ଅଂଶ ସମାଜର ୨୯, ସେପ୍ଟେମ୍ବର,୧୯୨୩ ସଂଖ୍ୟାରେ ପ୍ରକାଶ ପାଇଥିଲା । ଗୋପବନ୍ଧୁଙ୍କ ବନ୍ଦୀ-ଜୀବନର ଏକ ବର୍ଷ ପୂର୍ତ୍ତି ଅବସରରେ ୧୯୨୩ ମସିହା ଜୁନ ୨୬ ତାରିଖରେ 'ଗୋପବନ୍ଧୁ ଦିବସ' ସମଗ୍ର ଓଡିଶାରେ ପାଳିତ ହୋଇଥିଲା । ସେହି ଦିବସରେ 'ବନ୍ଦୀର ଆତ୍ମକଥା' ପୁସ୍ତକ ଆକାରରେ ସତ୍ୟବାଦୀ ପ୍ରେସରୁ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା । ଦୀର୍ଘ ଚବିଶ ବର୍ଷ ପରେ ଏହା ଥିଲା ଗୋପବନ୍ଧୁଙ୍କର ଦ୍ୱିତୀୟ କବିତା-ଗ୍ରନ୍ଥ ।

ସଂପାଦକ

# ବନ୍ଦୀର ଆତ୍ମକଥା

## (୧)

''ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁ ଜଣାଶୁଣା କଥା,
ସେଥିପାଇଁ ତେବେ କିପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେଭେଁ ପରାଣ ଆତଙ୍କେ ।
ଜାଣିଛି ଲାଗିଛି ଏ ଶାନ୍ତି-ସମର,
ନାହିଁ ଏଥି ତୋପ ହାତହତିଆର ।
ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲାଗିଛି ଲଢ଼ାଇ,
ଭାଙ୍ଗିବାକୁ ପଶୁବଳର ବଡ଼ାଇ ।
ଛାଡ଼ି ଧନ-ଆଶା ଘରଦ୍ୱାର-ମାୟା
ଅସଙ୍ଗଶସ୍ତ୍ରେ[୧] ଯେ ସାଜିଅଛି କାୟା,
ଅହିଂସା-ବଳରେ ଯେହୁ ବଳୀୟାନ,
ଏ ରଣପ୍ରାଙ୍ଗଣେ ତା'ର ଏକା ସ୍ଥାନ ।
ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ;
ବୁଝି ଏହା ମୁହିଁ ପଶିଛି ସଂଗ୍ରାମେ,
ନାହିଁ ମୋ ବିଚାର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।

୧- ବୈରାଗ୍ୟ-ଅସ୍ତ୍ର / ଅହିଂସା-ଅସ୍ତ୍ର

ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା-ପଥେ ତିଳେ[୨] ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।''

(୨)

''ହେ ଉତ୍କଳବାସି ମୋ ଭାଇ ଭଉଣି,
ମୋ ଦଣ୍ଡ-ବାରତା ସର୍ବେ ଥିବ ଶୁଣି ।
ଶୁଣି କି ହେ ମନେ କରିଛ ଶୋଚନା ?
ଶୋଚନା କିପାଁ ? ଏ ମୋ କର୍ମ ରଚନା ।
କହୁଥିଲି ପରା ବୁଲି ଗ୍ରାମ ଗ୍ରାମ,
'ଦେଶ ପାଇଁ ଦଶ ପାଇଁ କରି କାମ,
ମିଳେ ଯଦି କାହା ଭାଗ୍ୟେ କାରାବାସ,
କାରା ନୁହଇ ସେ ପବିତ୍ର ପ୍ରଭାସ[୩] ।'
ଆସି ଏଥି ସୁଦ୍ଧା ଏବେ ମୋ ବିଚାର
ଏ ଜାତୀୟ-ମୁକ୍ତି ସ୍ୱରଗ ଦୁଆର ।
ନୀରବେ ଭୋଗୁଛି ବସି କାରାବାସ
ଚାହୁଁ ଚାହୁଁ ଏବେ ଗଲା ଚାରିମାସ ।
ଏହିପରି ଗଲେ ଚଉବିଂଶ ମାସ
ଫିଟିବ ମୋହର ବନ୍ଧ ନାଗଫାଶ ।
ବରଷାରେ ମହାନଦୀ-ସ୍ରୋତ ପ୍ରାୟେ
ଦିନ ପରେ ଦିନ କେଡ଼େ ବେଗେ ଯାଏ ।
କାଲି ପରି ମୋର ପୂରିବ ମିଆଦ,
ଦିଅ ଭାଇ ମୋତେ ଏହି ଆଶୀର୍ବାଦ—
ମୁକୁଳି ଦ୍ୱିଗୁଣ ତେଜେ ନବ ବଳେ
ଖଟେ ଯାଇ ପୁଣି ତୁମ୍ଭ ପାଦତଳେ ।
ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁ କ୍ଷୟ,

୨- ସ୍ୱଳ୍ପ / ସ୍ୱଳ୍ପ ପରିମିତ ସ୍ଥାନ; ୩- ସୋମତୀର୍ଥ ।

ମାନବ ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?
ଜାତୀୟ ମମତା ବିଶ୍ୱଜନ-ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି,
ନୀରବ ନିଶ୍ଚଳେ ବସି ବନ୍ଦୀଘରେ,
ମାଗେ ଏହି ଭିକ୍ଷା ପ୍ରଭୁ ଶ୍ରୀ ପୟରେ ।''

(୩)

''ମୋ ଭାଇ ଭଉଣୀ ହେ ଉତ୍କଳବାସି,
ସ୍ୱରାଜ୍ୟ-ସାଧନେ ନ ହୁଅ ଉଦାସୀ ।
ଯେ ଦୀକ୍ଷାରେ ଥରେ କରିଛ ବିଶ୍ୱାସ,
ନ ଛାଡ଼ ତା ଥିବା ଯାଏଟି ନିଃଶ୍ୱାସ ।
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର,
ଏହା ବିନେ ଦେଶ ହୁଏ ଛାରଖାର ।
ଅଙ୍ଗେ ନିଭାଉଛ କେତେ କି ଅବସ୍ଥା,
ଅନ୍ନ ବସ୍ତ୍ର ଆଉ ହେବ କି ହେ ଶସ୍ତା ?
ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ,
ପ୍ରଜାକୁଳ କ୍ରମେ ଭଜିଲେଣି ଅସ୍ତ ।
କେତେ ମାସେ କେତେ ପ୍ରକାରରେ କର,
ଦେଇ ପ୍ରଜାଙ୍କର ଭାଙ୍ଗିଲାଣି ଘର ।
ଖାଇବା ବାସନ ହେଉଛି ନିଲାମ,
ଦେ଼ବେ ହେଲେ ନାହିଁ କରମ ବିରାମ ।
ସହି ନାନା ଦୁଃଖ ଯାତନା ସନ୍ତତ,
ନାହିଁ ଆଉ ତୁମ୍ଭ ଶରୀରେ ରକତ ।
ଜାଣେ ମୁଁ କରୁଛ ନାନା ଆତ୍ମ ଭୀତି,
ଡରାଇ ଶାସିବା ହୀନ ରାଜନୀତି ।''

X X X

''ରହିବ ନାହିଁ ଏ ନୀତି କାଳେ କାଳେ,
ନାଶଯିବ ସତ୍ୟ-ନ୍ୟାୟ କରବାଳେ ।
ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି,
ପ୍ରଜା ଲାଗି ଇନ୍ଦ୍ର କରେ ଜଳ ବୃଷ୍ଟି ।
ପ୍ରଜା ଲାଗି ଉଦେ ରବି ଶଶୀ ତାରା,

ପ୍ରଜା ଲାଗି ବହେ ଶତ ନଦୀଧାରା ।
ପ୍ରଜା ଲାଗି ରାଜ୍ୟ, ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।
ଭାରତର ରାଜଧର୍ମ ସନାତନ—
ପରଜା ରକ୍ଷଣ ପାଳନ ରଞ୍ଜନ ।
ସ୍ୱରାଜ୍ୟେ ଏ ନୀତି ହୋଇବ ପ୍ରଚାର,
ନ ରହିବ ଆଉ ଦୁଃଖ ଦୁରାଚାର ।
ନ ସହିବ କଷ୍ଟ କେହି ଅନାହାରେ,
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।
ଡରାଇ ଶାସିବା ନୀତି ଭାଙ୍ଗିଯିବ,
ପ୍ରଜାଙ୍କ ମତରେ ଶାସନ ଚାଲିବ ।
ଏହି ନବ ଯୁଗ ଆଣିବା ସକାଶେ,
ଗାନ୍ଧି ରହିଛନ୍ତି ସିନା କାରାବାସେ ।
ଭାରତର କେତେ କେତେ ମହାଜନ
ବନ୍ଦୀଶାଳେ ଏବେ କଟାନ୍ତି ଜୀବନ ।
ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।
ଉତ୍କଳମାତାର ଆଉ କେତେ ସୁତ—
ସଙ୍ଗେ କାରାଗାରେ କଲି ପିଣ୍ଡ ପୂତ ।
ବସି ଏଥି ସଦା ରହିଛି ଅନାଇଁ
କାରାଗାର-ଛିଦ୍ରେ ତୁମ ଆଡ଼େ ଭାଇ !
ଅରଟ ଚଳାଅ ପ୍ରତି ଘରେ ଘରେ,
ଗ୍ରାମର କଳହ ତୁଟାଅ ଗ୍ରାମରେ ।
ଚାଲ ସତ୍ୟପଥେ ନାହିଁ ଡର ଭୟ,
ଅସହଯୋଗରେ ବିଜୟ ନିଶ୍ଚୟ ।
ଛାଡ଼ ଉଚ୍ଚ ନୀଚ ଭେଦ ଅହଙ୍କାର,
ହେଉ ନୀଳାଚଳୁଁ ସମତା ପ୍ରଚାର ।
ଖଣ୍ଡଗିରି ଭେଦି ଅହିଂସା-ମନ୍ତର
ଜାଗୁ ପୁଣି ଥରେ ଉତ୍କଳ-ଅନ୍ତର ।
ନୀଳାଚଳନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶା ରଖ ଏ ବିଶ୍ୱାସ ।''

(୪)

ଭାରତେ ଉତ୍କଳ ମହା ପୁଣ୍ୟଧାମ,
ଭାରତ ପାଞ୍ଜିରେ ନ ଥିଲା ତା ନାମ,
ସାହସ, ସାହିତ୍ୟ, ଧନ, ମାନ ବଳେ
ଉତ୍କଳର ନାମ ସମସ୍ତଙ୍କ ତଳେ ।
ଭାରତ ଜାତୀୟ ମହାସମ୍ମିଳନେ
ନ ବସେ ଉତ୍କଳ ସ୍ୱତନ୍ତ୍ର ଆସନେ,
ତେଣୁ ଜଗନ୍ନାଥ କରୁଣାନିଧାନ
କରୁଣା କଟାକ୍ଷେ କଲେ ଅବଧାନ[୪] ।
ଅସହଯୋଗର ପବିତ୍ର ସରିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧି ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଧରି
କୁମାରିକା ଯାଏ ଖେଳିଲା ଲହରୀ ।
ଉତ୍କଳେ ସେ ପୁଣ୍ୟ ସ୍ରୋତ ଶତ ଧାରେ
ବହେ ପୁରପଲ୍ଲୀ କାନ୍ତାରେ ପ୍ରାନ୍ତରେ ।
ଉତ୍କଳେ ଅସଙ୍ଗ-ପ୍ରବାହେ ତ୍ୱରିତ
ବାହୁଛନ୍ତି ଯେହୁ ସ୍ୱରାଜ୍ୟ-ବୋଇତ,
ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡୁଥିଲି ନାବ-ମଙ୍ଗ ପ୍ରାଣପଣେ ।
ସ୍ୱରାଜ୍ୟ ବଇରୀ ଦଳ ହାତେ ପଡ଼ି
ମୋ ହାତେ ଲାଗିଛି ଏବେ ଲୁହାକଡ଼ି ।
ଆଉ କେତେ ଜଣ ନାଉରିଆ ଭାଇ
ମୋ ସଙ୍ଗତେ ସମ ଦଶା ଛନ୍ତି ପାଇ ।
ଉତ୍କଳନିବାସୀ ଏ ଦଶା ଦେଖିଣ
ନିରାଶରେ ବଳ କର କି ହେ କ୍ଷୀଣ ?
କର କି ଭାବନା କାଣ୍ଡାରି[୫] ବିହୁନେ
ଚାଲିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ,

୪- ଅନୁଗ୍ରହ, ୫- ନାଉରିଆ/ଚାଳକ

ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ;
ଉତ୍କଳର ନେତା ନିଜେ ନାରାୟଣ।
ଇତିହାସେ ଶୁଣିଅଛ ଜନଶ୍ରୁତି
କାଞ୍ଚୀଯୁଦ୍ଧ କାଳେ ଉତ୍କଳ ବିଭୂତି[୬]।
ଶୁଣିଛ ତ ପ୍ରଭୁ ନୀଳାଦ୍ରିନାୟକ
ବିଜେ ଧରି ହାତେ କୃପାଣ ଶାୟକ,
ଉତ୍କଳ ପ୍ରଧାନ ସେନାପତି ପଣେ
ହୋଇଥିଲେ ବିଜେ ସମର-ପ୍ରାଙ୍ଗଣେ।
ଉଡ଼ିଲା ଉତ୍କଳ ଜୟ-ବୈଜୟନ୍ତୀ
ଆଜିଯାଏ ଏହା ଗାଏ କିମ୍ବଦନ୍ତୀ।
ଏବେ ସୁଦ୍ଧା ଦେଖ ନୀଳାଚଳେ ଯାଇ
କଳା ଧଳା ଘୋଡ଼ା ପରେ ବେନି ଭାଇ,
ବୀରମୂର୍ତ୍ତି ଦିଶେ ଯେହ୍ନେ ଅଗ୍ନିଶିଖା
ଦଧି ମୂଲ୍ୟ ମାଗେ ଛାମୁରେ ମାଣିକା।
ଏ ଛବି ତ ନୁହେଁ ଶିଳ୍ପୀର କଳ୍ପନା;
ଏ ସତ୍ୟର ସାକ୍ଷୀ ମାଣିକପାଟଣା।
ଏହି ସେ ଉତ୍କଳ ପୁଣ୍ୟ ଦେବସ୍ଥଳୀ,
ହୋଇଛନ୍ତି ଠୁଳ ଯହିଁ ତୀର୍ଥାବଳୀ।
ତା ମଧ୍ୟେ ବିରାଜେ ପୁଣ୍ୟ ନୀଳାଚଳ
ଭାରତର ଧର୍ମ-ହୃଦ-ଶତଦଳ।
ଏବେ ନୀଳାଚଳେ ବିଜେ ଜଗନ୍ନାଥ,
ତେବେ କିପାଁ କହ ଉତ୍କଳ ଅନାଥ ?
ନାହିଁ ପୂର୍ବ ବଳ, ନାହିଁ ପୂର୍ବ ଧର୍ମ,
ନାହିଁ ପୂର୍ବ ସତ୍ୟ, ନାହିଁ ପୂର୍ବ କର୍ମ।
ଉତ୍କଳବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ ଏବେ ନୀଳାଚଳପତି।
ମାତ୍ର ବୁଝ ଭାଇ, ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ।
କ୍ଷୀଣ ହେଲେ କେବେ ଧାର୍ମିକ ଶକତି
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି;

୬- ମହତ୍ତ୍ୱ

ନିତ୍ୟଧାମୁ ଛାଡ଼ି ରତ୍ନସିଂହାସନ
କରିବାକୁ ଧର୍ମପକ୍ଷ ସମର୍ଥନ ।
ଏ ବିଶ୍ୱାସେ ମନ ଦୃଢ଼କର ଭାଇ,
ନେତାର ଅଭାବ ଲାଗି ଭାବ ନାହିଁ ।
କର୍ମଭୂମେ କିଏ ନେତା କେବା ନୀତ[୭],
ସରବେ ନିମିତ୍ତ ବିଧି-ନିୟୋଜିତ ।
ଉତ୍କଳନିବାସୀ ସର୍ବ ନରନାରୀ,
ଘେନ ହେ ଏ ବନ୍ଦୀ ଭାଇର ଗୁହାରି–
ଦଗ୍ଧ ହେଉ ଦେହ, ଭସ୍ମ ହେଉ ଘର
ସ୍ୱରାଜ୍ୟ ସାଧନେ କେବେ ହେଁ ନ ଡର ।
ନ ଛାଡ଼ ସାହସ, ନ ହୁଅ ନିରାଶ,
ହେଲେ ହେଉ ପଛେ କାରାଗାର ବାସ ।
ନ ହୁଡ଼ ସ୍ୱରାଜ୍ୟ ଶାନ୍ତି-ସତ୍ୟ-ପଥ
ଲାଗୁ ସିଂହଦ୍ୱାରେ ନନ୍ଦିଘୋଷ ରଥ ।''

(୫)

''ଶାସନ-ରକ୍ଷକ କନ୍‌ଷ୍ଟେବଲ[୮] ଦଳ
ନେଉଛନ୍ତି ମୋତେ ଛଡ଼ାଇ ଉତ୍କଳ ।
ରଖି ଆସିବେ ସେ ଆନ କାରାଗାରେ
କାହିଁ ବହୁ ଦୂରେ ଉତ୍କଳ ବାହାରେ ।
ନ ଦେଖିବେ ବୋଲି କେହି ଦେଶଭାଇ
ଗଭୀର ନିଶୀଥେ ନିଅନ୍ତି ଲୁଚାଇ ।
ନିଅନ୍ତୁ ଯେପରି ରଖନ୍ତୁ ସେ ବିଳେ,
ସେଥିଲାଗି ମୋର ଦୁଃଖ ନାହିଁ ତିଳେ ।
ମାତ୍ର ଉତ୍କଳୁଁ ମୁଁ ଯାଇଛି ଯେ ଦୂରେ
ବାଜିଲେ ଏ ବାର୍ତ୍ତା କାଲି ପଲ୍ଲୀପୁରେ,
ଜାଣେ ଉତ୍କଳର କେତେ ନରନାରୀ
ବ୍ୟଥିତ ପରାଣେ ହେବେ ନିଶ୍ୱେ ଘାରି ।
ନିରାଶେ କହିବେ କେହି ଆହା ଆହା,
ଆନେ ବୋଲିବେ ସେ ପଥେ ଫଳ ତାହା ।
ଗ୍ରାମୁଁ ଗ୍ରାମାନ୍ତରେ ଗଲେ ଏ ସମ୍ବାଦ
ପଲ୍ଲୀ ନରନାରୀ ଭଜିବେ ବିଷାଦ ।

୭- ଗୃହୀତ/ବାହିତ, ୮- ଶାନ୍ତି-ରକ୍ଷାକାରୀ/ପୋଲିସ୍,

କେଜାଣି କେ ଅବା ପାଇ ବୃଥା ଭୟ
ଅସହଯୋଗରୁ ଛାଡ଼ିଦେବେ ଲୟ–
ଏ ଭାବନା ଏକା ମନ୍ଦେ ମୋ ଅନ୍ତର
ନିଜ ନିର୍ବାସନେ ନୁହେଁ ମୁଁ କାତର ।
ମନେପଡ଼େ କେତେ ଅଞ୍ଚଳର ଭାଇ
ଡାକିଥିଲେ ତେଣେ ଥରେ ଯିବା ପାଇଁ ।
କେତେ କେତେ ଗ୍ରାମେ ବୁଲି ଦ୍ୱାର ଦ୍ୱାର
କହିଛି ସ୍ୱରାଜ୍ୟ-ଶୁଭ ସମାଚାର ।
ତଥାପି ରହିଛି କେତେ ସ୍ଥାନ ବାକି,
ମୋ ଯିବାକୁ ଲୋକେ ରହିଥିଲେ ଟାକି[୯] ।
କେବେ ଫେରି ପୁଣି ଯାଇ ତାଙ୍କ ପାଶେ
କ୍ଷମା ମାଗିବି ମୋ ବିଳମ୍ବ ସକାଶେ ।
ଦେଖିବି କେବେ ସେ ପ୍ରିୟଜନ ମୁଖ,
ଏ ଭାବନା ଏବେ ଜନମାଏ ଦୁଃଖ ।
ହେ ଉତ୍କଳବାସି, ମୋ ଭାଇ ଭଉଣୀ,
କରିଅଛ ସ୍ନେହେ ମୋତେ ଚିର ଋଣୀ ।
ଯାଇଅଛି ଯହିଁ ପାଇଛି ଆଦର
ଶୁଣିଛ ଶ୍ରଦ୍ଧାରେ ସନ୍ଦେଶ ମୋହର ।
ତୁମ୍ଭ ହିତେ ମୋର ଦୁର୍ବଳ ପ୍ରୟାସ
ଜାଣେ କରିଅଛ ମନେ ଏ ବିଶ୍ୱାସ ।
ମୋ ସମ୍ବଳ ତୁମ୍ଭ ସେନେହ ଶରଧା
ସୁମରୁଥିବି ମୁଁ ଯହିଁ ଥିଲେ ସଦା ।
କିନ୍ତୁ ମୋ ବିରହେ କେବଳ ଶୋଚନା
କାରାରେ ନ ଦେବ ଏ ପ୍ରାଣେ ସାନ୍ତ୍ୱନା ।
ଦେଖିଛି ଉତ୍କଳେ ଯେ ଦୃଶ୍ୟ ନୟନେ
ଡରାଏ ତା ଭୂତ ପରାୟେ ଶୟନେ ।
କେତେ କେତେ ଚାଷୀ ଭଲ ଭଲ ଲୋକ
ନ ପାନ୍ତି ଦି' ବେଳା ପେଟପୂରା ଢୋକ ।
ଥିଲେ ଯେଉଁ ମଲ୍ଲ ଉତ୍କଳ ସୈନିକ,
ପାଇକ ପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା,

୯- ଅପେକ୍ଷାକରି

ଅନାହାରେ ଆହା ନ ଉଠଇ ଅଣ୍ଟା,
ଅର୍ଜନ୍ତି ଯା' ତୁଣ୍ଡେ ମାରି ମୁଣ୍ଡଝାଳ
ଦୁଷ୍ଟ ମହାଜନ, ଗ୍ରାମ କଟୁଆଳ;
ପ୍ରଜା ରକ୍ତ ଶୋଷି କେତେ ଜମିଦାର
ହରନ୍ତି ସର୍ବସ୍ୱ ବଜାଇ ପାହାର ।
ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ,
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।
ଚିକିତ୍ସା ନ ପାଇ ଘରକଣେ ପଡ଼ି
ରୋଗ, ଅନାହାରେ କେବା ମରେ ଗଡ଼ି ।
ଉଦରଜ୍ୱାଳାରେ କେତେ ନରନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ଡିହ କାହିଁ ବା ଚାଳିଆ
ଶ୍ମଶାନ ପରାୟେ ଦିଶେ ନିଛାଟିଆ ।
ପଶିଗଲେ ଗ୍ରାମେ ନ ଶୁଭେ ଶବଦ,
ବେଦମନ୍ତ୍ର କିବା ଭାଗବତ ପଦ ।
ଗ୍ରାମବାସୀଗଣେ ନାହିଁ ପୂର୍ବ ମେଳ,
ଶିଶୁଖେଳେ ଦାଣ୍ଡ ନ ହୁଏ ଉଦ୍‌ବେଳ ।
ଶୋଇଅଛି ଭାଙ୍ଗି ଗ୍ରାମ ଦେବାଳୟ,
ପୂରିଲାଣି ପଙ୍କବନ୍ଧେ ଜଳାଶୟ ।
ଗ୍ରାମର ଗୋକୁଳ କ୍ରମେ ଅତି କ୍ଷୀଣ,
ଯେଣେ ଅନାଇବ ସବୁ ଶିରୀହୀନ ।
ନାହିଁ ଜନମୁଖେ ସତ୍ୟ-ଧର୍ମ କାନ୍ତି,
ନାହିଁ ହୃଦେ ଶୌଚ ପ୍ରାଣେ ସ୍ନେହ ଶାନ୍ତି ।
ପର-ପ୍ରବଚନା[୧୦] କଚେରି-ବିଚାର
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସହ
ନିଜ ସ୍ୱାର୍ଥ ଲାଗି ଲଗାନ୍ତି କଳହ ।
ରାଜଦରବାରେ ବୃଥା ଅର୍ଥକ୍ଷୟ,

୧୦-ଅନ୍ୟ ବିରୁଦ୍ଧରେ ପ୍ରରୋଚନା/ପରନିନ୍ଦା,

ଶେଷେ ସମଦଶା ଜୟ ପରାଜୟ ।
ଶାସନ-କୁହୁକେ ସର୍ବେ ଅବସନ୍ନ
ବ୍ୟାଧଜାଲେ ପଡ଼ି କପୋତ ଯେସନ,
ଜାଲେ ହଣାହଣି ସ୍ୱଦଶା ନ ଜାଣି,
ଫଳେ ସର୍ବନାଶ ଧର୍ମ-ଅର୍ଥହାନି ।
ଦେଖିଣ ବିଦେଶୀ ଦ୍ରବ୍ୟ ଝଲମଲ
ଲୋଡ଼ନ୍ତି ପତଙ୍ଗ ଯେସନ ଅନଳ ।
ହେଉଅଛି କଂସା ହଣ୍ଡା ଜମି ବିକା,
ବୁଡ଼ିଲାଣି କେତେ ଜାତିର ଜୀବିକା ।
ଏହା ପରେ କ୍ରମେ ବଢ଼େ କର-ଦାଉ,
ଏ ଦଶା ରହିବ କେତେ ଦିନ ଆଉ ?
ସରିଲାଣି ସାର ପଡ଼ିଅଛି ସିଠା[୧୧]
ନାହିଁ ଗର୍ଭେ ପୂର ଦିଶେ ପୋଲା ପିଠା ।
ଉଭେଇଛି ଖଣ୍ଡା ଦୋହଲଇ ଖାପ[୧୨];
ରହିଛି ଅଙ୍ଗାର ନାହିଁ ତେଜ ତାପ ।
ପଡ଼ିଅଛି ପିଣ୍ଡ ଯାଇଛି ପରାଣ,
ଦେଖିଲେ ଏ ଦଶା ବୁଡ଼େ ବୁଦ୍ଧି-ଜ୍ଞାନ ।
ସଢ଼ି ମଞ୍ଜ ଗଛେ ରହିଛି ବକଳ,
ସୁନ୍ଦର ସକଳ ବିକଟ ବିକଳ !
ଫେରିବ ଏ ଦଶା ସୁଖୀ ହେବ ପ୍ରଜା,
ଉଷୁନା ଧାନ କି ସତେ ହେବ ଗଜା ?
ଉତ୍କଳର ଏହି ଚିତ୍ର ନିଦାରୁଣ
ନାଚଇ ମୋ ଆଖି ଆଗେ ପୁଣ ପୁଣ ।
ଏକେ କାରାବାସ ଦୂର ପରଦେଶ
ଦେଶଦଶା ତହିଁ ମନେ ଦେଲେ କ୍ଳେଶ;
କି ଭାବି ପରାଣେ ପାଇବି ଆଶ୍ୱାସ,
ପୋଛିବି ଲୋତକ ଧରି କି ସାହସ ?
ହେ ଉତ୍କଳବାସୀ ଆତ୍ମୀୟ ସ୍ୱଜନ !
ମୁଁ ଯେବେ ତୁମ୍ଭର ସେନେହ ଭାଜନ,
କର ଯୋଡ଼ି କରେ ବିନତି ଏତିକି,
ଅସହଯୋଗରେ ରଖିବ ମତିକି ।

---

୧୧-ଅସାର ଭାଗ, ୧୨-ଅଣ୍ଡାର ଖୋଳ

ଢାଳିଦିଅ ପ୍ରାଣ ସ୍ୱରାଜ୍ୟ-ସାଧନେ,
ଆଶ୍ୱାସିବ ଯେବେ ମୋତେ ନିର୍ବାସନେ ।
ନ ହୁଅ ନିରାଶ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଚିତ୍ର ।
ସୁଖ-ଦୁଃଖ-ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୁକର[୧୩] ।
ଆଲୁଅ ଅନ୍ଧାର ଖେଳେ ଲୁଚକାଳି,
ଆସିବ ଆଲୁଅ ପଡ଼ିଲାଣି ପାଳି ।
ପହଞ୍ଚିଛି ଏବେ ସେ ମାହେନ୍ଦ୍ର ବେଳା
କର ନାହିଁ ଭାଇ, ଏତେବେଳେ ହେଳା ।
ଉଇଁ ଆସୁଅଛି ସ୍ୱରାଜ୍ୟ-ତପନ,
ଭାରତେ ଜାଗ୍ରତ ନରନାରୀଗଣ ।
ଘୁମାଇ ନ ରହ ଏ ସମୟେ ଆଉ,
ଉଠ ଉଠ ବେଗେ ବେଳ ଥାଉଁ ଥାଉଁ ।
ଥରେ ଭଲା ଭାଇ ମନରେ ବିଚାର
କିପାଁଇ ମହାତ୍ମା ଏତେ ନାରଖାର !
କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ
ତେଜି ଧନ ଜନ, ଅଶନ[୧୪] ବସନ;
କାରାଗାରେ ବସି ନୀରବେ ଏକାକୀ
ଧ୍ୟାନମଗ୍ନ ଏବେ ମୁଦି ବେନି ଆଖି ।
ମହାତ୍ମା ସାଧନ ମହାତ୍ମା କଷଣ
ନ ଯାଏ ଜଗତେ କେବେ ଅକାରଣ ।
ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର ।
ଏ ବିଶ୍ୱାସେ ସର୍ବେ ଦୃଢ଼ କରି ମନ
ସ୍ୱରାଜ୍ୟ ଧରମ କର ଆଚରଣ ।
ବିଦେଶୀ ଅମେଧ[୧୫] ବସ୍ତ୍ର ଛାଡ଼ ଆଗେ
ହାତ ସୂତା ଲୋଡ଼ା ଏ ସ୍ୱରାଜ୍ୟ-ଜାଗେ ।
ପିନ୍ଧ ଦେଶୀ ଲୁଗା ହେଉ ଅଙ୍ଗ ଶୁଦ୍ଧି,
ମାମଲାରେ ଆଉ ନ ଖେଳାଅ ବୁଦ୍ଧି ।

---

୧୩- ଅବଶ୍ୟ/ନିଷ୍ଚେ, ୧୪- ଭୋଜନ, ୧୫- ଅପବିତ୍ର/ନିଷିଦ୍ଧ

ଗ୍ରାମେ ପଞ୍ଚ[୧୬] ପରା ପରମ ଈଶ୍ୱର
କର ପୁଣି ଗ୍ରାମେ ସ୍ଥାପନା ତାଙ୍କର ।
ସର୍ବେ ବାନ୍ଧି ମେଳ ତାଙ୍କୁ ମାନି ଚଳ,
ପ୍ରକାଶିବ ଗ୍ରାମେ ପୁଣି ନବ ବଳ ।
ନ ଲାଗିବ ମିଥ୍ୟା ଜାଲ ପ୍ରବଞ୍ଚନ,
ନ ଖାଇବେ ଭୂତ ତୁମ ଗ୍ରାମଧନ ।''

X X X

''ଗ୍ରାମ ବିଚାରରେ ସକଳେ ସମାନ
ଛାଡ଼ି ମନୁ ବଡ଼ ସାନ ଅଭିମାନ ।
ସ୍ୱରାଜ୍ୟ-ଧରମେ ନାହିଁ ଭେଦ ଜ୍ଞାନ,
ସମସ୍ତେ ଯେ ଏକ ମାତାର ସନ୍ତାନ ।
ଏକା କୋଳେ ଜନ୍ମ ଏକା କୋଳେ ଖେଳ,
ଏକା କୋଳେ ଶଯ୍ୟା ହେଲେ ଶେଷ ବେଳ ।
ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ,
ଗ୍ରାମବାସୀଗଣ ମଧ୍ୟେ ଏକମତ,
ସ୍ୱରାଜ୍ୟ-ସାଧନ ଏହି ତିନି ପଦ,
ପାଳିଲେ ଖଣ୍ଡିବ ଉତ୍କଳ-ବିପଦ ।
ଘୁଞ୍ଚିବ ଉତ୍କଳ ଦୁଃଖ ଦରିଦ୍ରତା
ଉଜ୍ଜ୍ୱଳିବ ଗ୍ରାମ, ହସିବେ ଦେବତା ।''
''କହିଲି କି କେତେ ହୃଦୟ ଆବେଗେ
ଚାଲେ ଏ ଦାରୁଣ ରେଳ କେଡ଼େ ବେଗେ !
ତେଇଁ ଆସିଅଛି ଏବେ ମହାନଦୀ
କଳିରେ ଉତ୍କଳ ପୂତ ବିଷ୍ଣୁପଦୀ[୧୭] ।
ଆଗରେ ଦିଶେ ଏ ଶୈଳ ବିନାୟକ,
ନମେ ପଦେ ପ୍ରଭୁ ବିଘ୍ନବିନାଶକ ।
ଆଦ୍ୟେ ତବ ପୂଜା ଶୁଭ ଅନୁଷ୍ଠାନେ,
ଯାଉଛି ଉତ୍କଳ ଛାଡ଼ି ଦୂର ସ୍ଥାନେ ।
କର କୃପା ମୋର ଶୁଭ ହେଉ ପଥ,
କାରାଗାରେ ମୋର ପୂରୁ ମନୋରଥ ।
ଯାଇଛି ଏ ପଥେ କେତେ ଥର ଆଗେ,
କିପାଇଁ ଚଞ୍ଚଳ ମନ ଆଜି ଲାଗେ ?

---

୧୬- ପଞ୍ଚାୟତ, ୧୭- ଗଙ୍ଗା

ଲାଗେ ଛାଡ଼ିଗଲି କିଛି ଅତି ପ୍ରିୟ,
ଅକୁହା ରହିଲା କିବା ଗୋପନୀୟ ।
କାହାକୁ ଦେଖନ୍ତି ପରା ଆଉ ଥରେ,
ନିଶ୍ଚିତ କିଛି ତ ନ ପଡ଼େ ମନରେ ।
ଜାଣୁଛି ଏ ମୋର ନିଜ ଦୁର୍ବଳତା,
ମାନବ ହୃଦୟ ସହଜ ମମତା ।
ମମତାର ଆଉ କାହିଁ ଅବକାଶ,
ପ୍ରକାଶିଲେ ହୃଦେ ପରମ ବିଶ୍ୱାସ ?
ମାନବ ଜୀବନ ନୁହେଁ ମିଥ୍ୟା ଭାଣ[୧୮]
କିବା କୂଟନୀତି କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁବନ୍ଧ[୧୯] ମାନବର ସ୍ୱତ୍ତ୍ୱ ।
ଯା ଜୀବନ-ଗତି ତତ୍ତ୍ୱ-ଅଭିମୁଖୀ,
ସେହି ଏକା କୃତୀ, ସେହି ଏକା ସୁଖୀ ।
ତତ୍ତ୍ୱର ସାଧନେ କୃତକୃତ୍ୟ ଜନ
ଲଭଇ ମରଣେ ଅମୃତ-ଜୀବନ ।
ସତ୍ୟ ସନାତନ ପ୍ରଭୁ ଭଗବାନ,
ଏ ଭାବେ କର ମୋ ହୃଦ ବଳୀୟାନ ।
ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ,
ଭାରତେ ସ୍ୱରାଜ୍ୟ ଜଗତ-କଲ୍ୟାଣ ।
ଜଗତ ସରସେ[୨୦] ଭାରତ କମଳ,
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ-ଶିଳା ଶାଳଗ୍ରାମ,
ପ୍ରତି ସ୍ଥାନେ ମୋର ପ୍ରିୟ ପୁରୀଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ,
ପ୍ରତି ଧର୍ମାଳୟ ମୋର ନୀଳାଚଳ ।
ଭାରତେ କୈବଲ୍ୟ[୨୧] ସକଳ ଆହାର,
ଭାରତେ ଶ୍ମଶାନ ସ୍ୱରଗ ଦୁଆର ।

୧୮- ଛଳ/କପଟ; ୧୯- ସମ୍ବନ୍ଧ/ଅବିଚ୍ଛେଦ, ୨୦- ସରୋବରରେ/ପୁଷ୍କରିଣୀରେ;
୨୧- ମହାପ୍ରସାଦ

ଶ୍ରୀହରି-ଚନ୍ଦନ ଭାରତ-କର୍ଦ୍ଦମ,
କାରାଗାର ମୋର ସ୍ୱରାଜ୍ୟ ଆଶ୍ରମ ।
ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ
ନୀଳାଚଳ ଶୁଦ୍ଧ ଭାରତ-ହୃଦୟ ।
ଥିଲେ ଯହିଁ ତହିଁ ଭାରତ ଶୟଳେ²²,
ମଣିବି ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ !
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।''

(୬)

''ପହଞ୍ଚିଛି ରେଳ ଜେନାପୁରେ ଆସି,
ପରିଚିତ ମୋର ଜେନାପୁରବାସୀ ।
ଆସିଥିଲି ଥରେ ଦୁଇ ବର୍ଷ ତଳେ
ବୁଡ଼ିଥିଲା ଜେନାପୁର ଯେବେ ଜଳେ ।
କେତେ ଗ୍ରାମ, କେତେ ଘର, କେତେ ଧନ
ହୋଇଥିଲା ବନ୍ୟା-ବିଘାତେ ଉଚ୍ଛନ୍ନ ।
କେତେ ଗ୍ରାମଦାଣ୍ଡେ ଚାଲୁଥିଲା ସୁଅ,
କେତେ ନୟନରୁ ବହୁଥିଲା ଲୁହ ।
କେତେ ନରନାରୀ, କେତେ ଗୋରୁଗାଈ
ମରୁଥିଲେ କଷ୍ଟେ ଆହାର ନ ପାଇ ।
ପଡ଼ିଗଲେ ମନେ ସେ ବେଳ ଘଟଣା
ହୃଦେ ହୁଏ ଏବେ ଦାରୁଣ ବେଦନା ।
ବନ୍ୟା ବିତିପାତେ ଉତ୍କଳ-ଦୁର୍ଦ୍ଦଶା
ବିଚାରିଲେ ମତି ହୁଅଇ ବିବଶା;
ଚିଲିକାକୂଳରୁ ସ୍ୱର୍ଣ୍ଣରେଖା ଯାଏ
ମୁହୂର୍ତ୍ତକେ ମୋର ଆଖି ବୁଲିଯାଏ ।
ଯେତେ ସ୍ଥାନେ ଯେତେ ଲୋକଙ୍କ କଷଣ
ଦେଖିଛି ପଲକେ ହୁଅଇ ସ୍ମରଣ ।
ଦୁର୍ଭିକ୍ଷ ବନ୍ୟାର ଚିର ସହଚର,

୨୨- ସ୍ଥାନରେ/ସଂସାରରେ

ଏକ ପଛେ ଅନ୍ୟ ଆସେ ନିରନ୍ତର ।
ସହି ସହି ବନ୍ୟା-ଦୁର୍ଭିକ୍ଷ-ପ୍ରହାର
ଉତ୍କଳର କେତେ ପଲ୍ଲୀ ଛାରଖାର ।
କେତେ ଗ୍ରାମ ଶୂନ୍ୟ, କେତେ ଘର ଖାଲି,
କେତେ ଶସ୍ୟକ୍ଷେତ୍ରେ ପୂରିଅଛି ବାଲି;
ନିରାଶା ଆତଙ୍କେ ପ୍ରଜା ଅବସନ୍ନ,
ମରୁଛନ୍ତି କେତେ ନ ପାଇଣ ଅନ୍ନ ।
ପଡ଼େ ମନେ ମୋର ଯେବେ ସିନ୍ଧୁକୂଳେ
ନୀଳାଚଳେ ଗାନ୍ଧି ଥିଲେ ପତ୍ନୀ ତୁଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ
ପାଇଥିଲେ ହୃଦେ ଗୁରୁତର ତ୍ରାସ[୨୩] ।
କେତେ ନରନାରୀ ବୃଦ୍ଧ ଯୁବା ବାଳ,
(ଅନାହାରେ ଯେହୁ କେବଳ କଙ୍କାଳ)
ଦେଖିଣ ମହାତ୍ମା କାତର ଅନ୍ତରେ
କହିଥିଲେ ମତେ ଦୁଃଖେ ଏକାନ୍ତରେ—
'ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ
ଅନଶନେ ଆଜି ତେଜନ୍ତି ଜୀବନ ।
ବଞ୍ଚିବାରୁ ବଳି ଦେଖି ଏ କଷଣ
ଶତ ଗୁଣ ଶ୍ରେୟ ମଣେ ମୁଁ ମରଣ ।
ମାତ୍ର ମୋ ପରାଣେ ରହିଛି ଭରସା,
ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।
ଏସବୁ ଯାତନା ନର କର୍ମଫଳ
ହୋଇଛି ଏ ଦେଶେ ପାତକ ପ୍ରବଳ ।
ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି
ସତ୍ୟେ ଅନୁରାଗ ଧର୍ମେ ଦିବ୍ୟ ବୁଦ୍ଧି,
ମେଣ୍ଟିବ ଦୁର୍ଗତି ଦୁଃଖ ଯିବ କ୍ଷୟ,
ଆସିବ ସୁଦିନ ହେବ ସୁଖୋଦୟ ।'

ଛାଡ଼ିବାକୁ ଗାଡ଼ି ଦେଲାଣି ସଙ୍କେତ,
ବାଜେ ଶେଷ ଘଣ୍ଟା, ଉଡ଼େ ନୀଳନେତ[୨୪] ।
ସୁବିଧା ଥିଲେ ମୁଁ ଓହ୍ଲାନ୍ତି ଏଠାରେ,
ଦେଖିଯାନ୍ତି ଢେଙ୍କାପୁର ଏବେ ବାରେ ।

୨୩- ଯନ୍ତ୍ରଣା, ୨୪- ନୀଳ ପତାକା

ବୁଲି ବ୍ରାହ୍ମଣୀର ତୀର ଜନପଦେ,
ବିଦାୟ ନିଅନ୍ତି କହି ପଦେ ପଦେ।
ଦେଖନ୍ତି କିପରି ଅଛନ୍ତି ମୋ ଭାଇ,
ଦଇବୀ ମାନୁଷୀ ଦାଉ ଧକ୍କା ଖାଇ।
ବ୍ରାହ୍ମଣୀ ବାଲିରେ ସାନ୍ଧ୍ୟ ସମ୍ମିଳନେ
କହି ଯାଇଥାନ୍ତି ଥିଲା ଯାହା ମନେ।
ଚାଲିଲା ପରା ଏ ନିଦାରୁଣ ଗାଡ଼ି,
ଜେନାପୁର ସତେ ଅଇଲି କି ଛାଡ଼ି ?
ଏହି ଯେ ପଡ଼ିଲା ଜେନାପୁର ସେତୁ
ବ୍ରାହ୍ମଣୀ ବିଶାଳ ବକ୍ଷେ ଧୂମକେତୁ।
ଥାଅ ଗୋ ବ୍ରାହ୍ମଣୀ ପୀନପୟୋଧରା !
ହେଉ ତୁମ୍ଭ ଯୋଗେ ଉତ୍କଳ ଉର୍ବରା,
ଖରସ୍ରୋତା ସଙ୍ଗେ କରି ତୁ ମନ୍ତ୍ରଣା
ତଟବାସୀ ଜନେ ନ ଦିଅ ଯନ୍ତ୍ରଣା।
କେନ୍ଦ୍ରାପଡ଼ା, ଯାଜପୁର ପ୍ରଜାକୁଳ,
କର ନାହିଁ ବନ୍ୟା ଉତ୍ପାତେ ବ୍ୟାକୁଳ।
ସେ ଭାଇ ସକଳ ମୋର ପ୍ରିୟତମ,
ତାଙ୍କ ସେବା ମୋର ଜୀବନେ ପ୍ରଥମ।
ଖରସ୍ରୋତା ତୁମ୍ଭ ଚିର ସହଚରୀ
ମାଗୁଛି ବେନିଙ୍କୁ ନମସ୍କାର କରି–
ତରଙ୍ଗ-ହିଲ୍ଲୋଳେ କଳ କଳ ତାନେ
ନିଅ ମୋ ସନ୍ଦେଶ ସେ ଭାଇଙ୍କ କାନେ।
ଗ୍ରାମୁଁ ଗ୍ରାମାନ୍ତରେ ପବନ ଲହରେ
ଉତ୍କଳେ ଏ ବାର୍ତ୍ତା ଖେଳୁ ଘରେ ଘରେ।
ଥାଅ ଯାଜପୁର କେନ୍ଦ୍ରାପଡ଼ା ଭାଇ,
ଦେଖାହେବ କେବେ ଲେଉଟିଲେ ଯାଇ।
ବନ୍ୟାରୁ ବରତି[୨୫] ନ ପାଇ ଶକତି
ଜାଣେ ମୁଁ ଭେଟିଛ ବିଷମ ବିପତ୍ତି।
କାରାଗାରେ ମୋତେ ପଡ଼ୋଶୀ ତୁମର
ଦେଇଛନ୍ତି ଅଗ୍ନି ଉତ୍ପାତ ଖବର।

---

୨୫- ରକ୍ଷାପାଇ/ଉଦ୍ଧାର ପାଇ

କେ ପୋଡ଼ିଲା ଘର, କେ ସହେ ଗଞ୍ଜଣା
ଏ ବିଚିତ୍ର ରାଜ୍ୟେ ଅନ୍ଧ ବୁଝାମଣା ।
ହେଲା ଗୃହଦାହ ସଙ୍ଗେ ଅର୍ଥନାଶ,
ପରେ ପ୍ରାଣପୀଡ଼ା ପୁଣି କାରାବାସ ।
ବାସେ ଅଗ୍ନି ଯେହୁ ଦେଲା ଆତତାୟୀ
ତାର ଖୋଜା ନାହିଁ, ଗଲା ସେ ବା କାହିଁ ?
ଆହା ଉତ୍କଳର କେତେ ଗ୍ରାମେ ଲୋକ,
ନିରାଶ୍ରୟେ ଆଜି କରୁଛନ୍ତି ଶୋକ !
କାହା ଗୃହ ଭସ୍ମ, କାହା ଚାଷ ନଷ୍ଟ,
କାହା ପୁଅ ଭୋଗେ କାରାଗାରେ କଷ୍ଟ !
ଏଥିଲାଗି ଭାଇ ନ କର ଭାବନା
ଏ ତ ବିନା ମେଘେ କୁଳିଶ ସୃଜନା ।
ନାହିଁ ନିଜ ଦୋଷ ଯେବେ ଭଲେ ଜାଣ
ଜାଣ କିପାଁ କାହିଁ ହେଲା ଏ ଭିଆଣ,
ନ କର ଶୋଚନା ରଖ ଧର୍ମେ ସାକ୍ଷୀ,
ଗୂଢ଼ ବ୍ୟୂହ ଭେଦେ ସେ ଅଦୃଶ୍ୟ ଆଖି ।
ବିହିଲା ତୁମ୍ଭର ଯେହୁ ଏ ବିପତ୍ତି
ଜାଣ ସେ ପାପୀର ନାହିଁ ଭଲ ଗତି ।
ନିଜ କଲା କର୍ମ ଭୋଗେ ନିଜେ ନର
ଏଡ଼ି ନ ପାରେ ତା ବ୍ରହ୍ମା ହରିହର ।
ଧର୍ମ-ନିକିତିରେ ହୁଏ ଯେ ତଉଲ
ପରମାଣୁ ତହିଁ ଯାଏ ନାହିଁ ଭୁଲ ।
ଇତର ଜନର କଥା କିବା ଛାର,
କେତେ ଜାତି କେତେ ବ୍ୟକ୍ତି ବଳିଆର;
ନିଜ କର୍ମଦୋଷେ ଯାଇଛନ୍ତି ନାଶ,
ପ୍ରମାଣ ତହିଁର ଶାସ୍ତ୍ର ଇତିହାସ ।
ଜତୁଗୃହ ଜାଳି ମାନୀ ଦୁର୍ଯ୍ୟୋଧନ,
ଜାଣିଛ ଲଭିଲା କିପରି ନିଧନ ।
ନ ନେଲା ସେ କଂସ କେତେ ଶିଶୁପ୍ରାଣ,
କହ କେତେ ଦିନ ରହିଲା ତା ଟାଣ ?
ପଶ୍ଚିମ-ରାଇଜେ ହେରଡ଼[୨୬] ନୃପତି
ଥିଲା କଂସ ସମ ଦୁରାତ୍ମା ଦୁର୍ମତି ।

୨୬- ଅତ୍ୟାଚାରୀ ରୋମାନ୍ ସମ୍ରାଟ ବିଶେଷ

ପ୍ରଭୁ ଯିଶୁ ପ୍ରତି ମନେ ବହି ରୋଷ,
ଶିଶୁ ହତ୍ୟା ଆଦି କଲା ନାନା ଦୋଷ ।
ଥିଲା ସେହିପରି ମିଶରେ ଫେରସ,
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।
ଶାସ୍ତ୍ର-ପୁରାଣର ବୁଝି ଏ ଚରିତ
ନ କର ବିପଦେ ଚିତ୍ତ ବିଚଳିତ ।
ମନେରଖ ଭାଇ ମହାତ୍ମା ଭାଷଣ,
ଆମ ପାପ ଫଳେ ଆମର କଷଣ ।
ହେଲେ ଆତ୍ମଶୁଦ୍ଧି ସୁନିର୍ମଳ ମତି,
ପ୍ରକାଶିବ ତେଜ ସମ୍ପଦ ଶକତି ।
ଏ ବିଶ୍ୱାସ ସଦା ହୃଦେ ଦୃଢ଼େ ଧର,
ଗୃହଦାହ ଯୋଗୁଁ ଛାଡ଼ ବୃଥା ଡର ।
ବିପଦ ପ୍ରଭୁଙ୍କ କଷଟି-ପାଷାଣ,
ପରଖନ୍ତି ତହିଁ ନରହୃଦ ଟାଣ ।
ବିଦଗଧ[୨୭] ହେଲେ ବିପଦ-ଅନଳେ
ଭସ୍ମ ନୋହି ଯେହୁ ଦାଉ ଦାଉ ଜଳେ,
ସେହି ଏକା ଶୁଦ୍ଧ ସୁବର୍ଣ୍ଣ-ହୃଦୟ;
ଲଭେ ଆଶ୍ୱାସନା ଅଭୟ ବିଜୟ ।
ହେଲା ଗୃହେ ଯେଉଁ ଅଗ୍ନି ପ୍ରଜ୍ୱଳିତ
ନୁହେଁ ବୃଥା ତାହା, ବିଧାତା ଇଙ୍ଗିତ ।
ବୁଝିଲେ ଦେଖିବ ତହିଁ ଗୂଢ଼ ତତ୍ତ୍ୱ
ଜାଳ ହୃଦେ ଅଗ୍ନି ଶୁଦ୍ଧକର ସତ୍ତ୍ୱ ।
ବାସୁଁ ଲିଭିଅଛି ବାହ୍ୟ ହୁତାଶନ,
ଅନ୍ତରେ ଅନଳ ଜଳୁ ଅନୁକ୍ଷଣ ।
ସତ୍ୟ-ବହ୍ନି ବର୍ଚ୍ଚେ[୨୮] ଦହୁ ମଳିନତା,
ପରକାଶୁ ନର-ପରାଣେ ଦେବତା ।
ହେଉ ଗୃହ ନାଶ ଅବା କାରାବାସ,
ଯାଉ ପଛେ ପ୍ରାଣ ନ ଯାଉ ବିଶ୍ୱାସ ।
ସତ୍ୟ-ଶାନ୍ତି-ପଥେ ଚାଲ ଅବିରତ,
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।

---

୨୭- ଭସ୍ମୀଭୂତ/ପୋଡ଼ି; ୨୮- ତେଜରେ

ଚଳାଅ ଅରଟ ଛାଡ଼ି ମନୁ ଭୀତି,
ତେଜ ଉଚ୍ଚ ନୀଚ ଘୃଣା ଭେଦ-ନୀତି ।
ଚୋରି ନାରୀ ନିଶା ଆଦି ଦୁରାଚାର,
ନ କରୁଁ ଦୂଷିତ ଗ୍ରାମ ପରିବାର ।
ଏ ଆଚାରେ ହେବ ଜଗତ ମଙ୍ଗଳ,
ଯଥା କାଳେ ମେଘ ବରଷିବ ଜଳ ।
ଧନ ଧାନ୍ୟେ ସୁଖୀ ହେବେ ପ୍ରଜାଗଣ,
ନ ଦେଖ କି ଭାଇ ଏ ଶୁଭ ସୂଚନ ?
ଦେବଦୂତ ରୂପେ ପ୍ରଚାରି ସନ୍ଦେଶ
କରନ୍ତି ମହାତ୍ମା ନିଜ କାର୍ଯ୍ୟ ଶେଷ ।
ହେ ଉତ୍କଳବାସି, ସେ ସନ୍ଦେଶମାନ,
କର୍ମେ ଲାଗ ସଦା ହୋଇ ସାବଧାନ ।
ଚାଲ ଏହି ପଥେ ମିଳିବ ମୁକତି
ଘେନ ମୋର ଏହି ବିଦାୟ ବିନତି ।
ହୋଇଅଛି ଏବେ ଦିବା ଅବସାନ,
ଭଦରଖେ ଆସି ପହଞ୍ଚିଛି ଯାନ ।
ଭଦରଖ ମୋର ଅତି ପ୍ରିୟସ୍ଥାନ,
ଏଠା କର୍ମେ ମୋର ପହିଲି ସମ୍ମାନ ।
ଏଠା ବାହାଦୁର ବଡ଼ ପରଚଣ୍ଡ,
ତାଙ୍କ ଦୟାରେ ମୋ ଆଦ୍ୟ କାରାଦଣ୍ଡ ।
ସାନ ବଡ଼ କେତେ କର୍ମୀ ନିଷ୍ଠାପର,
ଦେଖିଲେଣି କେତେ ଥର ମାମୁଁଘର ।
ତଥାପି ସ୍ୱରାଜ୍ୟ ଯୋଗ ନୁହେଁ ଊଣା,
ବଢ଼ଇ କର୍ମୀଙ୍କ ବଳ ଚତୁର୍ଗୁଣା ।
ପଡ଼ିଲେ ସମିଧ[୨୯] ଆହୁତି ଅନଳେ
ନ ଲିଭି ସେ ପୁଣି ଦାଉ ଦାଉ ଜଳେ ।
ପଦାଘାତ କେହି କଲେ ନାଗ-ଚୂଳେ,
ନାଗ କି ପଳାଏ ପରାଣ ଆକୁଳେ ?
ଭଦରଖ କର୍ମୀ ଧନ୍ୟ ତୁମ୍ଭ ବଳ !
ଏପରି ସାଧକ ଲୋଡ଼ଇ ଉତ୍କଳ ।

୨୯- ହୋମରେ ବ୍ୟବହୃତ କାଠ

ତେଜି ସବୁ ମାୟା ପରିବାର ଭୋଗ,
ସାଳନ୍ଦୀ-ପୁଳିନେ ଆରମ୍ଭିଛ ଯୋଗ ।
'ମନ୍ତ୍ର ସିଦ୍ଧି କିମ୍ବା ଶରୀର ପାତନ'
ଜାଣେ ମୁଁ କରିଛ ଏହି ମହାପଣ ।
ଏହି ପଣ ଏକା ଭଦ୍ରଖ ଉଚିତ
ସାଧୁ ସମାଗମେ ଯା ରେଣୁ ପବିତ୍ର ।
ନୀଳାଚଳଯାତ୍ରୀ ପ୍ରେମିକ ନିମାଇଁ
ଥିଲେ ପରା ଏଥି କେତେ ଦିନ ପାଇଁ ।
ସେ ଶୁଭ ଦିନର ପୁଣ୍ୟ ନିଦର୍ଶନ,
ରଖିଛି ଭଦ୍ରଖ କରି ଗଣ୍ଠିଧନ ।
ଏବେ ପୁଣି ହେଲେ ଗାନ୍ଧୀ ମହାମତି
ଭଦ୍ରଖ ଅତିଥି ଅହିଂସା ମୂରତି ।
ଭଦରଖବାସୀ ହିନ୍ଦୁ ମୁସଲମାନ
ଏ ଆତିଥ୍ୟ ନୁହେଁ ସାମାନ୍ୟ ସମ୍ମାନ
ଉତ୍ତର କାଳକୁ ପୁଅ ନାତି ପାଇଁ
ଏ ସୌଭାଗ୍ୟ ସ୍ମୃତି ରଖିବ ତ ଭାଇ ?
ଛାଡ଼ ତେବେ ମନୁଁ ଭେଦ ଅଭିମାନ,
ବେଦ କୋରାନରେ କର ସମଜ୍ଞାନ ।
ହିନ୍ଦୁ ମୁସଲମାନ ବୌଦ୍ଧ ଖ୍ରୀଷ୍ଟିୟାନ
ଶିଖ ଜୈନ ଯେତେ ଭାରତ-ସନ୍ତାନ ।
ଯେତେ ଧର୍ମ, ଯେତେ ବର୍ଣ୍ଣ-ଜାତି-କୁଳ
ଭାରତ-ଜନନୀ ସମସ୍ତଙ୍କ ମୂଳ ।
ଏକ ଆଶା ଏକ ଲକ୍ଷ୍ୟ ଏକ ଧ୍ୟାନ,
ଏକତ୍ର ଅନ୍ତୁଡ଼ି ଏକତ୍ର ଶ୍ମଶାନ ।
ଏକ କର୍ମଖେଳ, ଏକ ମାତୃପଦେ
କର ଏକପ୍ରାଣ ସମ୍ପଦେ ବିପଦେ ।
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି ।
ଭଦରଖ ଭାଇ ହିନ୍ଦୁ ମୁସଲମାନ,
ଜାଣେ ମୁଁ ଧରିଛ ହୃଦେ ବଡ଼ ଟାଣ ।
କେତେ ପ୍ରଲୋଭନ, କେତେ ପ୍ରରୋଚନା,
କେତେ ବାଧାବିଘ୍ନ, କେତେ ଭୟମନା,

ଏଡ଼ିଅଛ ସବୁ ନିର୍ଭୀକ ଅନ୍ତରେ,
ଚାଲିଅଛ ଦମ୍ଭେ ସ୍ୱରାଜ-ପଥରେ ।
ରଖ ଏହି ଦମ୍ଭ ହୁଡ଼ ନାହିଁ ରାହା[୩୦],
ହୁଅନ୍ତୁ ବିପଦେ ପ୍ରଭୁ ତୁମ୍ଭ ସାହା ।
ଭଦରଖବାସି, ଆଉ ଏକ କଥା
ପଡ଼େ ଏବେ ମନେ ଦିଏ ମର୍ମବ୍ୟଥା ।
ଯେତେ କାଳ ମୋର ଥିବ ଭବେ ଆୟୁ,
ବହୁଥିବ ଯେତେଦିନ ପ୍ରାଣବାୟୁ;
ଥାଏଁ ଯହିଁ ତହିଁ ଦୂରେ ବା ନିକଟେ,
ରହିବ ସେ ଦୁଃଖ-ଦାଗ ଚିତ୍ତପଟେ ।
ଦୁଃଖିନୀ କନିକା କରୁଣ କୁହାଟ[୩୧]
ଲାଗେ ଯେହ୍ନେ ଭେଦି ବିଲ ବନ ପାଟ,
ସାଳନ୍ଦୀ ସଲିଳେ ପ୍ରତିଧ୍ୱନି ତାନେ
କୁଳିଶ ନିନାଦ ବାଜଇ ମୋ କାନେ ।
ଭଦ୍ରଖ କନିକା ଚିର ପ୍ରତିବେଶୀ
କନିକା ଦୁଃଖ କି କହିବି ବିଶେଷି ।
ଜାଣିଛ, ଶୁଣିଛ ସବୁ ବିତିପାତ,
ପଡ଼ୋଶୀ ସେନେହେ ସହିଛ ଆଘାତ ।
ତ୍ରାସିତ[୩୨] କନିକା ପ୍ରଜା ପ୍ରତି ସଦା
ରଖିଥିବ ଭାଇ ସୋଦର-ଶରଧା ।
କନିକା ଯିବାକୁ ବାଟ ଭଦରଖ,
ଥାନ୍ତା ଯେବେ ମୋର ବିହଙ୍ଗମ ପକ୍ଷ,
ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ
କନିକା ପ୍ରଜାଙ୍କୁ ରିକ୍ତ ଭଙ୍ଗା ଘରେ ।
ଆଉଁସି ପିଠିର ପ୍ରହାର-ପରାସ
ହରି ପାଇଥାନ୍ତି ପରାଣେ ଆଶ୍ୱାସ ।
ପତରପୁରର ସର ସନ୍ନିଧାନେ
ମଲେ ପ୍ରଜା ବେନି ଯହିଁ ଅଗ୍ନିବାଣେ;
ନିରୀହ ନିର୍ଦ୍ଦୋଷ ପବିତ୍ର ଶୋଣିତ
କରିଛି କନିକାଭୂମି ଯହିଁ ସିକ୍ତ;
ସେ ଶୁଦ୍ଧ ମୃତ୍ତିକା ଲଗାଇ ମୁଁ ଶିରେ,

୩୦- ରାସ୍ତା/ପଥ, ୩୧- ଡାକ/ଚିତ୍କାର; ୩୨- ଭୟଭୀତ

ତେଜି ନେତ୍ରନୀର ସରୋବର ତୀରେ,
ଲଭିଥାନ୍ତି ଥରେ ଅନ୍ତରେ ସାନ୍ତ୍ୱନା,
ଅପୂର୍ଣ୍ଣ ରହିଲା ଆହା ଏ ବାସନା !
ଲୋଡ଼ିଥିଲେ କେତେ ଥର ମୋ ଆଗମ,
ଆସି ନ ପାରିଲି କେବେ ମୁଁ ଅଧମ ।
ଯାଇଥିଲି ଥରେ ରାଜ ଆମନ୍ତ୍ରଣେ,
ମରୁଥିଲେ ଲୋକେ ଯେବେ ଅନଶନେ ।
ଆସିଥିଲେ ଯଥାକାଳେ ଆଉ ବାରେ
ପଡ଼ି ନ ଥାନ୍ତେ ବା ପ୍ରଜା ଅତ୍ୟାଚାରେ ।
ରହିଛି ମନେ ଏ ଚିର ଅବଶୋଷ,
ବିଦା ହୋଇଥାନ୍ତି ମାଗି ନିଜ ଦୋଷ ।
ଏହି ଯେ କନିକା, ଆସିଛି ମୁଁ ଉଡ଼ି,
କି ଦାରୁଣ ଦୃଶ୍ୟ ! ଯାଏ ଚେତା ବୁଡ଼ି ।
ଯମଦୂତ ପ୍ରାୟେ କ୍ରୂର ରାଜଥାଟ,
ବୁଲନ୍ତି ଚୌଦିଗେ ଗ୍ରାମ ହାଟ ବାଟ ।
ଲୁଟନ୍ତି ପରଜା ଘର ବାଡ଼ିଖେତ,
ମାରନ୍ତି ଚାପୁଡ଼ା କାହାକୁ ବା ବେତ;
କୁଳାଙ୍ଗନା ପରେ ଘୋର ଆକ୍ରମଣ
ବିକଳେ ବିଧୁରା[୩୩] କରଇ ରୋଦନ ।
କନିକାର ରାଜଧାନୀ ଚଉପାଶେ
ପ୍ରେତ ଆତ୍ମା ବେନି ଉଡ଼ଇ ଆକାଶେ ।
ବିନ୍ଦୁ ବିନ୍ଦୁ ରକ୍ତ ପଡ଼େ ତହୁଁ ତଳେ,
ସେ ରକ୍ତୁ ଭୀଷଣ ଅଗ୍ନିଶିଖା ଜଳେ ।
ସିଞ୍ଚି ସିଞ୍ଚି ଶୁଖେ ଗଙ୍ଗାନଦୀ ଜଳ,
ନ ଲିଭି ପ୍ରବଳ ଜଳେ ସେ ଅନଳ ।
ଶୁଭେ ଚଉଦିଗେ କାତର ଚିତ୍କାର,
ପଳାଏ ପରଜା ଛାଡ଼ି ଘରଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ଗୋଗୋଷ୍ଠେ ବିକଟାଳ ରାବ ।
ମହା ବିପର୍ଯ୍ୟୟ, ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ କନିକା ।

୩୩- ଦୁଃଖିନୀ/ଭୀତା

ବହେ ଅଣଚାଶ ଝଡ଼ ଝଞ୍ଜା ବାତ,
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ।
ଏ କି ମୋ କଳ୍ପନା-ସତ୍ୟ ନା ସ୍ୱପନ ?
ବାଜେ ରେଳଘଣ୍ଟି, ଆସିଲା ଚେତନ।
ଆଉ ଏକ ଘଣ୍ଟି ଛାଡ଼ିଦେବ ରେଳ,
ଭଦରଖେ ପୂରି ଆସିଲା ମୋ ବେଳ।
ଥାଅ ଗୋ ସାଳନ୍ଦି ! ଥାଅ ଭଦରଖ,
ଦୁଃଖିନୀ କନିକାଠାରେ ସ୍ନେହ ରଖ।
ଥାଅ ଗୋ କନିକା ! ଭୋଗି ଭାଗ୍ୟ-ଲେଖା,
ବଞ୍ଚିଥିଲେ ପୁଣି ହେବ କେବେ ଦେଖା।
ନ ତେଜ ସାହସ, ନିରାଶ ନ ହୁଅ,
ବହିଛି ନୟନୁ ତୋର ବହୁ ଲୁହ।
ତୋର ଶତ ଶତ ନିରୀହ ସନ୍ତାନ,
ସହିଛନ୍ତି କାରାକ୍ଲେଶ ଅପମାନ।
ସହି ଏତେ କଷ୍ଟ ମନେ ନାହିଁ ଦ୍ୱେଷ,
ନାହିଁ ହୃଦେ ହିଂସା ରୋଷ ସମାବେଶ।
ମଲେ କିନ୍ତୁ ହାତ ନାହାନ୍ତି ଉଠାଇ,
କର୍ମ କରିଛନ୍ତି ଧର୍ମ ଅନୁଯାୟୀ।
ଭୋଗିଛୁ ପରାଣେ ପୀଡ଼ା ଆୟେ କ୍ଷତି,
ଜାଗିଅଛି କିନ୍ତୁ ପରଜା ଶକତି।
ହେଉ ପଛେ ହେବ ଆଉ ଯେ ଯାତନା,
ସତ୍ୟେ ଚଳି କର ସତ୍ୟର ସାଧନା;
ସତ୍ୟେ ମାନବର ସତ୍ତ୍ୱ ପରକାଶେ
ଭୀମ ରାଜଶକ୍ତି ନାଶେ ସତ୍ୟ ପାଶେ।
ଭୋଗି ଯେବେ ପ୍ରଜା ଘୋର ଅତ୍ୟାଚାର,
ଆତୁରେ କରଇ କରୁଣ ଚିତ୍କାର,
ନୀରବେ ଗଡ଼ାଏ ନୟନୁ ଲୋତକ,
ହୁଏ ଭୟେ ତାର ଛାତି ଦକ ଦକ,
ନିରାଶ ହୃଦୟ ବହେ ଦୀର୍ଘଶ୍ୱାସ,
ହେ କନିକାବାସି ! ରଖ ଏ ବିଶ୍ୱାସ,
ସେ ଉଷ୍ଣ ନିଶ୍ୱାସ ଅଶ୍ରୁ ବିସର୍ଜନ,
ସେ ଦାରୁଣ ନାଦ ପ୍ରାଣ ପ୍ରକମ୍ପନ,

ନୁହେଁ ନିରର୍ଥକ, ନ ଯାଏ ବିଫଳ,
ହୁଏ ସେ ଲୋତକେ ହିମାଚଳ ଜଳ ।
ସେ ନାଦେ କମ୍ପଇ ସ୍ୱର୍ଗ ସିଂହାସନ,
ଶୀତଳ ସେ ଉଷ୍ଣ ଶ୍ୱାସେ ହୁତାଶନ ।
ସେ ପ୍ରାଣ ପ୍ରକମ୍ପେ କମ୍ପେ ବସୁମତୀ;
କାଳେ ପ୍ରକଟଇ ଏ ଭୀମ ଶକତି ।
ପ୍ରପୀଡ଼ିତ ପ୍ରଜା ହୃଦୟ ନିଃସାର,
ସଞ୍ଚେ ସାବଧାନେ କାଳ ବଳିୟାର ।
ଅଲକ୍ଷିତେ କରେ ଶକ୍ତି ଆୟୋଜନ,
ନ ଦେଖଇ ଯାହା ଅତ୍ୟାଚାରୀ ଜନ;
ଆସେ ଯେବେ ବେଳ ପାଚେ କର୍ମଫଳ,
ସହସା ସେ ବଳେ କମ୍ପେ ଜଳ ସ୍ଥଳ ।
ଦୁଃଖିନୀ କନିକା ନ ହୁଅ ଆତୁର,
ହେଉ ନିର୍ଯ୍ୟାତନ ଧନଦ୍ରବ୍ୟ ଚୂର ।
ଧର୍ମପକ୍ଷେ ଜୟ ସଦା ସୁନିଶ୍ଚୟ,
ରଖ ହୃଦୟରେ ଏ ଦୃଢ଼ ପ୍ରତ୍ୟୟ ।
ପାହି ଆସିଅଛି ତୋର ଦୁଃଖ-ରାତି,
ରଖ ନିଜ ଦାବୀ ଦମ୍ଭ କର ଛାତି ।
ନିଜ ଅଧିକାର ବୁଝି ଛାଡ଼ି ଭୟ,
ଧୈର୍ଯ୍ୟ ଧର, ହେବ ନ୍ୟାୟଯୁଦ୍ଧେ ଜୟ ।
ପାଇବେ ତୋ ପୁଏ ନ୍ୟାୟ ଅଧିକାର,
ଘୁଞ୍ଚିବ ଉତ୍କଟ ଚିର ଅତ୍ୟାଚାର ।
ତୋ ଆଦର୍ଶ ହେଉ ଉତ୍କଳେ ଅକ୍ଷୟ,
ଜାଗୁ ପ୍ରଜାକୁଳ ତୁଟୁ ରାଜଭୟ ।
ମୋ ଶୁଭ କାମନା, ସ୍ନେହ ନେତ୍ରଜଳ
ଘେନ, ଏଥି ମୋର ଏତିକି ସମ୍ବଳ ।

ଥାଅ ମା ସାଳନ୍ଦୀ ତଟ-ବିହାରିଣୀ
ଜୟ ଭଦ୍ରକାଳୀ ସଙ୍କଟତାରିଣୀ !
କରେ ଏହି ଦୂରୁ ଚରଣେ ପ୍ରଣତି,
ଦିଅ ମୋ ହୃଦୟେ ସାହସ ଶକତି ।
ମୋ ସାଧନା ପୁଣ୍ୟ ପୀଠ ହେଉ କାରା,
ମୋ ପ୍ରାଣ ପ୍ରତିଷ୍ଠା କର ତହିଁ ତାରା ।

କର ମା କରୁଣା ଭଦରଖ ପ୍ରତି,
ଭଦରଖବାସୀ ତୋ ଶିଶୁ ସନ୍ତତି ।
ହୁଅନ୍ତୁ ବଳିଷ୍ଠ କର୍ମଠ ସାହସୀ,
ଗଲେ ଯାଉ ପ୍ରାଣ ବାଜୁ ବୁକେ ଅସି ।
ନ ଫେରନ୍ତୁ କେବେ ପଛକୁ କାତରେ,
ସ୍ୱରାଜ୍ୟର ଶାନ୍ତି-ସଂଗ୍ରାମ ପ୍ରାନ୍ତରେ ।
କେତେ କି ଭାବନା ଜାଗେ ମୋ ଅନ୍ତରେ,
ଜଣାଇବି କିବା ଏବେ ତରତରେ ।
ଥିଲେ ମୋର ବଳ ଓହ୍ଲାଇ ଏ କ୍ଷଣେ
କହିଥାନ୍ତି ସବୁ ଶ୍ରୀପଦ ଦର୍ଶନେ ।
ମାତ ଜଗଦମ୍ବା କୁଳକୁଣ୍ଡଳିନୀ
ଅଗୋଚର ତୋର କିବା ଗୋ ଭାବିନି !
ପ୍ରପୀଡ଼ନେ ପ୍ରଜା କରେ ହା ହା ନାଦ,
ମିଳି ନାହିଁ କି ମା, ତୋତେ ଏ ସମ୍ବାଦ ?
ଉନ୍ମୁକ୍ତ ପବନେ ଉନ୍ମୁକ୍ତ ଅମ୍ବରେ
ସ୍ୱଚ୍ଛନ୍ଦ ପରାଣେ ବିହଙ୍ଗ ସଞ୍ଚରେ ।
ବନେ କରେ ପଶୁ ସ୍ୱଚ୍ଛନ୍ଦେ ବିହାର,
ନିର୍ଭୀକ ସେ, ନୁହେଁ ଅଧୀନ କାହାର ।
ତିମି ତିମିଙ୍ଗିଳ[୩୪] ମତ୍ସ୍ୟ ଜଳଚର
ଖେଳନ୍ତି ସଲିଳେ ନ ଜାଣନ୍ତି ଡର ।
ଭାରତେ କେବଳ ନର ତହୁଁ ହୀନ,
ନୁହେଁ ସେ ସ୍ୱଚ୍ଛନ୍ଦ, ନୁହେଁ ସେ ସ୍ୱାଧୀନ ।
ନାହିଁ ରବିତଳେ କାହିଁ ତାର ସ୍ଥାନ,
ସର୍ବତ୍ର ତାଡ଼ନା ଘୋର ଅପମାନ ।
ନିଜ ବାସେ ହେଲେ ନାହିଁ ତାର ଶାନ୍ତି,
ଭୋଗଇ ଗଞ୍ଜଣା କାହିଁ କେତେ ଘାନ୍ତି[୩୫] ।
ଭାରତ-ସନ୍ତାନ ଘୃଣ୍ୟ ଉପେକ୍ଷିତ,
ଭାରତ ଭାରତୀ ଶୃଙ୍ଖଳା ପିହିତ[୩୬] ।
ଭାରତ ବିଭବେ ଅପର ବିଳାସୀ,
ଭାରତ-ନିବାସୀ ଚିର ଉପବାସୀ ।

---

୩୪- ତିମିକୁ ଗିଳିପାରୁଥିବା ବିରାଟକାୟ ମାଛବିଶେଷ; ୩୫- ଥର; ୩୬- ଆଚ୍ଛାଦିତ/ ଖୋଳରେ ରକ୍ଷିତ ।

ନହୁଷ ଯଯାତି ଶିବି ମହାଯଶା
ଶାସିଲେ ଯେ ରାଜ୍ୟ ତାର ଏହି ଦଶା !
ରାମ ଯୁଧିଷ୍ଠିର ଯାର ନରପତି,
ସେ ପ୍ରଜାକୁଳର ଆଜି ଏ ଦୁର୍ଗତି !
ସମଦର୍ଶୀ ଗୁଣେ ଯହିଁ ଆକବର,
ତୋଷିଲେ ସକଳ ପରଜା-ଅନ୍ତର,
ସେ ରାଜ୍ୟର ପ୍ରଜା କେତେ କାଳ ଆଉ,
ଭୋଗିବେ ଉତ୍କଟ ରାଜନୀତି ଦାଉ !
ଯେତେ ଦେବାଦେବୀ ଅଛନ୍ତି ଉତ୍କଳେ,
ଯାଆନ୍ତି ପରା ସେ ସର୍ବେ ନୀଳାଚଳେ ?
ବସେ ପରା ତହିଁ ଦେବସଭା ନିତି,
ପଡ଼େ ନାହିଁ କି ଏ ରାଜ୍ୟ ଗତି ସ୍ଥିତି ?
ପ୍ରଜା ଭୋଗେ ଯେତେ ଦୁଃଖ ଦୁରାଚାର ।
ସେସବୁ ତହିଁ କି ନ ହୁଏ ବିଚାର ?
ନ ହେଲେ ମା ଥରେ ପ୍ରଭୁଙ୍କ ନିକଟେ;
ଏ ଦୁଃଖ ଗୁହାରି କରିବୁ ଆକଟେ ।
ବିସ୍ତାରି କହିବୁ ସବୁ କଥା ଟାଣେ;
ଘେନିବେ ଯେପରି ଦିବ୍ୟ ଅବଧାନେ ।
କରୁଣା କଟାକ୍ଷେ ଚାହାନ୍ତୁ ସେ ବାରେ,
ବାଜିବ ସ୍ୱରାଜ୍ୟ-ଶଙ୍ଖ ସିଂହଦ୍ୱାରେ ।
ଉଡ଼ିବ ଅମ୍ବରେ ସ୍ୱରାଜ୍ୟ-କେତନ
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ-ଶାସନ ।
ଦେବପ୍ରତିଷ୍ଠିତ ମହର୍ଷି ସମ୍ମତ
ଜାଣିବ ଭାରତ, ଦେଖିବ ଜଗତ ।
ବିରାଜିବ ବିଶ୍ୱେ ଏକତା ସମତା,
ଶାନ୍ତି ଉଚ୍ଚାରିବେ ସ୍ୱରଗେ ଦେବତା ।”

———

# ପ୍ରାକ୍-ସୂଚନା

ହଜାରିବାଗ ଜେଲରେ ଅଶ୍ରମ କାରାଦଣ୍ଡ ଭୋଗକରୁଥିଲାବେଳେ କବି ଗୋପବନ୍ଧୁ ଲାଭକରିଛନ୍ତି ପୁନର୍ଜନ୍ମ । 'ଅବକାଶ ଚିନ୍ତା' ବ୍ୟତୀତ ତାଙ୍କର ଅନ୍ୟ ପଦ୍ୟ-ରଚନାଗୁଡ଼ିକ ଦୁଇବର୍ଷର କାରାବାସ ମଧ୍ୟରେ ଲିଖିତ । ଏହି କ୍ରମରେ ତାଙ୍କର ଦ୍ୱିତୀୟ ପଦ୍ୟ-ରଚନା ହେଉଛି 'ଧର୍ମପଦ' । ୧୯୨୪ ମସିହା ଜୁନ୍ ୨୬ ତାରିଖରେ ହଜାରିବାଗ ଜେଲରୁ ମୁକ୍ତି ପାଇଲାପରେ ପ୍ରଥମେ ସେ 'ଧର୍ମପଦ'କୁ ଏକ ଭୂମିକା ସହ ସତ୍ୟବାଦୀ ପ୍ରେସ୍‌ରୁ ପ୍ରକାଶ କରନ୍ତି ଓ 'ସମାଜ'ର ତା ୨୯.୮.୧୯୨୫ରିଖ ସଂଖ୍ୟାରେ ଏହାର ପ୍ରକାଶନର ସମ୍ବାଦ ପ୍ରକାଶ ପାଏ । 'ଉତ୍କଳ-ସାହିତ୍ୟ'ର ଊନବିଂଶ ବର୍ଷ ଷଷ୍ଠ ସଂଖ୍ୟା (ସେପ୍ଟେମ୍ବର, ୧୯୨୫)ରେ 'ଧର୍ମପଦ'ର ପରିଚୟ ଦେଇ ବିଶ୍ୱନାଥ କର ଲେଖିଥିଲେ :

> କୋଣାର୍କର ସୁପ୍ରସିଦ୍ଧ ମନ୍ଦିର ନିର୍ମାଣ ସମ୍ବନ୍ଧରେ ବାରଶତ ଶିଳ୍ପିଙ୍କର ଅକୃତକାର୍ଯ୍ୟତା ଓ ନୈରାଶ୍ୟ, ବାରବର୍ଷ ବାଳକକର୍ତ୍ତୃକ ଏହି ମନ୍ଦିରଚୂଡ଼ା ସଂଗଠନ ଏବଂ ଶେଷରେ ଶିଳ୍ପିମାନଙ୍କୁ ଅପମାନରୁ ରକ୍ଷା କରିବାପାଇଁ ବାଳକର ଆତ୍ମବିସର୍ଜନ ଇତ୍ୟାଦିର ଯେଉଁ କିମ୍ବଦନ୍ତୀ ପ୍ରଚଳିତ ଅଛି ଏବଂ ତଦୁପଲକ୍ଷରେ ''ବାରଶହ ବଢ଼େଇର ଦାୟ କି ପୁଅର ଦାୟ'' ବୋଲି ଯେଉଁ ଉକ୍ତିଟି ଲୋକମୁଖରେ ଶୁଣାଯାଏ, ତାହାକୁ ଅବଲମ୍ବନ କରି ଗୋପବନ୍ଧୁବାବୁ ଅତି ସୁମଧୁର ଓ ସରଳ ପଦ୍ୟରେ ଏହି କ୍ଷୁଦ୍ର ପୁସ୍ତକଟି ଲେଖିଅଛନ୍ତି । ପ୍ରସଙ୍ଗକ୍ରମେ ବଡ଼ ସୁକୌଶଳରେ ଉତ୍କଳର ପୂର୍ବ ଗୌରବ ଓ ମହତ୍ତ୍ୱ ଏବଂ ମାନବର ଉଚ୍ଚ କର୍ତ୍ତବ୍ୟ ଓ ମହିମା ଇତ୍ୟାଦି ପ୍ରଖ୍ୟାପନ କରିଅଛନ୍ତି । ଗୋପବନ୍ଧୁବାବୁ ସ୍ୱଭାବକବି, ପୁଣି ଭାଷା ପ୍ରୟୋଗରେ ସୁନିପୁଣ । ତାହାଙ୍କ ହସ୍ତରେ କିମ୍ବଦନ୍ତୀଟି ଅତି ଉପାଦେୟ ରୂପ ଧାରଣ କରିଅଛି । (ପୃ. ୩୫୪)

ଚାରି ପୃଷ୍ଠାର ଭୂମିକା ସହ ଧର୍ମପଦର ପୃଷ୍ଠାସଂଖ୍ୟା ଥିଲା ସତାବନ ଓ ମୂଲ୍ୟ ଥିଲା ତିନି ଅଣା । କବିତାର ସରଳ ଓ ମର୍ମସ୍ପର୍ଶୀ ଭାଷା, ନାଟକୀୟ ଉପସ୍ଥାପନ ଓ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ସମବାୟରେ 'ଧର୍ମପଦ' ଅପୂର୍ବ ପ୍ରସିଦ୍ଧି

ଲାଭ କରିଥିଲା । 'ବାରୁଣୀ' ସାହିତ୍ୟ ପତ୍ରିକାର 'ବୁଢ଼ିଆଣୀ ଜାଲ' ସ୍ତମ୍ଭରେ 'ଧର୍ମପଦ'ର ପରିଚୟ ଦେବାକୁ ଯାଇ କୁହାଯାଇଥିଲା :

> କୋଣାର୍କ ଦେଉଳ ତୋଳିବା କାଳର ଗୋଟିଏ କିମ୍ବଦନ୍ତୀକୁ ଅନୁସରଣ କରି ପଣ୍ଡିତ ଗୋପବନ୍ଧୁ ଦାଶ ପଦ୍ୟାକାରରେ ଗୋଟିଏ ହୃଦୟସ୍ପର୍ଶୀ ଗଳ୍ପ ଲେଖିଅଛନ୍ତି । 'ଦେଶ ଓ ଦଶ'ଙ୍କ ପାଇଁ ଧର୍ମପଦ ପ୍ରାଣ ଉତ୍ସର୍ଗ କରିଥିଲା – ଦେଶ ଓ ଦଶଙ୍କ ପାଇଁ କାରାର ନିର୍ଜନ ବାସରେ ବସି ଗୋପବନ୍ଧୁ ବାବୁ କବିତା ଛଳରେ ଦେଶବାସୀଙ୍କର ଜୀବନତନ୍ତ୍ରକୁ ଆଘାତ କରିବାର ପ୍ରୟାସ କରିଅଛନ୍ତି । ଧର୍ମପଦ ପରି ଉଚ୍ଚ ଆଦର୍ଶ ଆମ ଦେଶର ପୋଥି ପୁରାଣରେ ବିରଳ ନୁହେଁ । ଗୋପବନ୍ଧୁ ବାବୁଙ୍କ ହାତରେ ଏ ଗଳ୍ପଟି ଗୋଟିଏ ନିର୍ମଳ ଉପଭୋଗ୍ୟ ବସ୍ତୁ ହୋଇଛି ।
>
> (ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା : ବସନ୍ତ, ୧୩୩୩ ସାଲ; ପୃ.୧୧୯)

'ଧର୍ମପଦ'ର ଲୋକପ୍ରିୟତା ହେତୁ ଗୋପବନ୍ଧୁଙ୍କ ଜୀବଦ୍ଦଶାରେ ମଧ୍ୟ ଏହି ପୁସ୍ତକର ଏକାଧିକ ସଂସ୍କରଣ ହୋଇଛି ।

ସଂପାଦକ

# ଭୂମିକା

ବାଲ୍ୟକାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟ ସହଜ ଉଦ୍ୟମ ମଧ୍ୟ ସେଆଡେ କିଛି କରିଥିଲି । ମାତ୍ର ଘଟଣା ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିରଦିନ ସେ ଆଶା ମଉଳିଛି । ''ଧର୍ମପଦ'' ସେ ଆଶାର ଅଙ୍କୁର ନୁହେଁ, ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର । ବନ୍ଦିଶାଳାର ନିର୍ଜନ ପ୍ରକୋଷ୍ଠରେ ଏକ ସନ୍ଧ୍ୟାରୁ ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଏକାକୀ ଆବଦ୍ଧ ହୋଇ ଅନେକ ସମୟରେ ଉନ୍ନିଦ୍ରାବସ୍ଥାରେ ଯେସବୁ ଚିନ୍ତା ମନକୁ ଆସୁଥିଲା, ''ଧର୍ମପଦ'' ତହିଁରୁ ଅନ୍ୟତମ । ଦେଶ ଦଶ ନିମନ୍ତେ ଆତ୍ମୋତ୍ସର୍ଗରେ କି ସୁଖ ଓ ଗୌରବ ଅଛି, ଉତ୍କଳର ଚିରକଥିତ ଏହି କିମ୍ବଦନ୍ତୀରେ ତାହା ସୁସ୍ପଷ୍ଟ ବିବୃତ ହୋଇଅଛି, ଯଦ୍ଵାରା ସର୍ବାଧିକ ସଂଖ୍ୟକ ଲୋକଙ୍କର ସର୍ବାଧିକ ପରିମାଣରେ ହିତ ହୁଏ, ତାହାହିଁ ମାନବର କର୍ତ୍ତବ୍ୟ । ନୀତିଶାସ୍ତ୍ରର ଏହି ତତ୍ତ୍ୱ ପ୍ରକାଶ କରିବାର ପ୍ରୟୋଜନସ୍ଥଳେ, ''ବାରଶହ ବଢ଼େଇରେ ଦାୟ କି ପୁଅରେ ଦାୟ''– ଏକଥା ଓଡିଶାର ଜନସାଧାରଣ ବ୍ୟବହାର କରିଥାନ୍ତି । ମାତ୍ର ଏତେ ସୁନ୍ଦର କିମ୍ବଦନ୍ତୀର ଆଖ୍ୟାନ ଉତ୍କଳ ସାହିତ୍ୟରେ କୌଣସିଠାରେ ଏ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇନାହିଁ । ଏପରିକି ଏଥିର ମୂଳକଥା ଅନେକଙ୍କୁ ଜଣା ନାହିଁ । ଏ ଜନଶ୍ରୁତି ସମ୍ବନ୍ଧରେ ଲୋକମୁଖରେ ଯାହା କଥିତ ହୋଇଥାଏ, ସେଥିରେ ଶୁଣାଯାଏ ଯେ ରାତିକ ମଧ୍ୟରେ ପୁଅ ଦେଉଳ ପୂର୍ଣ୍ଣ କରିଦେବାରୁ ବାରଶହ ବଢ଼େଇଙ୍କ ଖାତିରରେ ନିଜେ ବାପ ପୁଅକୁ ଦେଉଳ ଉପରୁ ଗଡାଇଦେଇ ମାରିପକାଇଥିଲା । ମାତ୍ର ଏହା ଅସ୍ୱାଭାବିକ – ଏପରି କରିବାକୁ କୌଣସି ବାପର ହାତ ଯିବ ନାହିଁ; ପ୍ରବୀଣ ବିଶାରଦ ବାରଶତ ଶିଳ୍ପୀ ଏପରି କାର୍ଯ୍ୟରେ ବାପକୁ ଅନୁରୋଧ କରିବା ଅସଙ୍ଗତ । ବିଚକ୍ଷଣ ବାରଶହ ବଢେଇ ଯେ କାର୍ଯ୍ୟ କରିବାକୁ ଅସମର୍ଥ, ବାରବର୍ଷର ବାଳକ ପକ୍ଷରେ ତାହା ସମ୍ପାଦନ କରିବା ଅସାଧ ହୋଇପାରେ; ମାତ୍ର ଅସମ୍ଭବ ନୁହେଁ । ମାନବ-ସମାଜରେ ଏପରି ଅଦ୍ଭୁତ ଶକ୍ତି ଓ ପ୍ରତିଭା ମଧ୍ୟେ ମଧ୍ୟେ ପ୍ରକାଶ ପାଇଥାଏ । ଧ୍ରୁବ, ପ୍ରହ୍ଲାଦ, ଏକଲବ୍ୟ, ଶୁକ, ଅଭିମନ୍ୟୁ ପ୍ରଭୃତି ପୁରାଣର କଥା; ଶଙ୍କରାଚାର୍ଯ୍ୟ, ବାଦଲ ପ୍ରଭୃତିଙ୍କ ଅଦ୍ଭୁତ ପ୍ରତିଭା ଐତିହାସିକ ସତ୍ୟ । ଆଜିକାଲି ଯୁଗରେ ମଧ୍ୟ ଏଭଳି ଘଟଣାର ଏକାବେଳକେ ଅଭାବ ଦେଖାଯାଏ ନାହିଁ । ସମ୍ପ୍ରତି

ବ୍ରହ୍ମଦେଶରେ ପାଞ୍ଚବର୍ଷର ଗୋଟିଏ ବାଳକ ଧର୍ମ ବିଷୟକ ନାନା ଗୂଢ଼ତତ୍ତ୍ୱ ପ୍ରଚାର କରୁଅଛନ୍ତି । ତାଙ୍କ ମାହାତ୍ମ୍ୟ ଓ ପ୍ରତିଭା ଦେଖି ଶତ ଶତ ଲୋକ ତାଙ୍କର ଅନୁଗାମୀ ହେଉଅଛନ୍ତି । ଏପରି ଅସାମାନ୍ୟ ଓ ଅଲୌକିକ ପ୍ରତିଭା ଦେଖିଲେ ''ଧର୍ମପଦ''କୁ କିମ୍ବଦନ୍ତୀର ଅମୂଳକ କଳ୍ପନା ବୋଲି କିଏ କହିପାରେ ? ଏକ ସମୟରେ ଶିଳ୍ପ ଓ ସ୍ଥାପତ୍ୟ ଉତ୍କଳରେ ଯେପରି ଉନ୍ନତିର ପରାକାଷ୍ଠା ଲାଭ କରିଥିଲା, ସେଥିରେ ଏଭଳି ବାଳକର ଆବିର୍ଭାବ ସ୍ୱାଭାବିକ ମନେହୁଏ ।

''ଧର୍ମପଦ''ରେ କାବ୍ୟକଳାର କୁଟିଳତା ବା ଶିଳ୍ପର ସୌକୁମାର୍ଯ୍ୟ ନିମନ୍ତେ ପ୍ରୟାସ ହୋଇନାହିଁ । ଏହି କିମ୍ବଦନ୍ତୀର ଅବଲମ୍ବନରେ ଖଣ୍ଡିଏ ଉପନ୍ୟାସ ଲେଖିବାକୁ ମନେ ବିଚାରୁଥିଲି । ମାତ୍ର ତାହାର ଆକାର ଦୀର୍ଘ ହେବ ଏବଂ ତାହା ସମୟ ଓ ଧୈର୍ଯ୍ୟସାପେକ୍ଷ । କାରାଗାରରେ ମୋ ପରି ସାଧାରଣ ପ୍ରକୃତିର ଜଣେ ବନ୍ଦୀ ପକ୍ଷରେ ସେପରି ଧୈର୍ଯ୍ୟ ଓ ମନୋଽଭିନିବେଶ ସହଜ ନୁହେଁ । ତେଣୁ ସେ କଳ୍ପନା ଛାଡି ବାଲ୍ୟ ଅଭ୍ୟାସର ବଶବର୍ତ୍ତୀ ହୋଇ କେବଳ ପଦ ମିଳାଇ ''ଧର୍ମପଦ'' ଓ ସେହିପରି ଅନ୍ୟାନ୍ୟ କେତେକ ପଦ୍ୟ ଲେଖି କାରାର କରାଳ ବିଜନତାରେ ଆତ୍ମପ୍ରସାଦ ଲାଭକରୁଥିଲି । କବିତାର ମୋହନ ମାଧୁରୀରେ ଆକୃଷ୍ଟ ନ ହେଲେ ସୁଦ୍ଧା ବିଜନବନ୍ଦୀର ନିଭୃତ ବିକ୍ଷିପ୍ତ ପ୍ରାଣର ସ୍ପନ୍ଦନରେ ସହାନୁଭୂତି କରି ''ଧର୍ମପଦ'' ପଢିବାଦ୍ୱାରା ଉତ୍କଳବାସୀ ନିଜ ଜାତୀୟ ଗୌରବରେ କ୍ଷଣକ ଲାଗି ଅନୁପ୍ରାଣିତ ହେଲେ ପରମ ପ୍ରୀତି ଓ ଆହ୍ଲାଦ ଲାଭ କରିବି ।

ଇତି

**ଗୋପବନ୍ଧୁ ଦାସ**

# ଧର୍ମପଦ

## (୧)

ବାର ବରଷର ବାଳୁତ ପୁଅ ସେ
ବୁଦ୍ଧିମନ୍ତ ସୁକୁମାର,
ଦେଖି ନାହିଁ କିବା ଶୁଣି ନାହିଁ କେବେ
କିଏ ସେ ବାପା ତାହାର ।

ଜନନୀ କୋଳରେ ବଢ଼ିଛି ଭୋଳରେ
ଆଜନମୁ ଅତି ସୁଖେ,
ମଥ ବୋଲି କେବେ ମାଛିକି ବୋଲିବା
ଆଣି ନାହିଁ ହେଲେ ମୁଖେ ।

ସ୍ୱାମୀଙ୍କ ବିରହ ଭୁଲିଛନ୍ତି ମାତା
ପୁଅ ବଦନ ଅନାଇଁ,
ଦେହରେ ଟିକିଏ ପଡ଼ିଗଲେ ଧୂଳି
ସହି ନ ପାରନ୍ତି ଚାହିଁ ।

ଶଇଶବ କାଳୁ କୁଳ କାରିଗରି,
ଶିଖାନ୍ତି ଅତି ଯତନେ,
ଯାହା ଦେଖେ ଶୁଣେ ଶ୍ରୁତିଧର[୧] ପରି
ସବୁ ସେ ରଖଇ ମନେ ।

ଶିଶୁଗଣ ମେଳେ ଦାଣ୍ଡ ଧୂଳି ଖେଳେ
କରେ କେତେ ନବ ସୃଷ୍ଟି,
ତୋଳଇ ଦେଉଳ ଗଢ଼ଇ ଅଟ୍ଟାଳୀ
ଧନ୍ୟ ବିଚକ୍ଷଣ ଦୃଷ୍ଟି ।

ଦେଖି କାରିଗରି ତା କଳା ଚାତୁରୀ
ଆଶ୍ଚର୍ଯ୍ୟ ମଣନ୍ତି ଜନେ,

---

୧- ଯେଉଁ ବ୍ୟକ୍ତି ଶୁଣିବାମାତ୍ରକେ କୌଣସି କଥା ମନେରଖିପାରେ / ଅତି ମେଧାବୀ;

କହନ୍ତି, "ଆୟୁଷ ଥିଲେ ଏ ପିଲାଟି
ହେବ କେତେ ଲୋକେ ଜଣେ ।"
ପଚାରଇ ପୁଅ ଯେବେ ଶିକ୍ଷତତ୍ତ୍ୱ
କହନ୍ତି ମାତା ଉତ୍ତରେ,
"ପଢ଼ିଲେ ଜାଣିବୁ; ସବୁ ଆରେ ଧନ
ପୋଥି ଅଛି ଆମ ଘରେ ।"
ପାଞ୍ଚ ବର୍ଷ ବେଳେ ଗ୍ରାମ ଚାଟଶାଳେ
ଓଝା ଛୁଆଁଇଲେ ଖଡ଼ି,
ଚାହୁଁ ଚାହୁଁ ପୁଅ ଅଳପ ଦିନରେ
ଗଲା ସବୁ ପାଠ ପଢ଼ି ।
ଗୀତା, ଭାଗବତ ପୁରାଣ ଚରିତ
ହୋଇଲା ଅଭ୍ୟାସ ତାର,
ଦେବାଳୟ ତୋଳା ପୁଷ୍କରିଣୀ ଖୋଳା
ହିସାବ ଯେତେ ପ୍ରକାର ।
ସଙ୍ଗ ଚାଟ କେତେ ସହି ନ ପାରନ୍ତି
ଆନେ କରନ୍ତି ଆଦର,
ସମସ୍ତଙ୍କଠାରେ ସମ ସ୍ନେହ ତାର
ନାହିଁ କେହି ପରାପର ।
ଚାହାଳିରୁ ଆସି ଘରେ ଶିଳ୍ପଶାସ୍ତ୍ର
ପଢ଼େ କରି ଏକ ଲୟ,
କାଠ ପାଷାଣରେ ଗଢ଼ଇ ମୂରତି
କେତେ ରଥ, ଦେବାଳୟ ।
ଦିନେ ଚାହାଳିରୁ ଫେରିଆସି ପୁଅ
ଉଭାହେଲା ମାତା ପାଶେ;
ଆଖି ଥନଥନ, ବଦନ ମଳିନ
ତୁଣ୍ଡରେ କଥା ନ ଆସେ ।
ପୁଅକୁ ଅନାଇ ମାତା ଅତି ଛନ୍ଦେ
ପଚାରନ୍ତି ବେଗେ ଦୁଃଖେ,
"କିପାଇଁରେ ଧନ, ବିରସ ତୋ'ମନ
ହସ ନାହିଁ କିପାଁ ମୁଖେ ?

ଚାହାଳିରୁ ଫେରି ଆନ ଦିନ କହୁ
ହରଷରେ କେତେ କଥା,
ଆଜି ତୋ ଏ ରୀତି ଦେଖି ମୋର ଭୀତି
ଲାଗଇ ପରାଣେ ବଥା ।
ଦେଇଛନ୍ତି ଦଣ୍ଡ ଅବଧାନେ ଅବା
ଗାଳିଦେଲେ ଆନ ଚାଟେ,
ହୀନିମାନ କରି କିଏ କି କହିଲା
କିବା ଦାଣ୍ଡେ ବାଟେ ଘାଟେ ?
ଫେଡ଼ି କହ ବାବୁ, ଘଟିଛି ଯା ସବୁ
ତୁଟୁ ମୋ ମନୁ ସନ୍ଦେହ,
ମୁଁ ତ ଜାଣେ ତୋର ଗୁଣ ଆଚରଣେ
ସମସ୍ତେ କରନ୍ତି ସ୍ନେହ ।
କାନ୍ଦ କାନ୍ଦ ହୋଇ କିପାଇଁ ରେ ବାଇ
କଥା ନ ଆଣୁଛୁ ମୁଖେ ?
ନ ଜାଣୁ କି ବାବୁ ତୋ' ଏ ଭାବ ଦେଖି
ବଜ୍ର ପଡ଼ଇ ମୋ ବୁକେ !
ଲକ୍ଷେ ଦେବଦେବୀ- ପାଦ ସେବି ସେବି
ପାଇଛି ରେ ତତେ ଧନ,
କେତେ ମରି ମରି ରଙ୍କୁଣୀ ସଞ୍ଚାଳି
ତୁ ମୋର ଜୀବ-ଜୀବନ ।
ତତେ ଚାହିଁ ସିନା କାଟୁଛି ମୁଁ ଦିନ
ଏକାକିନୀ ଏତେ କାଳ,
କହ ମନକଥା ମୋ କୁଳ-ଚନ୍ଦ୍ରମା
ଭିକାରିଣୀ-ଗଳାମାଳ ।''

ମାତା ଆଶ୍ୱାସନା ପାଇ ପଚ୍ଛେ ପୁଅ
ତେଜିଣ ମନୁ ସନ୍ତାପ,
''କହ ମା, ସତେ କି ଅଛି ଆମ କୁଳ;
କହ କିଏ ସେ ମୋ ବାପ ?''
କହନ୍ତି ଜନନୀ, ''କେବେ ତ ଏ କଥା
ପଚାରି ନ ଥିଲୁ ଥରେ,

ଚାହାଳିରୁ ଆସି କିପାଁ ବାବୁ, ଆଜି
ପଟାରୁ ଏଡ଼େ କାତରେ ?''
କହେ ପୁଅ, ''ଆଜି ଚାହାଳିରେ ଚାଟେ
କହିଲେ ମତେ ଯେ କଥା,
ଲାଜ ଅପମାନେ ଗଲି ମୁହିଁ ସଢ଼ି
ଟେକି ନ ପାରିଲି ମଥା ।
ଚାହାଳିରେ ଯେବେ ଲେଖୁଥିଲି ପାଠ
ଗୋଟାଳି ମୋ ଗଲା ଗଡ଼ି,
ନିକଟ ପିଲାକୁ କହିଲି ହେ ଭାଇ,
ବଢ଼ାଇ ଦିଅ ସେ ଖଡ଼ି ।
ମୋ କଥାରେ ସେ ତ ଦେଲା ନାହିଁ ଖଡ଼ି
କହି କଲା ଉପହାସ,
'ଭାଇ ଡାକି ଆଜ୍ଞା– ଦିଏ ଅବାବୁଆ
ଏହାର କେଡ଼େ ସାହସ !'
ନ କହିଣ କିଛି ଅଳପେ ହସିଲେ
ତହିଁ ଆନ ପିଲାମାନେ,
ଲାଜେ ପୋତି ମଥା ଗୋଟାଳି ଉଠାଇ
ଆଣି ବସିଲି ମୋ ଥାନେ ।
ନ କରି ସଙ୍କୋଚ ଫେଡ଼ି ସତ କହ
ଛୁଇଁକରି ଏ ମୋ ଦେହ,
ଆମ କୁଳ କଥା, କାହାନ୍ତି ମୋ ପିତା,
ଯାଉ ମୋ ଭ୍ରମ ସନ୍ଦେହ ।''

କୋପେ ଜରଜର ଜନନୀ ସତ୍ୱର
ଭାଷନ୍ତି ଉଚ୍ଚେ ବଚନ,
''କିଏ ସେହୁ ପିଲା ଦେଲା ଏହିପରି
ଅପମାନ ଅକାରଣ ।
ତା ମା' ଏଡ଼େ ସତୀ, ମୋ ପୁଅକୁ ପୁଣି
କହେ ସେ ଅଣବାବୁଆ
ତା କଥାରେ ଛଳ କରି କିବା ଫଳ
ସେ ବି ତ ଅଜ୍ଞାନ ଛୁଆ ।

ବୁଢ଼ା ବୁଢ଼ୀମାନେ କହୁଥାନ୍ତି ଯାହା
ଶୁଣିଛି ମୁଁ ପିଲାବେଳେ,
ପୂରୁବ ପୁରୁଷ ଯଶ ପଉରୁଷ
ବୁଝ ବାବୁ, ଏଥୁଁ ହେଲେ ।
ସୃଷ୍ଟି ଆଦ୍ୟକାଳୁ ବିଶ୍ୱକର୍ମା, ତହୁଁ
ଆମ କୁଳ ଉତପତ୍ତି,
ଏ କୁଳର ବଡ଼- ବଡ଼େ ରଖିଛନ୍ତି
କେତେ ଅକ୍ଷୟ କୀରତି ।
ଇନ୍ଦ୍ରଦ୍ୟୁମ୍ନ ରାଜା ତୋଳାଇଲେ ଯେବେ
ଶ୍ରୀକ୍ଷେତ୍ରେ ବଡ଼ ଦେଉଳ,
ହକାରିଣ[୨] ନାନା ଦେଶୁ କାରିଗର
କରାଇଲେ ଆଗେ ଠୁଳ ।
ପରଖି ସକଳେ ଯୋଗ୍ୟ ଶିଳ୍ପୀ ବାଛି
ଲଗାଇଥିଲେ ସେ କାମେ,
ତୋ ପୂର୍ବ ପୁରୁଷେ ଶିରେ ଦେଲେ ଶାଢ଼ୀ
ପୁଣ୍ୟ ନୀଳାଚଳ ଧାମେ ।
କେତେ କାଳ ଅନ୍ତେ ସେ ମନ୍ଦିର ଯେବେ
ସଂସ୍କାର କଲେ ଯଯାତି,
ତୋ ପୂର୍ବପୁରୁଷେ ସେତେବେଳେ ତହିଁ
ରଖିଥିଲେ ବଂଶ ଖ୍ୟାତି ।
ଶେଷେ ସେ ଦେଉଳ ତୋଳାଇଲେ ପୁଣି
ଶ୍ରୀ ଅନଙ୍ଗଭୀମ ରାଏ,
ଉତ୍କଳେ ଅକ୍ଷୟ କୀର୍ତ୍ତିସ୍ତମ୍ଭ ପ୍ରାୟ
ଶୋଭେ ଯାହା ଆଜିଯାଏ ।
ତୋ ପୂର୍ବପୁରୁଷ- ବୁଦ୍ଧି କାରିଗରି
ରହିଅଛି ତହିଁ ଜାଣ,
ଏଥିରୁ ରେ ବାବୁ, ବୁଝ ତୁ ଆପଣା
ବଂଶବଡ଼ିମା ପ୍ରମାଣ ।

---

୨- ଡକାଇ

ଖଣ୍ଡଗିରି-ଦେହେ ବିରଚିଲେ ଗୁମ୍ଫା
ଏହି ବଂଶ କାରିଗରେ,
ଯହିଁ ଖାରବେଳ- ଶାସନ ନିଦେଶ[୩]
ରାଜେ ଅମର ଅକ୍ଷରେ ।

ରାଣୀହଂସପୁରେ ଶେଷ ଜୀବନରେ
ରାଣୀ ସଙ୍ଗେ ନରପତି,
ଯୋଗିଜନ ମେଳେ ରହିଲେ ନିଶ୍ଚଳେ
ତେଜି ରାଜ୍ୟ ହେଲେ ଯତି ।

ବୈତରଣୀ କୂଳେ ଯଯାତିକେଶରୀ
କଲେ ଯେବେ ମହାଯାଗ,
ସରଗୁଁ ଦେବତା ଆସିଥିଲେ ତହିଁ
ନେବାଲାଗି ଯେଝା ଭାଗ ।

ବନ ପରବତେ ବୈତରଣୀ ସ୍ରୋତେ
ହେଲା ବେଦ ପ୍ରତିଧ୍ୱନି,
ଯଜ୍ଞ-ଅନଳରୁ ଉଠିଲେ ବିରଜା
ଉଜ୍ଜ୍ୱଳି ଯେବେ ଅବନୀ ।

ଗଢ଼ିଲେ ଯେ ଶିଳ୍ପୀ ପୁଣ୍ୟ ଶୁଭସ୍ତମ୍ଭ
ସପ୍ତମାତୃକା ମୂରତି,
ନ କର ସଂଶୟ ଜାଣ ଆପଣାକୁ
ତାଙ୍କରି ବଂଶ-ସନ୍ତତି ।

ଏକାମ୍ର କାନନେ ଲଲାଟେନ୍ଦୁ-କୀର୍ତ୍ତି
ଅନୁପମ ଦେବାଳୟ,
ନିର୍ମିଲେ ଯେ, ତାଙ୍କ ରକ୍ତ ତୋ ଶରୀରେ
ତୁ ତାଙ୍କ କୁଳ-ତନୟ ।

ବାରବାଟୀ ଦୁର୍ଗ ମରାମତି ଲାଗି
ଶ୍ୱଶୁରେ ଗଲେ କଟକ,
ଯଥାକାଳେ କାମ ନ ସରିଲା ବୋଲି
ରହିଲେ ତହିଁ ଅଟକ ।

---

୩- ବର୍ଣ୍ଣନ/ଆଦେଶ

ବାହୁଡ଼ି ନାହାନ୍ତି ଘରକୁ ସେ ଆଉ
କଟକେ ତେଜିଲେ ପ୍ରାଣ,
ସେହି ଭାବନାରେ ମଲେ ଶାଶୁ ମୋର
ଶୋକେ ହୋଇ ହତଜ୍ଞାନ ।
ଯେଉଁ ଦିନୁ ତୋର ବାପା ଯାଇଛନ୍ତି
ଘର ଛାଡ଼ି ପରବାସ,
ମୋ ଦେହରୁ ବାବୁ, ଶୁଖିଛି ରକତ
ନାହିଁ ମୋ ଜୀବନେ ଆଶ ।
ଦିନେ ଗଲେ ମତେ ଯୁଗ ପରି ଲାଗେ
ମରୁଛି ମୁଁ ଭାଳି ଭାଳି,
ରହିଅଛି ସିନା ତୋ ମୁହଁ ଅନାଇ
ତୁ ମୋ ନୟନ-ସଞ୍ଚାଳି[୪] ।''
ଏହିପରି କଥା କହୁଁ କହୁଁ ମାତା
ହୋଇଲେ ଅତି ବିକଳ,
ତଳେ ମୁହଁ ପୋତି ବିଳପିଲେ ସତୀ
ବହେ ଅଶ୍ରୁ ଅବିରଳ ।
''କିପାଇଁ କହ ମା, କାନ୍ଦୁଛୁ କାତରେ''
ଚକିତେ ପଚାରେ ପୁଅ,
ବସି ମାତା କୋଳେ ବସନ ଅଞ୍ଚଳେ
ପୋଛେ ତାଙ୍କ ନେତ୍ର ଲୁହ ।
''କାହାନ୍ତି ମୋ ବାପ, କେତେ ଦିନ ହେଲା
କି କାର୍ଯ୍ୟେ ଗଲେ ସେ କାହିଁ ?
କେତେ ଦୂର ପଥ ଏଥୁଁ ସେ ରାଇଜ
ମୁଁ କି ନ ପାରିବି ଯାଇ ?
ନ ଆସେ କି ତହୁଁ ବାରତା ଏଠାକୁ
ଅଛନ୍ତି ଟିକି ସେ ଭଲେ ?
ଯିବାର ଉପାୟ କହ ମା, ତୁରିତେ
ବାର୍ତ୍ତା ଆଣିବି ମୁଁ ଗଲେ ।''

---

୪- ପ୍ରିୟତମ ବସ୍ତୁ / ପ୍ରାଣଧନ;

ପୁଅର ମଧୁର କୋମଳ ବଚନେ
ମାତା ପାଇଲେ ଆଶ୍ୱାସ,
ଚୁମ୍ବି ପୁତ୍ରମୁଖ କହନ୍ତି ଆହ୍ଲାଦେ
ପକାଇ ଦୀର୍ଘ ନିଃଶ୍ୱାସ ।

"ମରିଯାଏଁ ମୁଁ ଲୋ, କି ବିକଳେ ଲୁହ
ପୋଛି ଦିଅଇ ମୋ ଧନ,
ଏହି ଭରସାରେ ବାର ବର୍ଷ ହେଲା
ରହିଛି ଧରି ଜୀବନ ।

ବାର ବର୍ଷ ହେଲା ଯାଇଛନ୍ତି ବାପ
ଦେଉଳ ଗଢ଼ିବା ପାଇଁ,
ତୋଳାଉଛନ୍ତି ଯା ନରସିଂହ ଦେବ
ଗଜପତି ନରସାଇଁ ।

ଚନ୍ଦ୍ରଭାଗା ତୀର୍ଥେ ସାଗର-ପନ୍ତାରେ
ଗଢ଼ାହେଉଛି ଦେଉଳ;
କହିଛନ୍ତି ରାଜା, 'କଳା କଉଶଳେ
ବିଶ୍ୱେ ସେ ହେବ ଅତୁଳ' ।

ଶିବାଇ ସାନ୍ତରା [illegible][5] ପଧାନ
ବିଶ୍ୱକର୍ମା-କୁଳ ରାଇ[6]
ଭଲ କାରିଗର ବାଛି ଲଗାଇଲେ
କାମେ ବାରଶ ବଢ଼ାଇ ।

ସେହି ଡାକରାରେ ଗଲେ ଯେ ତୋ ପିତା
ବାହୁଡ଼ି ନାହାନ୍ତି ଘରେ;
ସେତେବେଳେ ତୁ ମୋ ଗର୍ଭେ ଚାରି ମାସ,
ଜନ୍ମିଲୁ ଛ' ମାସ ପରେ ।

କହୁଥିଲେ ଲୋକେ, 'ହେବ ସେ ଦେଉଳ
ଧର୍ମଦେବତାଙ୍କ ରଥ,
ପୂର୍ବେ ଦୁର୍ଗ ରୂପେ ଉତ୍କଳର ପୁଣି
ଓଗାଳିବ ସିନ୍ଧୁ ପଥ ।'

---

୫- ସମ୍ମୁଖରେ / ଅଗ୍ରଭାଗରେ; ୬- ଡାକି;

ଧର୍ମଦେବତାଙ୍କ ଦେଉଳରେ ବାପ
କରୁଛନ୍ତି ବୋଲି କାମ,
ସୁମରିଣ ତାଙ୍କୁ ଶରଧାରେ ଦେଲି
'ଧର୍ମପଦ' ତୋର ନାମ ।
ଦେଖି ନାହିଁ ତୀର୍ଥ ଶୁଣିଛି କେବଳ
'ସାତ ଥର ଯିବ ଗଙ୍ଗା,
ଥରେ କେହି ଯେବେ ଯିବ ଚନ୍ଦ୍ରଭାଗା
ମୁହଁ ପଡ଼ିଯିବ ରଙ୍ଗା' ।
ଯିବା ଦିନୁଁ ବାପ ବାର ବର୍ଷ ହେଲା
ପାଇ ନାହିଁ ମୁଁ ବାରତା,
ତାଙ୍କ ଲାଗି ନିତି ପଣ୍ଡାଇ ବସାଇ
ପୂଜଇ ପଞ୍ଚ-ଦେବତା ।
ଅଖଣ୍ଡଳ ଜାଳି ଗ୍ରାମଦେବତୀଙ୍କ
ପାଦେ ପଡ଼େ ଅନୁକ୍ଷଣ
ରବିବାର-ବ୍ରତ ପାଳି ମୁଁ ପଶିଛି
ଧର୍ମଦେବତା ଶରଣ ।''

କହେ ପୁଅ ତହିଁ, ''ଯିବି ଚନ୍ଦ୍ରଭାଗା,
କରିବି ବାପାଙ୍କୁ ଦେଖା,
ଆଣିବି ତାଙ୍କର କୁଶଳ ବାରତା
ତାଙ୍କ ନିଜ ହାତ ଲେଖା ।''
''ମୋ ନେତ୍ରପିତୁଳି, ଛାଡ଼ି କି ରେ ତତେ
ପାରିବି ମୁଁ କ୍ଷଣେ ବଞ୍ଚି ?
ମୋ ଅନ୍ଧାର ଘରେ ତୁ ଏକା ପ୍ରଦୀପ
ମୋ ହୃଦ-ସିନ୍ଦୁକ କଞ୍ଚି ।
ଆହୁଲା ତୁ ମୋର ଜୀବନ ବୋଇତେ
ଅନ୍ଧର ଆଶ୍ରା ଲଉଡ଼ି[୭];
ତୋ' ବିନେ ନ ଚଳି ଯିବି ସିନା ବାବୁ
ଶୋକ ସିନ୍ଧୁ ଜଳେ ବୁଡ଼ି ।''

୭ - ବାଡ଼ି

କହେ ପୁଅ ପୁଣି ବଳାଇ ସାଦରେ
"ଯିବି ନିଶ୍ଚେ ବାପ ପାଶ,
ମନତୋଷେ ମା ଗୋ ! ଦିଅ ଅନୁମତି
ଫେରିବି ନ ପୂରୁ ମାସ ।

ବାପ ସଙ୍ଗେ ତହିଁ ଦେଖିବି ସୁଯୋଗ୍ୟ
ଜାତିପୁଅ ଶତ ଶତ,
ଦେଖିବି କିପରି ଗଢ଼ା ହେଉଅଛି
ଧର୍ମଦେବତାଙ୍କ ରଥ ।

ଚନ୍ଦ୍ରଭାଗା ତୀର୍ଥେ ସ୍ନାନ କରି ସୁଖେ
ଦେଖିବି ସୂର୍ଯ୍ୟ-ଉଦୟ,
କର ନାହିଁ ଭୟ କହ ମା, ବାପାଙ୍କୁ
ଦେବି ମୁଁ କି ପରିଚୟ ?"

କହନ୍ତି ମା "ବାବୁ, ଯିବାଲାଗି ଯେବେ
କରିଅଛୁ ଦୃଢ଼ପଣ,
କିପାଁ ନିବାରିବି, ନିବାରଣେ ସିନା
ହେବ ତୋ ମନେ କଷଣ ।

ଦେଖି ବାପ ତୋତେ ହେବେ ହରଷିତ
ହୃଦେ ତୁ ଯିବୁ ପରତେ,
ଦେଖିବୁ ଆବର ଓଡ଼ିଆ ଶିଳ୍ପୀର
ଅଦ୍ଭୁତ କର୍ମ ଜଗତେ ।

ବୟସରେ ତୁହି ହେଲେ ହେଁ ବାଳୁତ
ବୁଦ୍ଧି ତୋର ସୁକୁମାର,
ବୁଝାଇ ବିଶେଷେ କହିବି ମୁଁ କିସ ?
କର ଯାହା ତୋ ବିଚାର ।"

କହିଲେ ଆବର ବାପ ନାମ ତାର
ଭୂମିରେ ସେ ଦେଇ ଲେଖି,
"ବାପ ପୁଅଙ୍କର ହେବ ଚିହ୍ନାଚିହ୍ନି
ହେବାମାତ୍ରେ ଦେଖାଦେଖି ।

ତୋ ରୂପ ଆକୃତି ପିତୃ ପ୍ରତିକୃତି
ଏକା ଛାଞ୍ଚେ ଯେହ୍ନେ ଢଳା,
ନେତ୍ରେ[୮] ନାସା ଆସ୍ୟ ଲଲାଟେ ପ୍ରକାଶ
ବାପ-ମୁଖ ଷୋଳକଳା ।

ନୟନେ ନୟନ ହେଲେ ଭେଟାଭେଟି
ହେବ ପରାଣ-ମିଳନ,
ଯେ ଯାହାର ତାକୁ ଲୋଡ଼େ ସେ ସହଜେ
କରିବାକୁ ଆଲିଙ୍ଗନ ।

ତଥାପି ନ ବଳେ ମନ ତତେ ଏକା
ଛାଡ଼ିବାକୁ ଏତେ ଦୂର,"
"ନ ଡର ଲୋ ବୋଉ ସଙ୍ଗେ ଯିବ ମୋର
ଘର ବଳିଆ କୁକୁର ।

ବଳିଆ ବାପାଙ୍କୁ ନ ଚିହ୍ନିଲେ ତାକୁ
ବାପା ଚିହ୍ନିବେ ନିଶ୍ଚୟ,
ଗ୍ରାମ ନାମ ମୋର ଜନମ-ବୃତ୍ତାନ୍ତ
କହି ଦେବି ପରିଚୟ ।"

"ମରି ଯାଏ ଆହା ମୋ ଧନମାଳିର
କେଡ଼େ ବୁଦ୍ଧି କି ସାହସ ?
ଜଗନ୍ନାଥେ କୃପା କଲେ ତୁ ରଖିବୁ
କୁଳ-ଗଉରବ ଯଶ ।"

(୨)

ତ୍ରୟୋଦଶୀ ତିଥି ଶୁଭ ବେଳ ଦେଖି
ପୁଅ କଲା ଅନୁକୂଳ,
ଢାଗୁଳାଇ ପୂଜି କାନିରେ ଜନନୀ
ବାନ୍ଧିଲେ ପ୍ରସାଦ ଫୁଲ ।

ସ୍ୱାମୀ ଲାଗି ପୁଣି ବାଡ଼ି-ବରକୋଳି
ଦେଲେ ଯାଉଁଳିରେ ବାନ୍ଧି,

[୮] - ମୁଖ

କହିଲେ, ''ଏଥିରେ ବାପାଙ୍କ ଶରଧା
ନେବୁ ଯତନେ ସମ୍ପାଦି ।
ବଳିଆ ସଙ୍ଗତେ ବାଡ଼ି-ବରକୋଳି
ହେବ ଆନ ପରିଚୟ,
ଲକ୍ଷ୍ମୀ ନରସିଂହ ଶ୍ରୀଦୁର୍ଗା ମାଧବ
ହୁଅନ୍ତୁ ତୋର ଆଶ୍ରୟ ।''

ବୀର ଧର୍ମପଦ ମାତା ଆଶୀର୍ବାଦ
ଘେନି ହୋଇଲା ବାହାର,
ଯାଏ ପୂର୍ବ ମୁଖେ ବଳିଆ କୁକୁର
ଚାଲେ ପଛେ ପଛେ ତାର ।

ଅପନ୍ତରା ବାଟ କେତେ ବେଣାପାଟ
ବନ ବିଲ ନଦୀ ସର,
ଚାଲେ ଧର୍ମପଦ ନ ଗଣି ପ୍ରମାଦ
ଦିବା ନିଶି ନିରନ୍ତର ।

ଗୁଡ଼କଙ୍କ[୯] ପଛେ ଗୋଡ଼ାଏ ଉତ୍ସାହେ
ବଳିଆ ଧାଏଁ ତା ପଛେ
ଚନ୍ଦ୍ରଭାଗା-ଯାତ୍ରୀ ଧର୍ମପଦ ବୋଲି
ଲେଖେ କାହିଁ ବାଟ ଘାଟେ ।

ପଚାରି ପଚାରି ଚନ୍ଦ୍ରଭାଗା ତୀର୍ଥେ
ହେଲା ଯାଇଁ ପରବେଶ,
ଲାଗିଛନ୍ତି ଯହିଁ, ବାରଶ ବଢ଼ାଇ
ବିଶ୍ରାମ ନାହିଁ ନିମେଷ ।

ଦିନ ରାତି ଯହିଁ ଜଣା ନ ପଡ଼ଇ
ମୁଖରିତ ନିରନ୍ତର,
ଭୋଜନ ଶୟନ ଛାଡ଼ି ଲାଗିଛନ୍ତି
ପ୍ରାଣପଣେ କାରିଗର ।

---

୯ - ସମୁଦ୍ର କୂଳରେ ଜାତ ହେଉଥିବା ଗୋଲାକାର ଫଳ ବିଶେଷ ।

(୩)

ବାର ବରଷର ସରଳ ବାଳକ
 ସେ ଅଚିହ୍ନା ସ୍ଥାନେ ଏକା;
ଚକିତେ ଚୌଦିଗେ ଅନାଇଁ ଚିନ୍ତିତ
 ବାପର ନ ପାଇ ଦେଖା ।
ବିଚାରେ, "କାହାକୁ ପଚାରିବି ଏଥି
 କିଏ ବା ଦେବ ଉତ୍ତର,
ସର୍ବେ କର୍ମେ ରତ ଏକକୁ ଆରେକ
 ଚାହିଁବାକୁ ନାହିଁ ତର ।"
ଅବସର ବୁଝି କୋଳି ବିକ୍ରି ବ୍ୟାଜେ[୧୦]
 ବୁଲେ ସେ ଜନ ଗହଳେ;
ରସାଳ ପୃଥୁଳ ସେ ବଦରି ଫଳ
 ଯେ ଦେଖେ ତା ମନ ବଳେ ।
ଜଣେ କେହି ଶିଳ୍ପୀ ଘର କଥା ଭାବି
 ମରମେ ଆହତ ଅତି,
କହେ, "ମୋ ବାଡ଼ିରେ ଫଳୁଥିବ ଆହା !
 କେତେ କୋଳି ଏହିମତି ।"
କୋଳିବିକା ପିଲା- ମୁହଁକୁ ଅନାଇଁ
 କିଛି ନ ପାରଇ କହି,
ନ ଜାଣେ ଅପୂର୍ବ ବାତ୍ସଲ୍ୟ-ମମତା
 କିପାଁ ହୃଦେ ଉପୁଜଇ ।
ବାଳକ ବଚନ ଶୁଣି କୁତୂହଳେ
 ପୁଲକେ ପୂରେ ପରାଣ,
କୁକୁରକୁ ଦେଖି ଅନ୍ତର ଇଙ୍ଗିତେ
 କରେ ସେ ସତ୍ୟ ପ୍ରମାଣ ।
ଗ୍ରାମ ନାମ ଆଦି ପଚାରି ପାଇଲା
 ଯେବେ ପୁତ୍ର-ପରିଚୟ;
ବାଳକ-ବଦନ ଚୁମ୍ବିଲା ସେନେହେ,
 ଚରଣେ ନମେ ତନୟ ।

---

୧୦- ବାହାନାରେ

ବାପ ପୁଅ ବେନି ଗଲେ ବସାଘରେ
ପକାଇଲେ କେତେ କଥା,
କହେ ଶିଳ୍ପୀ, ''ବେଗେ ଯାଉଛି କାମକୁ
ନ ଗଲେ ନ ରହେ ମଥା ।''

''କିପାଁ ଏ ଉଦ୍‌ବେଗ ?'' ପାଇ ମନେ ଖେଦ
ପଚାରେ କାତରେ ପୁଅ,
ବୃଦ୍ଧ ଶିଳ୍ପୀ ମୁଖେ ବଚନ ନ ସ୍ଫୁରେ
ନୟନୁ ବହଇ ଲୁହ ।

କ୍ଷଣକ ଅନ୍ତରେ କହେ ବୃଦ୍ଧ ପୁଣି
''ଥିଲା ମୋ ପୂର୍ବ ସୁକୃତ,
ଅନ୍ତକାଳେ ତୋତେ ଦେଖି ଏଥୁ ବାବୁ
ହେଲି ଏବେ କୃତକୃତ୍ୟ ।

ବାର ବର୍ଷ ହେଲା ଲାଗିଲାଣି କାମ
ମୁଦା ନ ହେଲା ଦେଉଳ,
କାଳ ଅତିକ୍ରମେ ରାଜା ନରସିଂହ
ଦାରୁଣ ଦୁଃଖେ ଆକୁଳ ।

ଦୁଇ ଦିନ ମଧ୍ୟେ ପୂରିବ ଦେଉଳ
ନ ରହିବ କିଛି ଶେଷ,
'ନ ହେଲେ କାଟିବି ବଢ଼ାଇଙ୍କ ମୁଣ୍ଡ'
ହୋଇଛି ରାଜା ଆଦେଶ ।

ଦୁଇ ଦିନୁଁ ଦିନେ ହେଲାଣି ଅତୀତ
ଆଉ କାଲି ଦିନ ବାକୀ,
ନିରାଶେ କାତର ସର୍ବେ କାରିଗର
କାମକୁ ନ ପାଏ ଆଖି ।

ନଦୀ-ଗର୍ଭେ ହେଲା ଦେଉଳ ପତନ
ରହିଲା ତହିଁ କି ଦୋଷ,
କେଜାଣି କାହାର ଅପରାଧେ ଅବା
ଗ୍ରହରାଜ କଲେ ରୋଷ ।

କଲେ ଯେତେ ଯତ୍ନ ନ ପୂରେ ଦେଉଳ
ନ ବସେ ଦହି-ନଉଡି,

ଉପାୟ ନ ଦେଖି କାରିଗରଙ୍କର
ହଜିଲାଣି ବୁଦ୍ଧି ବୃତ୍ତି ।
ଛାମୁରୁ ଆଦେଶ- ମନ୍ଦିର ମୁକୁଟେ
ହେବ ଚୁମ୍ବକ ଖଚିତ,
ପ୍ରଭାବେ ଯାହାର ମହୋଦଧି-ବକ୍ଷେ
ନ ଯିବ ଶତ୍ରୁ ବୋଇତ ।
ବାରଶ ବଢ଼ାଇ ଏକୁଁ ଏକ ସର୍ବେ
ଶିଳ୍ପବିଦ୍ୟା ବିଶାରଦ,
ଗଢ଼ିଛନ୍ତି କେତେ ଦେଉଳ ଅଟ୍ଟାଳି
ସେତୁ ଦୁର୍ଗ ଜନପଦ ।
ଯେଝା ବୁଦ୍ଧିବଳେ ଗଢ଼ନ୍ତି ପଥର
ଖସି ସବୁ ପଡ଼େ ତଳେ,
ଦେଉଳ ମୁଦିବା ବୁଦ୍ଧି ନ ଦିଶଇ
ନିରସ୍ତ୍ର ଏବେ ସକଳେ ।
ଆଜି ନିଶି ଶେଷେ କାଲି ପ୍ରଭାତରେ
ହୋଇବ ରବି ଉଦୟ;
ପର ଦିନ ରବି ଉଇଁଣ ଦେଖିବେ
ବାରଶ ବଢ଼ାଇ କ୍ଷୟ ।
ଆଜି ସଞ୍ଜବେଳେ କରିବେ ବିଚାର
ବସି ସବୁ କାରିଗର,
ଯାଉଛି ମୁଁ ତେବେ, ରହି ଏଥି ବାବୁ
ନିଶ୍ଚିନ୍ତେ ବିଶ୍ରାମ କର ।
ବାପର ବିଷାଦ ଦେଖି ଧର୍ମପଦ
ଆଶ୍ଚର୍ଯ୍ୟେ କହଇ ବାଣୀ—
"ସତେ ନରସିଂହ ମହାରାଜ ଦେବେ
ବାରଶ ବଢ଼ାଇ ହାଣି ?
ଉତ୍କଳର ଶିଳ୍ପୀ— କୁଳ ସୁପ୍ରସିଦ୍ଧ
ଦକ୍ଷ କାରିଗରଗଣ,
ମିଳିଛନ୍ତି ଯହିଁ, ସେ କାର୍ଯ୍ୟ କି କେବେ
ରହିପାରେ ଅପୂରଣ ?

ନ ଥିଲେ ଆପତ୍ତି ଦିଅ ଅନୁମତି
ସଭାସ୍ଥଳେ ଯିବା ପାଇଁ ?
ଶିଳ୍ପ ଗୂଢ଼ ପ୍ରଶ୍ନ ଶୁଣିବି, ଦେଖିବି
ବାର ଶତ ଜାତି ଭାଇ ।"

ବାପ ପୁଅ ବେନି ତତକ୍ଷଣେ ତହୁଁ
ଚଳିଗଲେ ସଭାସ୍ଥଳେ,
କଲେ ତର୍କ ଯୁକ୍ତି ଉକ୍ତି ପ୍ରତିଉକ୍ତି
ଯେଝା ବୁଦ୍ଧି କଉଶଳେ ।

ରଥ ଦେବାଳୟ– ଗଠନ-ନିର୍ଣ୍ଣୟ
ଚୁମ୍ବକର ତତ୍ତ୍ୱମାନ,
ବୃଦ୍ଧ ଶିଳ୍ପୀଗଣେ କଲେ ଆଲୋଚନା
ଦେଖାଇ ଶାସ୍ତ୍ର-ପ୍ରମାଣ ।

ରାତି ଅଧଯାଏ ଚାଲିଲା ବିଚାର
ନ ହେଲା କିଛି ମୀମାଂସା,
ଉପାୟ ନ ପାଇ ବାରଶ ବଢ଼ାଇ
ଛାଡ଼ିଲେ ପରାଣ ଆଶା ।

ଯୋଡ଼ି କର ବେନି ସବିନୟ ବାଣୀ
କହେ ଶେଷେ ଧର୍ମପଦ–
"ନୀଳାଚଳେ ଯେବେ ସତ୍ୟ ଜଗନ୍ନାଥ,
ନ ହେବ କିଛି ଆପଦ ।

ଏକାମ୍ର କାନନେ ସତ୍ୟେ ପ୍ରତିଷ୍ଠିତ
ଯେବେ ପ୍ରଭୁ ଲିଙ୍ଗରାଜ,
ନ ସହିବ କେବେ ନିନ୍ଦା ଅପଖ୍ୟାତି
ଉତ୍କଳ-ଶିଳ୍ପୀ-ସମାଜ ।

ଯାଗାନଳୁ ଯେବେ ସତ୍ୟ ବେଦମନ୍ତ୍ରେ
ଉଠିଥିବେ ବୀରଜାଈ,
ମୁଣ୍ଡ କଟା ହୋଇ ନ ମରିବେ ଏଥି
କେବେ ବାରଶ ବଢ଼ାଇ ।

ମୁଁ ଅତି ସାମାନ୍ୟ ଶିଶୁ ଅକିଞ୍ଚନ
ଜାତ ବିଶ୍ୱକର୍ମା-କୁଳେ,

ଶିଳ୍ପୀ-ସାମନ୍ତଙ୍କ ହେବ ଯେବେ ଆଜ୍ଞା
ହାତ ଦେବି ଏ ଦେଉଳେ ।
ଦିନକ ମଧ୍ୟରେ ମୁଦିବି ଦେଉଳ
ମନେହୁଏ ମୋ ବିଶ୍ୱାସ,
ମାଗେଁ ଏ ଆଦେଶ ଶିଳ୍ପୀ-ସାମନ୍ତଙ୍କ
ଚରଣେ ମୁଁ ଦୀନ ଦାସ ।''
ବାଳକ-ବଚନ ଶୁଣି ସଭାଜନ
ବିସ୍ମିତ ହେଲେ ସକଳ,
କହିଲେ, ''ଏ କଥା ଅତି ଅସମ୍ଭବ
ଶିଶୁ-ସ୍ୱଭାବ ଚପଳ ।''
ଅଭିମାନୀ କେହୁ କହଇ ଗରବେ,
''ଉଚିତ ଆମ ମରଣ,
ଦିନକରେ ଯେବେ ଏକା ଏ ବାଳକ
କରେ ଦେଉଳ ପୂରଣ ।''
ଅନ୍ୟ ବୋଲେ, ''ଛାଡ଼ ଈର୍ଷା ଅହଙ୍କାର
ନାହିଁ ଏଥି ଅପମାନ,
ପୂରୁ ଦେବାଳୟ ରହୁ ରାଜଦ୍ୱାରେ
ଶିଳ୍ପୀକୁଳ-ସନମାନ ।''
''ଗୋପନେ ଯଦ୍ୟପି ନ ହେବ ଏ କାର୍ଯ୍ୟ
ଲୋକରେ ପଡ଼ିବ ଜଣା,
ବନ୍ଧା ହେବ ଶାଢ଼ୀ ଏ ବାଳକ ମୁଣ୍ଡେ
ଆମ ମୁଣ୍ଡ ହେବ ହଣା ।''
ସପକ୍ଷେ ବିପକ୍ଷେ କହିଲେ ଏପରି
କେତେ କଥା କେତେ ଜଣ,
ଅବଶେଷେ ଜଣେ ବୃଦ୍ଧ ଶିଳ୍ପୀ ଭଣେ;
''ଶୁଣ ଭାଇ ସଭାଜନ ।
ହେଲେ ହେଁ ବାଳକ ଶିଳ୍ପୀକୁଳେ ଜାତ
ମୁଦିବ ଯେବେ ମନ୍ଦିର,
ରହିବ ଉତ୍କଳେ ଶିଳ୍ପୀ-ଗଉରବ
ଯାଉପଛେ ଆମ ଶିର ।

ପ୍ରତିଜ୍ଞା ଏହାର ଅସମ୍ଭବ ବୋଲି
ମନେ ବିଚାର ନ କର,
କାହାକୁ କି ଶକ୍ତି ଦେଇଛନ୍ତି ପ୍ରଭୁ
ଜାଣିବ ତା କାହିଁ ନର ?

ହୁଏ ଶିଶୁମୁଖେ ସତ୍ୟ ପରକାଶ
ବାଳକେ ବଳ-ଉଦୟ,
ଅସମ୍ଭବ ହୁଏ, ସମ୍ଭବ ଜଗତେ
ଦୟା କଲେ ଦୟାମୟ ।

ଧ୍ରୁବ ପ୍ରହଲ୍ଲାଦ ପୁରାଣ-ପ୍ରବାଦ
କବି-କଳ୍ପନା ନ କହ,
କାଳେ କାଳେ ଶିଶୁ ଅସାଧ୍ୟ ସାଧିବ
ହେଲେ ପ୍ରଭୁ ଅନୁଗ୍ରହ ।

ଶୁଣିଛ ତ ସର୍ବେ ଅଭିମନ୍ୟୁ କଥା
ବୀର-ବାଳକ-ବିକ୍ରମ,
ଶୁଣିଛ ଜନମୁଁ ଥିଲେ ଶୁକଦେବ
ବ୍ରହ୍ମଜ୍ଞାନୀ ଅନୁପମ ।

ଶିଶୁ ବଢ଼ି କ୍ରମେ ହୁଏ ଯୁବା ବୃଦ୍ଧ
ଚତୁର ପ୍ରବୀଣ ନର,
ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର ।

କାଲି ଦିନ ରାତି ରହିଅଛି ବାକୀ
ବିଚାରିବୁ ନାହିଁ କାଳ,
ଯାହା କରିବାର ସ୍ଥିର କର ଏବେ
ଆଉ ଅଧିକ ନ ଭାଳ ।

ଦଇବ ବିଧାନେ ଏ ବାଳକ ଏଥି
ଯଥାକାଳେ ଉପଗତ,
ଛାଡ଼ିଦେବା ଏହା ହାତେ ବାକୀ କାର୍ଯ୍ୟ
କର ସର୍ବେ ଏହି ମତ ।''

ଏହିପରି ବହୁ ବିଚାର ଶେଷରେ
ସ୍ଥିର କଲେ ଶିଳ୍ପୀଗଣ,

କରନ୍ତୁ ବାଳକ କାଲି ଦିବାଭାଗେ
ଆଗେ ମନ୍ଦିର ବୀକ୍ଷଣ ।
କାଲି ସନ୍ଧ୍ୟାଯାଏ ଲାଗିବା ସରବେ
କାମ ନ ହେଲେ ପୂରଣ,
ସମର୍ପି ଦେଉଳ ବାର ଶତ ଶିର
ବାଳକେ ଯିବା ଶରଣ ।
ବାଳକେ ସରବେ କଲେ ଧନ୍ୟ ଧନ୍ୟ
ଭାଜିଲା ସଭା ସେ ଦିନ,
ବାରଶ ବଢ଼ାଇ ଲାଗିଲେ କାମରେ
ନିରାଶେ ମୁଖ ମଳିନ ।

(୪)

ତହିଁ ଆରଦିନ ଧର୍ମପଦ ଦେଖେ
ଦେଉଳ ଗଠନ ରୀତି,
ପରଖେ ପତନ ପୀଢ଼ ଖମ୍ବ କୋଣ
ଆଦ୍ୟ ପ୍ରାନ୍ତ ଅବସ୍ଥିତି ।
ବାରଶ ବଢ଼ାଇ ଲାଗିଛନ୍ତି କାମେ
କରି ପ୍ରାଣ ପ୍ରାୟଶ୍ଚିତ୍ତ,
ଚାହୁଁ ଚାହୁଁ ଦିନ ହେଲା ଅବସାନ
ରବି ହେଲେ ଅସ୍ତମିତ ।
ନ ସରିଲା କାମ ନ ଦିଶଇ ଆଶା
ରାତି ମଧ୍ୟେ ପୂରିବାର,
ବାରଶ ବଢ଼ାଇ ମୁଣ୍ଡେ ହାତ ଦେଇ
ବସିଲେ ତେଜି ଆହାର ।
କହେ ଧର୍ମପଦ, "ଆଜ୍ଞାହେଲେ ମତେ
କାମେ ଦେବି ଏବେ ହାତ,
ପ୍ରଭୁ ଦୟା କଲେ ପୂରିବ ଦେଉଳ
ନ ହେଉ କାଲି ପ୍ରଭାତ ।"

ବାରଶ ବଢ଼ାଇ କଲେ ଧନ୍ୟ ଧନ୍ୟ
ଦେଲେ ସର୍ବେ ଆଶୀର୍ବାଦ,
"ଯାଅ ବାବୁ ଯାଅ ବିଳମ୍ବ ନ କର
କହି କଲେ ଉଚ୍ଚନାଦ ।
ରହୁ କୁଳମାନ ପୂରୁ ନରସିଂହ
ନୃପତି ମନ କାମନା,
ବାର ବରଷର ବଢ଼ାଇ ପୁଅର
ହେଉ କୀରତି ଘୋଷଣା ।"

(୫)

ଆରମ୍ଭିଲା କାମ ଦେଉଳ ଶିଖରେ
ଏକ ଲୟେ ଧର୍ମପଦ,
ଆଶାର ଆନନ୍ଦେ କାରିଗର ଏଣେ
ଆଶଙ୍କା କଲେ ଆପଦ ।
ବାଳକ କରଣୀ ନିଶ୍ଚେ ଯିବେ ଜାଣି
ନରସିଂହ ଗଜପତି,
ଏ ବାଳକ ମୁଣ୍ଡେ ବନ୍ଧା ହେବ ଶାଢ଼ୀ
ଘଟିବ ଆମ ବିପତ୍ତି ।
ଯଥା ସମୟରେ ପୂରିବ ଦେଉଳ
ଏହି ମାତ୍ର ଆଶ୍ୱାସନା,
ପରାଣ-ଭୟରେ ସବୁ କାରିଗରେ
କରନ୍ତି ନାନା ଭାବନା ।
ବସି ଏକଠାଇଁ ବାରଶ ବଢ଼ାଇ
ଆତଙ୍କେ କାଟନ୍ତି ନିଶି,
ଏହି ସମୟରେ ପୂରିଲା ଦେଉଳ
ଅଗ୍ର-କୁମ୍ଭ ଗଲା ଦିଶି ।
ହରଷ-ବିଷାଦେ ଚାହିଁଲେ ସକଳେ
ନିରେଖି ଦେଉଳ ଚୂଳେ,
ରାତି ଥାଉଁ ଥାଉଁ ଓହ୍ଲାଇ ମିଳିଲା
ଧର୍ମପଦ ତାଙ୍କ ତୁଲେ ।

(୬)

ଦେଖି କାରିଗରେ କରନ୍ତି ପ୍ରଶଂସା
ନାହିଁ କାହା ମନେ ସୁଖ,
ପଚାରେ ବାଳକ, "କିପାଇଁ ଦିଶନ୍ତି
ଆପଣ ସର୍ବେ ବିମୁଖ ?
ଦର ବିକଶିତ କମଳ ସରସେ
କିପାଁ ହିମ ବିନ୍ଦୁପାତ ?
ଉଲ୍ଲସିତ ପ୍ରାଣେ କାହୁଁ କି କାରଣେ
ଅକସ୍ମାତେ କଷାଘାତ ?"
ଜଣେ ବୃଦ୍ଧ ଶିଳ୍ପୀ କହନ୍ତି ନିରୋପି[୧୧]
ସମସ୍ତଙ୍କ ମନ କଥା—
"ପୂରିଲା ଦେଉଳ, ହେବ ତୁମ ଯଶ
ନ ରହିବ ଆମ ମଥା ।"
ନ ଶୁଣୁ ଅଧିକ କହଇ ବାଳକ
"ମୋର ସେ ଯଶେ କି ଫଳ ?
ଯେବେ ଶିଳ୍ପୀକୁଳ ବାର ଶତ ଫୁଲ
ଝାଉଁଳି ପଡ଼ିବେ ତଳ ।
ମୁଁ ଶିଳ୍ପୀକୁଳର ଅଧମ ତନୟ
ଜାତିଭାଇଙ୍କ କିଙ୍କର,[୧୨]
ଦେଉଳ ପୂରଣେ ନାହିଁ ମୋ କରଣୀ
ସେ ସବୁ କାର୍ଯ୍ୟ ତୁମ୍ଭର ।
ଜାତି ଭାଇଙ୍କର ଆଦେଶେ ସିନା ମୁଁ
କଲି କାର୍ଯ୍ୟ ସମ୍ପାଦନ,
ଜାତିପୁଅଙ୍କର ମୁଣ୍ଡ ଗଲେ ମୋର
ଜୀବନେ କି ପ୍ରୟୋଜନ ?
ବାରଶ ବଢ଼ାଇ ମୋର ଜାତିଭାଇ
ଜାଣ ଏ କଥା ନିଶ୍ଚୟ,

---

୧୧- ନିରୂପଣ କରି; ୧୨- ଆଜ୍ଞାପାଳନକାରୀ ଚାକର;

ଯାହା ହେବ ହେବ କେବେ ନ ଘଟିବ
ତୁମ୍ଭ ଜୀବନ ସଂଶୟ;
କେହି ନ ଜାଣନ୍ତି ମୋ ନାମ ଏଠାରେ
ନ ଜାଣିବେ କେହି ତାହା,
ନ ହେଉଁ ଆଜି ଏ ରଜନୀ ପ୍ରଭାତେ
ଦେଖିବି ମୁଁ ନିଜ ରାହା ।[୧୩]

ରାତିକେ ଦେଉଳ ପୂରିଲା ଯେପରି
ନ ହେବ ଲୋକେ ପ୍ରକଟ,
ନ ଜାଣିଲେ ରାଜା କି ଅବା ପ୍ରଧାନ
ପଡ଼ିବ କିପାଁ ସଙ୍କଟ ?

ପହରେ ମାତର ଅଛି ଆଉ ରାତି
ଯାଅ ବାପେ ଶୁଅ କ୍ଷଣେ,
ହେଉଛି ବିଦାୟ ଦଣ୍ଡବତ କରି
ଜାତିଭାଇଙ୍କ ଚରଣେ ।''

(୭)

ଯେ ଯାହା କୁଟୀରେ ଗଲେ କାରିଗରେ
ବାପ ସଙ୍ଗେ ଧର୍ମପଦ,
କହେ ପୁଅ, ଏବେ ପୁଛିବି କଥାଏ
''ମନେ ନ ଗଣ ଆପଦ ।
କହିବ ତୁରିତେ ପୁଅରେ ଦାୟ କି
ବାରଶ ବଢ଼ାଇ ଦାୟ,
ଏ ବିଚାରେ ହେବ ବାରଶ ବଢ଼ାଇ–
ତ୍ରାଣ ଉଦ୍ଧାର-ଉପାୟ ।''
ବାପ ମନେ ଭାଳେ କେତେ ପାପ ଚିନ୍ତା
ମୁଖେ ଉତ୍ତର ନ ଆସେ,
ଉଭୟ ସଂକଟେ ପଡ଼ି ଯଥା ନର
ଯାଏ ନାହିଁ କେଉଁ ପାଶେ ।

୧୩- ରାସ୍ତା

ବାପର ବିଷାଦ ଦେଖି ଧର୍ମପଦ
କହେ ସୁକୋମଳ ଭାଷା,
"ବାରଣ ବଢ଼ାଇ ରହନ୍ତୁ ଜୀବନେ
ଛାଡ଼ ଏବେ ମୋର ଆଶା ।

ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭିଆଣ,[୧୪]
ସାର୍ଥକ ଜନମ ତାର ଏକା ସିନା
ପର ହିତେ ଯାର ପ୍ରାଣ ।

କହିଛନ୍ତି ମୁନି– 'କୁଳରକ୍ଷା ଘେନି
ହେବ ଯେବେ ପ୍ରୟୋଜନ,
ତେଜିବ ଜଣକୁ ହେଲେ ହେଉ ପଛେ
ସେ ଯେଡ଼େ ସ୍ନେହଭାଜନ ।

ନ ହୋଇ ବ୍ୟାକୁଳ ଗ୍ରାମହିତେ କୁଳ
ବରଜନ୍ତି ସାଧୁଜନ,
ଦେଶହିତେ ଗ୍ରାମ, ଜଗତ କଲ୍ୟାଣେ
କର ଦେଶ ବିସର୍ଜନ ।'

ବାରଣ ବଢ଼େଇ ଆମ ଜାତି ଭାଇ
ଶିଳ୍ପୀକୁଳ ଗଳାହାର,
ପାଆନ୍ତୁ ଜୀବନ ମୋ ଜଣକ ଲାଗି
ମନେ କିଛି ନ ବିଚାର ।

ତେଜ ମୋ ମମତା, ହେବ ନାହିଁ ବାପା
ଦେଖା ଆଉ ଏ ଜୀବନେ,
ଦିଅ ଅନୁମତି, କର ଆଶୀର୍ବାଦ
ବିଦା ହେବି ଏହି କ୍ଷଣେ ।"

କହେ ବୃଦ୍ଧ, "ବାବୁ, ବାର ବର୍ଷ ହେଲା
ଛାଡ଼ି ଆସିଅଛି ଘର,
ତେତେବେଳେ ତୁହି ହୋଇଥିଲୁ ମାତ୍ର–
ଗର୍ଭରେ ଚାରି ମାସର ।

୧୪- ରଚନା / ସୃଷ୍ଟି;

ପୁଅ କିବା ଝିଅ ହେଲା କି ଅପତ୍ୟ
କିବା ଗର୍ଭ ହେଲା ନାଶ,
ଭାବିବାକୁ ମତେ କେବେହେଲେ ଦଣ୍ଡେ
ମିଳିନାହିଁ ଅବକାଶ ।

କି ଯୋଗରେ ବାବୁ ପହଞ୍ଚିଲୁ ଆସି
କଲୁ ଅସାଧ ସାଧନ,
ଏପରି ସୁଯୋଗ୍ୟ ପୁଅ ପାଏ କିରେ
ଅଳପ ଭାଗ୍ୟରେ ଜନ !

ବିଜୁଳି ପରାୟେ ଝଟକି ନିମିଷେ
ଏବେ ଲୁଚିଯିବୁ କାହିଁ ?
ଏଡ଼େ ଭାଗ୍ୟର କି ଏହି ପରିଣାମ
ଏହା କି ମୁଁ ଥିଲି ଦାହି ?[୧୫]

କେଉଁ ଜନ୍ମେ କାହା ଖାଇବା ପତରେ
ପକାଇଥିଲି ମୁଁ ଧୂଳି,
କାହା ଅଞ୍ଜଳିରୁ ଧନ ହରି ନେଇ
ଦେଲି ତା ହାତେ ଶାଙ୍କୁଳି !

ଅପାର ପାତକେ ପୂରି ରହିଅଛି
ମୋ ପ୍ରାରବ୍ଧ କର୍ମବନ୍ଧ,
ପଲକେ ମୋ ପଥ ଉଜଳି ନୋହିଲେ
କିପାଁ ଯିବୁ କରି ଅନ୍ଧ ?

ବାରଣ ବଢ଼ାଇ ଆମ ଜାତିଭାଇ
ନୁହନ୍ତି ମୋ ପ୍ରୟୋଜନ,
କୁଳ ଗଉରବ ସଦା ରହିଥିବ
ଥିଲେ ତୋ ପରି ନନ୍ଦନ ।

ଯାର ଗୁଣରାଶି ଜଗତେ ପ୍ରକାଶି
ରଖେ ଜାତିକୁଳ ମାନ,
ସେପରି ଗୋଟିକ ସଙ୍ଗତେ ନୁହନ୍ତି
ଆନ କୋଟିଏ ସମାନ ।''

---

୧୫- ପୂର୍ବ କର୍ମରୁ ଅର୍ଜନ କରି;

ତହୁଁ ପୁଅ ବେଗେ ବୋଲେ ଉଦ୍‌ବେଗେ
"ଅଧିକ ନ କହ ଆଉ
ହେଉଛି ଉଛୁର ଯିବି ଏଠା ଛାଡ଼ି
ଏବେ ରାତି ଥାଉଁ ଥାଉଁ।"
କାହିଁଯିବୁ ବାବୁ ଫେଡ଼ି କହ ସବୁ
ରହିବୁଟିକି ପରାଣେ ?
ବଞ୍ଚି ରହିଥିଲେ କେବେହେଲେ ଦେଖା
କାହିଁ ହେବ କିଏ ଜାଣେ !
କହେ ପୁଅ, "ବାପା, ଜୀବନ-ମରଣ
ଲାଗିଅଛି ଅନୁକ୍ଷଣ,
ଜନମ ହୋଇଲେ ଆଗେ ଅବା ପଛେ
ଅବଶ୍ୟ ହେବ ମରଣ।
କାପୁରୁଷ ପରି ମରିବା ଜଗତେ
ନୁହେ ନର ପଉରୁଷ
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ।
ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ।
ମୁହୂର୍ତ୍ତେ ମାତର ଉଜ୍ଜ୍ୱଳି ପ୍ରଖର
ଶିଖା ଟେକି ହୁତାଶନ,
ଜଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ,
ଲିଭୁ ସେ କ୍ଷଣକେ, ତଥାପି ଏ ଲୋକେ
ରହେ ତା' ଆଦର ଯଶ;
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ?
କହୁଛି ନିଶ୍ଚୟ ଏ ଜୀବନେ ଆଉ
ହେବ ନାହିଁ ଯେବେ ଦେଖା,

ଜୀଇଁବା ମରିବା କିପାଇଁ ପଚାର
ସେ ଦୁଇ କଥା ତ ଏକା ।
ଏ ମୋ ବଡ଼ ଭାଗ୍ୟ ଘଟିଲା ସୁଯୋଗ
ମିଳି ଏଥି ଯଥା ବେଳେ,
ମୁଦିଲି ଦେଉଳ କୂଟ ଶିଳ୍ପତନ୍ତ୍ରେ
ଶିଖିଲି ଯା ଶିଶୁ ଖେଳେ ।
ବାରଶ ବଢ଼ାଇ ମୋର ଜାତିଭାଇ
ସହି ନିନ୍ଦା ଅପମାନ,
ମଲେ ଯେବେ ଏଥି କି ସୁଖ ମୋହର
କରି ମନ୍ଦିର ନିର୍ମାଣ ?
ବାରଶ ବଢ଼ାଇ- ରକତ ରଞ୍ଜିତ
ଯଶ ସନମାନ-ଧନ,
ପାଇ ରାଜଦ୍ୱାରେ କହ କି ପ୍ରକାରେ
ବଢ଼ିବ ମୋ ବଡ଼ ପଣ ?
ଶାଢ଼ୀ ବାନ୍ଧି ମୁଣ୍ଡେ ଯିବି ରାଜଦାଣ୍ଡେ
ଦେଖି ଜାତି-କୁଳ-ନାଶ,
କି ରଙ୍ଗେ ଚିତ୍ରିବ ଏ ଜଘନ୍ୟ ଛବି
ଭବିଷ୍ୟତ ଇତିହାସ !
ଦେଉଳ ଅମୁଦା ରହି ମରିଥାନ୍ତେ
ଯେବେ ସବୁ କାରିଗରେ,
ମୋ କର୍ମ-କୌଶଳ ଲଜ୍ଜା ଅପମାନ
ନ ଥାନ୍ତା ତାଙ୍କ ମୁଖରେ ।
ଉତ୍କଳର ଶିଳ୍ପୀ- କୁଳ ଇତିହାସେ
ନ ରହୁ ଏ କଳା ଦାଗ,
ତେଣୁ ସ୍ୱଚ୍ଛମନେ ଏ ଜୀବନ ଲାଗି
କର ବାପା ମୋତେ ତ୍ୟାଗ ।
'ସଞ୍ଚାଣ-କପୋତ'— ଅଦ୍ଭୁତ ଚରିତ
ଶୁଣିଛ ମହାଭାରତେ,
ପରାଣ ବିକଳେ କପୋତ ବ୍ୟାକୁଳେ
ମିଳିଲା ଶିବି ପୁରତେ ।

କାଶୀ ନରପତି କପୋତ ବିପତ୍ତି
ଦେଖି ପାଇଲେ କକ୍ଷଣ,
ଯେବେ ଯଜ୍ଞାଗାରେ ଉଡ଼ିଣ ଆତୁରେ
ପଶିଲା ପକ୍ଷୀ ଶରଣ ।

ଯାଚକ[୧୬] ଯାଚ୍ଞା[୧୭] ନ କଲେ ପୂରଣ
ଯଜ୍ଞଫଳ ଯାଏ ନାଶ,
ସଞ୍ଚାଣ ବଧିଲେ ହିଂସା ମହାପାପ
ଆବର କରିବ ଗ୍ରାସ ।

ଉଭୟ ସଂକଟେ ନ ଦେଖି ଉପାୟ
ଶିବି ରାଜା ମହାମତି,
ବେନି ପକ୍ଷୀ ମଧ୍ୟେ ଉଭା ହୋଇ ସଧେ[୧୮]
ସଞ୍ଚାଣେ କଲେ ବିନତି—

"ଦେବି ପକ୍ଷିରାଜ, ଯାହା ଇଚ୍ଛା ମାଗ
ରଖ କପୋତ ଜୀବନ";
କହଇ ସଞ୍ଚାଣ, "ଲୋଡ଼ା ନାହିଁ ଧନ,
ମୁଁ ଯେ କ୍ଷୁଧା ଅବସନ୍ନ ।

କପୋତ ଉଦ୍ଧାରେ ଉଦାର ଅନ୍ତରେ
କର ଯେବେ ଅଭିଳାଷ,
ନିଜ ଅଙ୍ଗୁ କାଟି ତୁଳିଦିଅ ମୋତେ
କପୋତ ସମାନ ମାଂସ ।"

ହରଷେ ନୃପତି ଦେଖାଇଣ ଛାତି
କାଟିଦେଲେ ମାଂସ ଖଣ୍ଡେ,
ପରିମାଣେ ମାଂସ କପୋତ ସମାନ
ହେଲା ନାହିଁ ତୁଳାଦଣ୍ଡେ ।

ଆଉ ଖଣ୍ଡେ ପୁଣି କାଟିଲେ ନୃମଣି
ସମ ନୋହିଲା ନିକିତି,
ଖଣ୍ଡେ ଖଣ୍ଡେ କ୍ରମେ କଲିଜା କାଟିଲେ
କପୋତେ ପ୍ରକାଶି ପ୍ରୀତି

---

୧୬- ଭିକ୍ଷା ପ୍ରାର୍ଥୀ / ପ୍ରାର୍ଥନାକାରୀ, ୧୭- ପ୍ରାର୍ଥନା / ଭିକ୍ଷା, ୧୮- ଶ୍ରଦ୍ଧାରେ;

ନୃପ ଦୟାପଣ ଦେଖି ସେ ସଞ୍ଚାଣ
କଲା ଶେଷେ ଜୟନାଦ,
ତେଜିଲା କପୋତେ ଗଲା ନିଜ ପୁରେ
ଦେଇ ଦିବ୍ୟ ଆଶୀର୍ବାଦ ।

କପୋତର ହିତେ ଶିବି ଶୁଦ୍ଧଚିତ୍ତେ
କରି ଏ ଆତ୍ମ ଉତ୍ସର୍ଗ
ଇହ ପରଲୋକେ ଲଭିଲେ ଅକ୍ଷୟ
ଧର୍ମ ଆଦି ଚାରି ବର୍ଗ ।

ଏ ଜଗତ ବାପ, ମହା ମଖଶାଳା[୧୯]
ନରନାରୀ ଯଜମାନ,
ସେହି କୃତୀ ଯେହୁ ପରହିତେ କରେ
ଜୀବନ ଆହୁତି ଦାନ ।

ଭୁବନ ବିଦିତ ଦଧୀଚି ଚରିତ
ପୁରାଣେ ତ ଅଛ ଶୁଣି,
କହି ସ୍ୱସ୍ତି ସ୍ୱସ୍ତି[୨୦] ଦେଲେ ନିଜ ଅସ୍ଥି
ବିଶ୍ୱହିତେ ମହାମୁନି ।

ପରହିତେ ପ୍ରାଣ ଉତ୍ସର୍ଗି ପୂର୍ବେ
କେତେ କେତେ ମହାଜନ,
ଲଭିଛନ୍ତି ତ୍ୟାଗେ ପରାଣ ପୂର୍ଣ୍ଣତା
ମରଣେ ନିତ୍ୟ ଜୀବନ ।

କୋରକିତ ପ୍ରାଣ ଫୁଟେ ପ୍ରେମ-ସରେ
ପବନେ ମିଶାଏ ବାସ,
ବିଶ୍ୱବ୍ୟାପୀ ରବି- ଉଜ୍ଜ୍ୱଳ ଆଲୋକେ
ଚାରୁ ସ୍ନିଗ୍ଧ ମନ୍ଦ ହାସ ।

ବାରଣ ବଢ଼ାଇ ରହିଛନ୍ତି ଚାହିଁ
ଏବେ ତୁମ ମୁଖ ପ୍ରତି,
ପୁତ୍ର ସ୍ନେହ ମାୟା ତୁଟାଇଲେ ତୁମ୍ଭେ
ଯିବେ ସକଳେ ବିରତି ।

---

୧୯- ଯଜ୍ଞଶାଳା, ୨୦- ମନର ଶାନ୍ତି ପ୍ରକାଶକରି / ଆଶୀର୍ବାଦ ଦେଇ;

ବାରଣ ବଢ଼ାଇ ମୁହଁକୁ ଅନାଇଁ
ମୋ ମମତା ଏବେ ଛାଡ଼
ଜାଣ ଏ ଦେଉଳୁଁ ଗଡ଼ି ମରିଛି ମୁଁ
ଭାଙ୍ଗି ମଥା ବୁକୁ ହାଡ଼ ।

ଚାହଁ ଏ ଦେଉଳେ, ଚାହଁ ଜାତିକୁଳେ,
ଛାଡ଼ ମନୁ ବୃଥା କଷ୍ଟ,
ବିଚାର ଜନମ ପାଇ ନାହିଁ ମୁହିଁ
ହୋଇଅଛି ଗର୍ଭୁ ନଷ୍ଟ ।

କରୁଛ ଭାବନା ନ ହେବ ମୋ ବିନା
ବଂଶ ରକ୍ଷା ତୁମ୍ଭ ଅନ୍ତେ,
କର ହେ ବିଚାର କାହା ବଂଶ ଚିର
ରହିଛି ବା ଏ ଜଗତେ ?

କେତେ ମହାଜନ ଅସାଧ୍ୟ ସାଧନ
କରିଗଲେ କାଳବଳେ,
କାହିଁ ତାଙ୍କ ବଂଶ ? ଅଛି ମାତ୍ର ଯଶ
ଆଜିଯାଏ ମହୀତଳେ ।

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି,
ଏକର ଯା କ୍ଷୟ ଅନେକ ଉଦୟ,
ଅନେକ ଏକର ସିଦ୍ଧି ।

ବଂଶ ପଛେ ଯାଉ, ଜାତି ବୃଦ୍ଧି ପାଉ
ସାଧ ଏ ଉଦାର ନୀତି,
କୋଣାର୍କ ଦେଉଳ ଗାଉ ଚିରକାଳ
ତୁମ୍ଭ ପୁଣ୍ୟ ତ୍ୟାଗ-ଗୀତି ।

ପରେ ଦୟା ବହି ସତ୍ୟ ରକ୍ଷା ପାଇଁ
ପୂର୍ବେ କେତେ କେତେ ଲୋକ,
କାଟିଛନ୍ତି ନିଜ ହାତେ ପୁଅ ମୁଣ୍ଡ
ମୁହୂର୍ତ୍ତେ ନ କରି ଶୋକ ।

ବିହିତ[୨୧] କରମ ମାନବ ଧରମ
ବୀର ଭାବେ ଯେହ୍ନୁ ସାଧେ,
ସେହି ଧନୁର୍ଦ୍ଧର ରାମ ବୀରବର
ଭବାର୍ଣ୍ଣବେ ସେତୁ ବାନ୍ଧେ ।

ତୁମର ମୋହର ଦେଖା ଦିନକର
କିପାଁ ଏତେ ମାୟା ମୋହ ?
ତେଜ ମୋ ମମତା ଦେଖାଅ ବୀରତା
କର ନାହିଁ ଜାତି-ଦ୍ରୋହ ।

କହ ମନ ସୁଖେ, 'ନାହିଁ ପୁଏ ଦାୟ,
ବାରଶ ବଢ଼ାଇ ଦାୟ',
ଜଗତେ ଏ କଥା ରହୁ କାଳେ କାଳେ
ନେଉଛି ଏବେ ବିଦାୟ ।

ପାହି ଆସିଲାଣି ଅନ୍ଧାର ରଜନୀ
ନିର୍ମଳ ଦିଶେ ମୋ ପଥ,
ଦିଅ ଆଶୀର୍ବାଦ ଘେନ ଏ ଜୀବନେ
ଏହି ଶେଷ ଦଣ୍ଡବତ ।''

(୮)

ଏତେ କହି ପୁଅ ବାପ ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିଛି ବଚନ ନ ଆସେ
ଗଣ୍ଡ ସିକ୍ତ ନେତ୍ର-ନୀରେ ।

ମୂକ ଆଶୀର୍ବାଦ ଇଙ୍ଗିତେ ପ୍ରକାଶି
ସ୍ନେହେ ଚୁମ୍ବିଲା ବଦନ,
ଚାଲିଗଲା ପୁଅ କ୍ଷଣେ ବୃଦ୍ଧ ତହିଁ
ହେଲା ଶୋକେ ଅଚେତନ ।

ଅରୁଣ-ଆରକ୍ତ- ବରଣେ ରଞ୍ଜିତ
ଦିଶେ ପୂରୁବ ଆକାଶ,

---

୨୧- ଆବଶ୍ୟକ/ଉଚିତ

ଫିଟି ନାହିଁ ନିଶା ଅଙ୍ଗ କଳାଶାଢ଼ୀ
ଫୁଟି ନାହିଁ ଉଷାହାସ ।

ଚନ୍ଦ୍ରଭାଗା-ନୀରେ ପାହାନ୍ତି ସମୀରେ
ଖେଳଇ ମୃଦୁ ତରଙ୍ଗ,
ଅଦୂର କାନନେ ପହର ପ୍ରମାଣେ
ରାବେ କୁମ୍ଭାଟୁଆ ଖଗ ।

ଏ ମୁହଁ ଅନ୍ଧାରି ବେଳେ ଧର୍ମପଦ
ଚାଲିଗଲା ଅତି ଖରେ,
ଚାରପଥେ ଚଢ଼ି ଉଠିଲା ତୁରିତେ
ଦେଉଳ ଶିଖ ଉପରେ ।

(୯)

ଚୌଦିଗେ ବିସ୍ତୃତ ସାଗର-ସୈକତ
ନିସ୍ତବ୍ଧ ବିଜନ ବେଳା,
ସମ୍ମୁଖେ ଅପାର ନୀଳ ପାରାବାର
ଚିରନ୍ତନ ଉର୍ମି ଖେଳା ।

ଉର୍ଦ୍ଧ୍ୱେ ସୁଶୋଭିତ ତାରକା-ଖଚିତ
ଅନନ୍ତ ନୀଳ ଆକାଶ,
ହେଲା ଶୁଦ୍ଧପ୍ରାଣେ ଅପୂର୍ବ ଉଦାର
ମହାଭାବ ପରକାଶ ।

ଜଳ ସ୍ଥଳ ନଭ ହେଲା ଏକ ଭାବ
ଲିଭିଗଲା ବିଚିତ୍ରତା,
ଅନନ୍ତ ଅଭେଦେ ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତା ।

ବାଳୁତ ହୃଦୟ ମିଶିଗଲା ସେହି
ମହା ଅନନ୍ତ ବିତାନେ[୨୨]
ଅଜ[୨୩] ଭାବ ଭୁଲି ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।

୨୨ - ବିସ୍ତାର/ଚାନ୍ଦୁଆ; ୨୩ - ଜୀବାତ୍ମା;

ମୁହୂର୍ତ୍ତକେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱସାରା,
ଭିତର ବାହାର କଲା ଏକାକାର
ଅମୃତ ସଙ୍ଗୀତଧାରା ।

ହୋଇ ଏକ ଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ ଲହରେ,
ଗାଏ ଧର୍ମପଦ ପରମ ଆନନ୍ଦେ
'ଜୟ ଜଗଦୀଶ ହରେ ।'

"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ,
ପ୍ରଭୁ ଦୟାମୟ ମଙ୍ଗଳ-ଆଳୟ
ଜୟ ଜଗଦୀଶ ହରେ ।

ନମୋ ନିରାକାର ସର୍ବ ବିଶ୍ୱାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,
ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।

ଧରି ତୁମ୍ଭ ବଳ ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ,
ଆଦେଶେ ଉଦଧି[୨୪] ନ ଲଘେ ଅବଧି[୨୫]
ଜୟ ଜଗଦୀଶ ହରେ ।

ତବ ଦିବ୍ୟଜ୍ୟୋତି ପରକାଶେ ନିତି
ଗ୍ରହ ତାରା ନୀଳାମ୍ବରେ,
ତବ ପୁଣ୍ୟ ହାସେ କୁସୁମ ବିକାଶେ
ଜୟ ଜଗଦୀଶ ହରେ ।

ନଦୀ ବନ ଗିରି ଭୀମକାନ୍ତ ଶିରୀ
ତୁମ୍ଭରି କଟାକ୍ଷେ ଧରେ,
ଗାଏ ତୁମ୍ଭ ଗୀତି ଏ ବିଶ୍ୱ-ଭାରତୀ
ଜୟ ଜଗଦୀଶ ହରେ ।

---

୨୪ - ସମୁଦ୍ର, ୨୫ - କୂଳ/ସୀମା;

ଅନନ୍ତ ମହିମା ଅତୁଳ ସୁଷମା
ଦିଶେ ବିଶ୍ୱେ ସ୍ତରେ ସ୍ତରେ,
ତବ ମହାପ୍ରେମ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେ ମହାମହିମା କି ବୁଝିବି ପ୍ରଭୋ,
କ୍ଷୁଦ୍ର ନର କଳେବରେ,
କି ଭାଷାରେ ତବ କରିବି ହେ ସ୍ତବ
ଜୟ ଜଗଦୀଶ ହରେ ।

ଦେଶ କାଳ ସୀମା- ଅତୀତ ମହିମା
ଅଗୋଚର ସୁର ନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପୟରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।

ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ,
କର ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।

ମୋ ହୃଦୟ-ସ୍ୱାମୀ ପ୍ରଭୁ ଅନ୍ତର୍ଯାମୀ,
ଦେଖାଇଛ ଯାହା ଥରେ,
ସେ ଅମୃତ-ଗତି ଦିଅ ପ୍ରାଣପତି
ଜୟ ଜଗଦୀଶ ହରେ ।

ଚନ୍ଦ୍ରଭାଗା ମୋର ଘେନ ନମସ୍କାର
ନିଅ ମୋତେ ନିଜ ଅଙ୍ଗେ,
ବହି ମାତୃସ୍ନେହ ମିଶାଅ ଏ ଦେହ
ଅତଳ ଉଦଧି ସଙ୍ଗେ ।”

ଗାଇ ଏହିପରି କହି 'ହରି ହରି'
ଡେଇଁଲା ସେ ନଦୀଜଳେ,
ନ ରହିଲା ତାର ଚିହ୍ନ କି ଆକାର
ଗଲା ମହାସିନ୍ଧୁ ତଳେ ।

ଆର ଦିନ ରବି ଉଇଁଣ ଚୁମ୍ବିଲା
ସମ୍ପୂର୍ଣ୍ଣ ମନ୍ଦିର-ଚୂଳ,
ନ ଜାଣିଲେ କେହି କିଏ ସେ ମୁଦିଲା
କୋଣାରକେ ଏ ଦେଉଳ ।

ନଦୀ ଗିରି ବନେ ସାଗର କାନନେ
ମିଶିଗଲା ହାଡ଼ ମାଂସ,
'ଧର୍ମପଦ' ନାମ କାଳସିନ୍ଧୁ କଲା
ବିସ୍ମୃତି-ଗରଭେ ଗ୍ରାସ ।

ଲୁଚି ରହେ ନାହିଁ ସତ୍ୟ ଚିରଦିନ
କାଳେ ହୁଏ ତା ବିବୃତ୍ତି[୨୭],
ନାହିଁ ଧର୍ମପଦ, ଭାଙ୍ଗିଛି ଦେଉଳ
ଅଛି ଏବେ ଜନଶ୍ରୁତି ।

---

୨୬ - ସ୍ଫୁରଣ/ଘୂର୍ଣ୍ଣନ ।

# ପ୍ରାକ୍-ସୂଚନା

ହଜାରିବାଗ ଜେଲ୍‌ରେ ବନ୍ଦୀ-ଜୀବନ ଅତିବାହିତ କରୁଥିବାବେଳେ ଗୋପବନ୍ଧୁଙ୍କ ଦ୍ୱାରା 'ଗୋ-ମାହାତ୍ମ୍ୟ'ର ରଚନା । ସାମାଜିକ ଓ ରାଜନୈତିକ ଆଭିମୁଖ୍ୟରୁ ଏହି ପୁରାଣଧର୍ମୀ ରଚନା କଳ୍ପିତ ଓ ଲିଖିତ ହୋଇଥିବାରୁ ୨୬.୬.୧୯୨୪ରେ ଜେଲରୁ ବାହାରିବା ପରେ ଏହାର ପ୍ରକାଶନ ପାଇଁ ସେ ଉଦ୍ୟମ କରିଛନ୍ତି ଓ ପୁସ୍ତକଟି ୧୯୨୬ ମସିହାରେ ସତ୍ୟବାଦୀ ପ୍ରେସ୍‌ରୁ ପ୍ରକାଶିତ । ୧୯୨୬ ମସିହା ଜୁନ୍ ମାସରେ ଜ୍ୟେଷ୍ଠ ୨୦ଦିନ, ଲିଖିତ ଏହି ପୁସ୍ତକର ସଂଯୋଜିତ 'ପ୍ରକାଶକର ବକ୍ତବ୍ୟ'ରେ ଆଲୋଚ୍ୟ ପୁସ୍ତକ ସଂପର୍କରେ କୁହାଯାଇଛି :

> ଗୋ-ମାହାତ୍ମ୍ୟ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ରଚିତ । ସନ ୧୯୨୨ ଜୁନ ମାସରେ ସେ ସରକାରର ବନ୍ଦୀଶାଳାରେ ଦୁଇବର୍ଷ ପାଇଁ ଆବଦ୍ଧ ହୋଇଥିଲେ । ସେ ସମୟରେ ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ ମୂଳ ସଂସ୍କୃତ ମହାଭାରତ ଓ ଶ୍ରୀମଦ୍‌ଭାଗବତ ନିୟମିତ ପାଠକରିବା ତାଙ୍କର ଅଭ୍ୟାସ ଥିଲା । ଗୋ-ମାହାତ୍ମ୍ୟ ଏହି ଉଭୟ ଧର୍ମଗ୍ରନ୍ଥରୁ ସଙ୍କଳିତ । ଦେଶରେ ଗୋ-ଜାତିର କି ଶୋଚନୀୟ ଅବସ୍ଥା, ତାହାତ ସମସ୍ତେ ଦେଖୁଥାଇଁ; ଗ୍ରାମଲୋକଙ୍କର ଗୋ-ଜାତି ପ୍ରତି ସେ ଭକ୍ତି ମମତା ଲୋଭ ନାହିଁ । ଦେଶରୁ ଗୋଚର କ୍ରମେ ଶୂନ୍ୟହେଉଛି; ଦୁଧ, ଘିଅ କ୍ରମେ ସ୍ୱପ୍ନ ହେଲାଣି । ଗୋ-ଜାତି ପ୍ରତି ଲୋକଙ୍କର ଭକ୍ତି ତୁଟିଯିବାରୁ ଅନେକ ହିନ୍ଦୁ ସୁସ୍ଥ ସବଳ ଗୋରୁଙ୍କୁ ସୁଦ୍ଧା ଧନଲୋଭରେ କଂସାଇମାନଙ୍କୁ ବିକିଦେଉଛନ୍ତି । ଗୋ-ସେବା ଯେ ପରମଧର୍ମ, ଏହା ହିନ୍ଦୁ କ୍ରମେ ଭୁଲିଯାଉଛି । ଗୋ-ଜାତିର ଦୁର୍ଗତିରେ ଦେଶର ଦୁର୍ଗତି । ଦେଶର ଉନ୍ନତି କାମନା କଲେ ଗୋ-ଜାତି ପାଇଁ ଯଥାର୍ଥ ଭକ୍ତି ଓ ମମତା ପୁଣି ଜନ୍ମାଇବାକୁ ହେବ । ଏଥିପାଇଁ ଦୁଇଟି ପନ୍ଥା ପ୍ରଶସ୍ତ — ପ୍ରାଣରେ ଗୋ-ଜାତି ପ୍ରତି ନିର୍ମଳ ଧର୍ମଭାବ ଓ ମନରେ ସେମାନଙ୍କ ଉପକାରିତା ବିଷୟରେ ଯୁକ୍ତିସଙ୍ଗତ ଅଟଳ ବିଶ୍ୱାସ । ଏ ଗୋ-ମାହାତ୍ମ୍ୟରେ ଉଭୟ ପନ୍ଥାର ଆଶ୍ରୟ ନିଆଯାଇଛି । ସରଳ ସୁଲଳିତ ଓଡିଆ ନବାକ୍ଷରୀ ଛନ୍ଦରେ ଗୋଜାତିର ପୌରାଣିକ ମାହାତ୍ମ୍ୟ ଓ ସେମାନଙ୍କର ଦୁର୍ଦ୍ଦଶାରେ

ଦେଶ ଓ ମାନବସମାଜର ଦୁର୍ଦ୍ଦଶା କଥା ସାଧାରଣ ବୁଝିବା ଭଳି ଭାଷାରେ ଲେଖାଯାଇଛି । ଏ ପୁସ୍ତକ ପ୍ରଚାରଦ୍ୱାରା ଦେଶବାସୀଙ୍କ ହୃଦୟରେ ଗୋ-ଜାତି ପ୍ରତି ଅଟଳ ଭକ୍ତି ଓ ମମତା ଜନ୍ମିଲେ ପୁସ୍ତକ ପ୍ରକାଶର ଉଦ୍ଦେଶ୍ୟ ସଫଳ ହେବ ଓ ଦେଶର ପରମ କଲ୍ୟାଣ ହେବ ।

ଜନସାଧାରଣଙ୍କ ପ୍ରାଣରେ ଭକ୍ତିଭାବ ସୃଷ୍ଟିକରିବା ଏହାର ଅଭିପ୍ରେତ ହୋଇଥିବାର ପୁରାଣ ଭଳି ଏଥିରେ ଅଧ୍ୟାୟ ବିଭାଜନ, ପ୍ରାନ୍ତ କଥନ ଓ ଲେଖକଙ୍କର ଭକ୍ତିର ପ୍ରକାଶ ଯେଭଳି ରହିଛି, ଅପରପକ୍ଷରେ ସମ୍ବାଦଶୈଳୀରେ ଏହା ଲିଖିତ ହୋଇଅଛି । ଗୋପବନ୍ଧୁଙ୍କ ପରଂପରାନୁଗତ ମନ ଓ ଭକ୍ତିଗଦ୍‌ଗଦ ହୃଦୟର ଏକ ଭାଷିକ ଅଭିବ୍ୟକ୍ତି ହେଉଛି 'ଗୋ-ମାହାତ୍ମ୍ୟ' ।

ସଂପାଦକ

# ଗୋ-ମାହାତ୍ମ୍ୟ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଂଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।
ଓଁ ନମୋ ବ୍ରହ୍ମଣେ ଦେବାୟ ଗୋ-ବ୍ରାହ୍ମଣ ହିତାୟଚ
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ।

## ପ୍ରଥମ ଅଧ୍ୟାୟ

ଗୋମତୀ-ତୀରେ ପୁଣ୍ୟବନ । ଶୀତଳ ବହଇ ପବନ ।।
ବିରାଜେ ନାନାଜାତି ଦ୍ରୁମ । ଫୁଟଇ ବିବିଧ କୁସୁମ ।।
ମୃଗ ବରାହ କୃଷ୍ଣସାର । କରନ୍ତି ସ୍ୱଚ୍ଛନ୍ଦେ ବିହାର ।।
ମୟୂର ହଂସ ଶୁକ ସାରୀ । କୋକିଳ ବସନ୍ତ-ବିହାରୀ ।।
ଅନେକ ଜାତି ବିହଙ୍ଗମ । କରନ୍ତି ସ୍ୱନ ମନୋରମ ।।
ନିର୍ମଳ ବହେ ନଦୀଜଳ । ବିକଶେ ଶ୍ୱେତ ଶତଦଳ ।।
ନାହିଁ ଜନତା କୋଳାହଳ । ପବିତ୍ର ଶାନ୍ତି ସୁନିଶ୍ଚଳ ।।
ଦେଖିଣ ସେହି ବନଭୂମି । ଆଶ୍ରମ ବିରଚିଲେ ମୁନି ।।
ବେଦ ପୁରାଣେ ବିଶାରଦ । ସର୍ବଦା ଭକ୍ତି ଗଦଗଦ ।।
କରନ୍ତି ନାନା ହୋମବ୍ରତ । ଯୋଗ ଅଭ୍ୟାସେ ନିତି ରତ ।।
ଗୋମତୀ-ତୀରେ ପୁଣ୍ୟ ବନେ । ରହିଲେ ହରଷିତ ମନେ ।।
ମୁନିଙ୍କ ଶିଷ୍ୟ ବ୍ରହ୍ମଚାରୀ । ଅତି ସୁଶୀଳ ଶୁଭାଚାରୀ ।।
ହୃଦରେ ବହି ଭକ୍ତି ପ୍ରୀତି । ଖଟନ୍ତି ମୁନି ପଦେ ନିତି ।।
ପୂଜାସାମଗ୍ରୀ ପୁଷ୍ପ ଜଳ । ଆଣନ୍ତି ଶୁଦ୍ଧ ନଦୀଜଳ ।।
ଚରାନ୍ତି ପ୍ରତିଦିନ ଗାଈ । ଦୁହଁନ୍ତି ବାଛୁରୀ ପିଆଇ ।।

ଶିଷ୍ୟ ସେବାରେ ସୁପ୍ରସନ୍ନ । ମୁନି କରାନ୍ତି ଅଧ୍ୟାପନ ।।
ବେଦ ପୁରାଣ ଇତିହାସ । କରାନ୍ତି ନିୟତ ଅଭ୍ୟାସ ।।
ସେ ଶିଷ୍ୟ ଅତି ବିଚକ୍ଷଣ । ଗୁରୁ ବଚନ ଅନୁକ୍ଷଣ ।।
କରନ୍ତି ଏକ ଲୟେ ଧ୍ୟାନ । ଲଭିଲେ ବହୁ ତତ୍ତ୍ୱଜ୍ଞାନ ।।
ଦିନେ ସେ ନେଇଗଲେ ଗାଇ । ଅରଣ୍ୟେ ଚରାଇବା ପାଇଁ ।।
ଗାଇ ଚରାଇ ନଦୀକୂଳେ । ଶିଷ୍ୟ ବସିଣ ବୃକ୍ଷମୂଳେ ।।
ମନେ କରନ୍ତି ଆଲୋଚନା । ଏ ବିଶ୍ୱ ପ୍ରଥମ ସର୍ଜନା ।।
ତତ୍ତ୍ୱ ଚିନ୍ତାରେ ମନ ବୁଡ଼ି । ଗଲେ ସେ ଗାଇ କଥା ହୁଡ଼ି ।।
କ୍ରମେ ଦିବସ ଅବସାନ । ଶିଷ୍ୟର ହେଲା ବାହ୍ୟଜ୍ଞାନ ।।
ଦେଖନ୍ତି ତହିଁ ନାହିଁ ଗାଇ । ଖୋଜିଲେ ନାନାଦିଗେ ଧାଇଁ ।।
ନ ପାଇ ଗାଇ ମନଦୁଃଖେ । ଗୁରୁଙ୍କ ପାଶେ ଶୁଷ୍କ ମୁଖେ ।।
ମିଳିଣ କହିଲେ ବିକଳେ । ମୁନି ମନରେ କ୍ଷୋଭ କଲେ ।।
ସେ ଗୁରୁ ଶିଷ୍ୟେ ବେନି ଜଣେ । ଆଶ୍ରମ ସନ୍ନିକଟ ବଣେ ।।
ଖୋଜିଲେ ବହୁତ ନିରେଖି । ଫେରିଲେ ଗାଇକି ନ ଦେଖି ।।
ସେ ରାତ୍ରି କଲେ ଉପବାସ । ମନେ ପାଇଲେ ଅତି ତ୍ରାସ ।।
ସେ ଗାଇ ଆଶ୍ରମର ଧନ । ତାଠାରେ ମୁନିଙ୍କ ଜୀବନ ।।
ତାପସ-ପତ୍ନୀ ପତିବ୍ରତା । ସତତ ଗୋ-ସେବା-ନିରତା ।।
ମଣ୍ଡ[1] ତଣ୍ଡୁଳ କୁଣ୍ଡା ଘାସ । ଗାଇକି ନ କରାଇ ଗ୍ରାସ ।।
କରନ୍ତି ନାହିଁ ସେ ଭୋଜନ । ଗାଇ ନ ଦେଖି ଅବସନ୍ନ ।।
ବାଛୁରୀ ଛାଡ଼େ ହମ୍ବାନାଦ । ତାପସ ମଣିଲେ ପ୍ରମାଦ ।।
ଦୟାଳୁ ଗୁରୁ ଗୁରୁନାରୀ । ସେ ଗୁରୁଭକ୍ତ ବ୍ରହ୍ମଚାରୀ ।।
କାଟିଲେ ବିଷାଦେ ରଜନୀ । ଉଦୟ ନୋହୁ ଦିନମଣି ।।
ଗୁରୁଙ୍କ ଅନୁମତି ପାଇ । ଗଲେ ସେ ଶିଷ୍ୟ ଖୋଜି ଗାଇ ।।
ତାପସ କଲେ ନିତ୍ୟକୃତ୍ୟ । ବ୍ରାହ୍ମଣୀ ଶୋକ-ଅଭିଭୂତ ।।
ସେ ପତିପତ୍ନୀ ବେନି ଜଣ । ନ କଲେ ସେ ଦିନ ଭୋଜନ ।।
ପିଇଲେ ନାହିଁ ସୁଦ୍ଧା ଜଳ । ବାଛୁରୀ ରଡ଼ିଲେ ବିକଳ ।।
ରହିଲେ ଶିଷ୍ୟ ବାଟ ଚାହିଁ । ନ ଆସେ ଶିଷ୍ୟ ଅବା ଗାଇ ।।
ସେ ଦିନ ରାତ୍ରେ ଉପବାସ । ମନରେ ଉପୁଜିଲା ତ୍ରାସ ।।

---

୧- ଜାଉ;

କାହିଁ ବା ଗାଈ କାହିଁ-ଶିଷ୍ୟ । ବିତିଲା ଏକ ଅହର୍ନିଶ ।।
ଏପରି ଦ୍ୱିତୀୟ ଦିବସ । ଡକାଇ ରହିଲେ ତାପସ ।।
ଗାଈ ନାହିଁ କି ଶିଷ୍ୟ ନାହିଁ । ସେ ପତିପତ୍ନୀ ଚାହିଁ ଚାହିଁ ।।
ରହିଲେ ଚିର ଉପବାସେ । ଏପରି ବହିଗଲା ମାସେ ।।
କାତରେ କାଟନ୍ତି ସେ ଦିନ । ନ ଖାଇ ହେଲା ତନୁ କ୍ଷୀଣ ।।
ମୁନି ଜାଣିଲେ ଯୋଗଧ୍ୟାନେ । ନାହିଁ ସେ ଧେନୁ ଆଉ ପ୍ରାଣେ ।।
ପତ୍ନୀ ପୁଚ୍ଛନ୍ତି ଅତି ଛନେ[୨] । କହ କି ଆସେ ତୁମ୍ଭ ମନେ ।।
ଜୀବନେ ଅଛିଟି କି ଗାଈ । ବ୍ରହ୍ମଚାରୀ ବା ଗଲା କାହିଁ ।।
ବହୁତ କଟାଳେ[୩] ତରୁଣୀ । ସ୍ୱାମୀଙ୍କି ପୁଚ୍ଛେ ପୁଣି ପୁଣି ।।
ଦେଖିଣ ପତ୍ନୀ ଘୋରବ୍ୟଥା । କହିଲେ ବିପ୍ର ମନକଥା ।।
କିପାଇଁ କାନ୍ଦୁଛ ବିକଳେ । ଦିଶୁଛି ମୋତେ ଯୋଗବଳେ ।।
କେ ମାରୁ ଅବା କେହି ଖାଉ । ଧେନୁ ଜୀବନେ ନାହିଁ ଆଉ ।।
ଶିଷ୍ୟ ଆସିବ ଫେରି କାଲି । କି ପ୍ରୟୋଜନ ଆଉ ଭାଳି ।।
ଶୁଣି ଏ ଦାରୁଣ ବଚନ । ସେ ବିପ୍ରନାରୀ ଅଚେତନ ।।
ମାସୁ ଅଧିକ ଉପବାସ । ନାହିଁ ଶରୀରେ ପଳେ[୪] ମାଂସ ।।
ରହିଛି ମାତ୍ର ଅସ୍ଥିଚର୍ମ । କରନ୍ତି ପୁଣି ଯଥା କର୍ମ ।।
ନାହିଁ ଦେହରେ ତିଳେ ବଳ । ହେଲେ ସେ ବିଶାଦ-ବିହ୍ୱଳ ।।
ତଳେ ପଡ଼ିଲେ ମୂରୁଛିତ । ବ୍ରାହ୍ମଣ ଅତ୍ୟନ୍ତ ଚିନ୍ତିତ ।।
ଶୀତଳ ଜଳ ଦେଲେ ଶିରେ । ବିଞ୍ଚିଲେ ବ୍ୟଜନେ[୫] ସଧୀରେ ।।
ବ୍ରାହ୍ମଣୀ ପାଇଲେ ଚେତନ । ବିକଳେ କରନ୍ତି ରୋଦନ ।।
ମୁନି କରନ୍ତି ମନସ୍ତାପ । ହେଲା ଗୋ-ହତ୍ୟା ମହାପାପ ।।
ବିଷାଦେ ପୁହାଇଲେ ରାତି । ରଜନୀ ନ ହେଉ ପାହାନ୍ତି ।।
ବ୍ରାହ୍ମଣୀ ନିତ୍ୟଶୌଚ ସାରି । ଆଣି ଗୋମତୀ ନଦୀବାରି ।।
ରଖିଲେ ସ୍ୱାମୀ ପୂଜାସ୍ଥଳେ । ବନ୍ଦିଲେ ତାଙ୍କ ପଦତଳେ ।।
ମକର ମାସ ପାହାନ୍ତିଆ । ଶୀତ ପ୍ରକୋପେ କମ୍ପେ ହିୟା ।।
କ୍ଷୁଧାରେ ଅବସନ୍ନ କାୟା । ସ୍ୱାମୀ ଚରଣେ ବିପ୍ରଜାୟା ।।
ତେଜିଲେ ଅକସ୍ମାତେ ପ୍ରାଣ । ଗାଈ ବିଷୟ କରି ଧ୍ୟାନ ।।

---

୨- ଉଦ୍‌ବିଗ୍ନ ହୋଇ/ଭୟଭୀତ ହୋଇ; ୩- ଅନୁରୋଧ କରି/ଅଳିକରି; ୪- ସାମାନ୍ୟ/ ୮୦ ଗ୍ରାମ ଓଜନର; ୫- ପଙ୍ଖାରେ;

ଶୁଣିଲେ ମୁନି ଜ୍ଞାନବଳେ । ଦୁନ୍ଦୁଭିନାଦ ନଭସ୍ଥଳେ ।।
ଦେଖିଲେ ପତ୍ନୀ ଗଲେ ରଥେ । ପୁଷ୍ପ ପଡ଼ଇ ତାଙ୍କ ପଥେ ।।
ସବତ୍ସା ଧେନୁ ଶତ ଶତ । ଚାଲନ୍ତି ସେ ରଥ ଅଗ୍ରତ ।।
ଦେଖିଣ ମୁନି ତୁଷ୍ଟ ଚିତ୍ତେ । କହିଲେ[୬] ଧନ୍ୟ ଅନିନ୍ଦିତେ ।।
ତୁମ୍ଭର ପତିବ୍ରତାପଣ । ଗୃହିଣୀ ବିହିତ ସାଧନ ।।
ଗୋରୁ ଅତିଥି ପୂଜାବିଧି । ଲଭିଲା ଆଜି ପୂର୍ଣ୍ଣସିଦ୍ଧି ।।
ନିଜ ସୁକୃତ କର୍ମଫଳେ । ବସ ସ୍ୱରଗେ ସୁନିଶ୍ଚଳେ ।।
ଗୋ ସେବା ବ୍ରତ ପୁଣ୍ୟରାଶି । ତୁମ୍ଭ ମରଣୁ ବିଶ୍ୱବାସୀ ।।
ଶିଖି ଲଭନ୍ତୁ ସ୍ୱର୍ଗେ ବାସ । ଗୀତେ ଭଣିଲା ଗୋପ ଦାସ ।।

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୋଭାବନାୟ ଅନାହାରେ
ଋଷିପତ୍ନୀ ପ୍ରାଣ-ବିୟୋଗେ ନାମ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

ପଡ଼ିଛି ବ୍ରାହ୍ମଣୀଙ୍କ ଶବ । ମୁନି କରନ୍ତି ବ୍ରହ୍ମ ସ୍ତବ ।।
ଅଳପ ଉଦେ ଦିନକର । ଶିଷ୍ୟ ମଥାରେ ମାରି କର ।।
ଅତି ବ୍ୟଥିତ ମନସ୍ତାପେ । ବ୍ୟାକୁଳ କରୁଣ ବିଳାପେ ।।
ଅଙ୍ଗ ଅବଶ ପଥଶ୍ରମେ । ପ୍ରବେଶ ହୋଇଲେ ଆଶ୍ରମେ ।।
ଆଶ୍ରମେ ଦେଖି ବିପରୀତ । ହେଲେ ସେ ଶୋକବିଜଡ଼ିତ ।।
ନିରେଖି ଗୁରୁପତ୍ନୀ ଶବେ । କାତରେ ରହିଲେ ନୀରବେ ।।
ସାରନ୍ତେ ଗୁରୁ ଉପାସନା । କରିଣ ଚରଣ ବନ୍ଦନା ।।
ଉଭା ସେ ହେଲେ ମନଦୁଃଖେ । ବଚନ ନ ସ୍ଫୁରଇ ମୁଖେ ।।
କହନ୍ତି ଗୁରୁ ଶିଷ୍ୟେ ଚାହିଁ । କରୁଣ ଶୋକ କାହିଁ ପାଇଁ ।।
ଆଗହୁଁ ଜାଣିଛି ମୁଁ ଧ୍ୟାନେ । ଆଶ୍ରମ ଧେନୁ ନାହିଁ ପ୍ରାଣେ ।।
ଏ ତବ ଗୁରୁପତ୍ନୀ ସତୀ । ଧେନୁ ବିରହ ଶୋକେ ଅତି ।।
ନ କରି ପାନ ବା ଭୋଜନ । ହରାଇ ଅଛନ୍ତି ଜୀବନ ।।
ତୁମ୍ଭେ ଆସିବା ପୂର୍ବକ୍ଷଣେ । ଚଳିଲେ ବନ୍ଦି ମୋ ଚରଣେ ।।
ଯାହା ହେବାର ଯେତେବେଳେ । ହେଉଛି ବଳେ[୭] କାଳଖେଳେ ।।

୬- ପ୍ରଶଂସିତଙ୍କୁ; ୭- ଛାଏଁ ଛାଏଁ;

ଘଟଣାସ୍ରୋତ ଅବିରତ । ଚଳେ କାହାର କି ଆୟତ ।।
ଅଧିକ ନ କର ବିଳାପ । କିସ ଦେଖିଲ କହ ବାପ ।।
କାହିଁ ବା ଥିଲ ଏତେ ଦିନ । ଶ୍ରମେ ଦିଶଇ ତନୁ କ୍ଷୀଣ ।।
ଶିଷ୍ୟ କହଇ ଯୋଡ଼ି କର । ଯାହା ଦେଖିଲି ମୁନିବର ।।
ଭାବିଲେ ହୃଦ ଯାଏ ଫାଟି । ଭୟରେ ନ ଫିଟଇ ପାଟି ।।
ତବ ଆଦେଶ ଘେନି ଶିରେ । ଖୋଜିଲି ବହୁ ନଦୀତୀରେ ।।
ଏ ପୁଣ୍ୟବନୁଁ ବହୁ ଦୂରେ । ଭ୍ରମିଲି ନାନା ପଲ୍ଲୀପୁରେ ।।
ଦେଖିଲି ନାହିଁ କାହିଁ ଗାଈ । ସନ୍ଧାନ ନ ମିଳିଲା କାହିଁ ।।
କିପରି ଫେରିବି ଆଶ୍ରମେ । ବହୁତ ବିଚାରିଲି ମନେ ।।
ଗାଈର ନ କଲେ ସନ୍ଧାନ । ନିଶ୍ଚେ ମୁଁ ହରାଇବି ପ୍ରାଣ ।।
ପୁଣି ଭ୍ରମିଲି ଏ ବିଚାରେ । ଅନେକ ସ୍ଥାନେ ଅନାହାରେ ।।
ବଣ ପଡ଼ିଆ ହାଟ ଗ୍ରାମ । ଦେଖିଲି ବୁଲି ଅବିଶ୍ରାମ ।।
ଭ୍ରମିଲି କୋଡ଼ିଏ ଦିବସ । କ୍ଷୁଧାରେ ଶରୀର ଅବଶ ।।
ଦେଖିଲି ଶେଷେ ଏକ ସ୍ଥାନେ । ନିଷ୍ଠୁର କଂସାଇ ଦୋକାନେ ।।
ଝୁଲଇ ଉର୍ଦ୍ଧ୍ୱେ ଗାଈମୁଣ୍ଡ । ତଳେ ବସିଛି ମାଂସ କୁଣ୍ଡ ।।
କଂସାଇ କୁଟେ ହାଡ଼ମାନ । ରକତେ ବୁଡ଼ିଛି ସେ ସ୍ଥାନ ।।
କଂସାଇ ଯିଲା ଧରି ଛୁରି । ନିକଟେ କାଟଇ ବାଛୁରି ।।
ପଡ଼ିଛି ଅନ୍ତ ଲୋମ ଚମ । ଦେଖି ହେଲା ମୋ ମଥାଭ୍ରମ ।।
ଚାହିଁ ମୁଁ ନ ପାରିଲି ସହି । ଅଜ୍ଞାନେ ପଡ଼ିଗଲି ମହୀ ।।
ପୁଣି କ୍ଷଣକେ ଚେତା ପାଇ । ବିଚାରେ ଏ ନୁହଇ ଗାଈ ।।
ହେବ ବା ଆନ ଅନ୍ୟ ପଶୁ । ଶୋକ ଅଧୈର୍ଯ୍ୟ ମୋହବଶୁଁ ।।
ପୁଛିଲି କଂସାଇକି ଯାଇ । ତୁମେ କି କାଟୁଅଛ ଗାଈ ।।
ରୁକ୍ଷ କଟାକ୍ଷେ ମତେ ଚାହିଁ । କର୍କଶେ କହିଲା କଂସାଇ ।।
ଗୋରୁ ନୁହେ ତ ଆଉ କଣ । ଛଦ୍ମେ[୮] ପଚାରେ ବ୍ରାହ୍ମଣ ।।
ଦେଖୁଛୁ ଦୁଇ ଆଖି ଖୋଲି । ପଚାରୁ ଆହୁରି କି ବୋଲି ।।
ତହୁଁ ମୁଁ ବିନୀତ ବଚନ । କହି ତୋଷିଲି ତାର ମନ ।।
କ୍ରୋଧ ନ କର ଶୁଣ ଭାଇ । ମୋ ମନେ କିଛି ଛନ୍ଦ[୯] ନାହିଁ ।।
ମୁଁ ବ୍ରହ୍ମଚାରୀ ଥାଏଁ ବନେ । କେବେ ହେଁ ହେଲେ ମୋ ନୟନେ ।।

---

୮- କପଟରେ; ୯- କପଟ/ଭିନ୍ନ ବିଚାର;

ଗୋଛେଦ ଦୃଶ୍ୟ ଆସି ନାହିଁ । ତେଣୁ ମୁଁ ପଚାରିଲି ଭାଇ ।।
ଏ ଗାଈ ବଳଦ କି କହ । କର ମୋଠାରେ ଅନୁଗ୍ରହ ।।

### ଘାତକ ଉବାଚ

କହୁଚ ତୁମେ ଥାଅ ବଣେ । ଏଥି ଅଇଲ କି କାରଣେ ।।
ଏ ସବୁ ପଚାର କିପାଇଁ । ବଅଲ[୧୦] ନୁହେ ଏହା ଗାଈ ।।
କି ଅବା ତୁମେ ଗୁପ୍ତ ଚାର । ମନରେ କରୁଛ ବିଚାର ।।
ଆଣିଛି ଏ ଗାଈ ଚୋରାଇ । ମୋଠାରୁ କଥା ନେବା ପାଇଁ ।।
ପଚାର ମତେ କଅଁଳାଇ । ଛଦ୍ମେ ଡାକି ଭାଇ ଭାଇ ।।
ତହୁଁ ମୁଁ ସକଳ ବୃତ୍ତାନ୍ତ । କହିଲି ତାକୁ ଆଦ୍ୟ ପ୍ରାନ୍ତ ।।
ଶୁଣି ମୋଠାରୁ ସର୍ବକଥା । ହେଲା ତା ମନେ ଗୁରୁବ୍ୟଥା ।।
ଧେନୁ ପ୍ରାପ୍ତିର ବିବରଣ । କଲା ସେ ବିସ୍ତର ବର୍ଣ୍ଣନ ।।
ସଂକ୍ଷେପେ କହେଁ ଗୁରୁଦେବ । ଅଧିକ କହିଲେ କି ହେବ ।।
ସପ୍ତାହ ଅନ୍ତରେ ବୀଥିକା[୧୧] । ବସିଲେ ଲାଗେ ଗୋରୁବିକା ।।
ବ୍ରାହ୍ମଣ ଆଦି ଯେତେ ଜାତି । ଗୋରୁ ବିକ୍ରୟେ ଛନ୍ତି ମାତି ।।
ବଳଦେ କରୁଛନ୍ତି ହଳ । ସରିଲେ ସେ ବଳଦ ବଳ ।।
ବିକନ୍ତି ବୃଦ୍ଧକାଳେ ହାଟେ । କଂସାଇ କିଣିନେଇ କାଟେ ।।
ଗୋ-ସେବା ନ କରନ୍ତି ନର । ସରବେ ଚଷନ୍ତି ଗୋଚର ।।
ଧେନୁ ନ ପାଇ ତୃଣଜଳ । କଙ୍କାଳ ମାତ୍ର ଟଳ ଟଳ ।।
ଗୋରୁଙ୍କୁ ନ ଦେଇ ଭୋଜନ । ନିଶ୍ଚିନ୍ତେ ଖାଉଛନ୍ତି ଜନ ।।
ଗୋ-ବୃଷ ନ ପାଇ ଆହାର । ହେଲେଣି ଅତି ନାରଖାର ।।
ଧେନୁ ବଳଦ ବୃଷ ବିକା । କଲେଣି ସକଳେ ଜୀବିକା ।।
କଂସାଇ ଗୋରୁ ବଧ କରେ । ଦେଖନ୍ତି ସମସ୍ତେ ନେତ୍ରରେ ।।
ତଥାପି ଅଳ୍ପ ଧନ ପାଇ । ବିକନ୍ତି କଂସାଇକି ଗାଈ ।।
ଆଦର ସେନେହ ଭକତି । ନାହିଁ କାହାରି ଗୋରୁ ପ୍ରତି ।।
ଗୋମାତା ଗୋରୁ ଯେ ଦେବତା । ନାହିଁ ଆଉ ଏ ଶାସ୍ତ୍ରକଥା ।।
କେତେକ ଚଣ୍ଡାଳ ପାଷଣ୍ଡ । ବିକ୍ଷେ ମାରନ୍ତି ଗୋରୁ ଷଣ୍ଢ ।।
ବିକନ୍ତି ନେଇ ତାଙ୍କ ଚର୍ମ । ଲୁପ୍ତ ହେଲାଣି ଆସି ଧର୍ମ ।।
ଶୁଣି ଏ ସର୍ବ ବିବରଣ । ମୁଖେ ମୋ ନ ଆସେ ବଚନ ।।

---

୧୦- ବଳଦ; ୧୧- ଧାଡି ଧାଡି ହୋଇ ରହିଥିବା ଦୋକାନ/ହାଟ;

ଆବର କହିଲା କଂସାଇ । ହାଟରୁ କିଣିଲି ଏ ଗାଈ ।।
ବ୍ରାହ୍ମଣ ଜଣେ ଦେଲା ବିକି । କହିଲି ବିକୁଛ କାହିଁକି ।।
ଏ ଗାଈ ଦେହ ଅଛି ପୂରି । ନାହିଁକି ଏହାର ବାଛୁରି ।।
ଏଭଳି ଦୁହାଁଳିଆ ଗାଈ । ଖୋଜିଲେ କାହିଁ ତ ନ ପାଇ ।।
କାହୁଁ ପାଇଛ ଏହୁ ଗାଈ । କି ଅବା ଆଣିଛ ଚୋରାଇ ।।
କପଟ ନ କରି ବ୍ରାହ୍ମଣ । କହିଲା ନୁହେଁ ଚୋରାଧନ ।।
କେଜାଣି କାହାର ଏ ଗାଈ । ଗଲା ମୋହର କ୍ଷେତ ଖାଇ ।।
ବାଛୁରି ନ ଥିଲା ସଙ୍ଗରେ । ବାନ୍ଧି ରଖିଲି ଆଣି ଘରେ ।।
ରହିଲି ଦିଦିନ ତକାଇ[୧୨] । କେହି ନଇଲା ଖୋଜି ଗାଈ ।।
ତେଣୁ ମୁଁ କରୁଛି ବିକ୍ରୟ । କିଣ ନ କରି ମନେ ଭୟ ।।
ତୁମେ ତ ତୁରନ୍ତ ନିକାଶ[୧୩] । କରି ବିକିବ ଏହା ମାଂସ ।।
ବ୍ରାହ୍ମଣଠାରୁ ଶସ୍ତା ପାଇ । କିଣି ମୁଁ କାଟୁଛି ଏ ଗାଈ ।।

## ମୁନି ଉବାଚ

ନ କହ ମତେ କିଛି ଆଉ । ଶୀଘ୍ର ମୋର ଏ ଜୀବ ଯାଉ ।।
ଗୋ-ଜାତି ଦୁର୍ଦ୍ଦଶା ଏପରି । ଅଛି କେମନ୍ତେ ବସୁନ୍ଧରୀ ।।
ହତ୍ୟା ନିମନ୍ତେ ଗୋ-ବିକ୍ରୟ । ହେଲାଣି ଧର୍ମମୂଳ କ୍ଷୟ ।।
ଏତିକି କହି ମୁନି କ୍ଷୁନ୍ନେ । ନିର୍ବେଦେ ରହିଲେ ମଉନେ ।।
ଶିଷ୍ୟ ରହିଲେ ଶଙ୍କାଚିତ୍ତେ । ଭଣିଲା ଦୀନ ଗୋପ ଗୀତେ ।।

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମୁନି ସମୀପେ ଶିଷ୍ୟ ଗୋହରଣ କଥା ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ଘଡ଼ିକ ଅନ୍ତେ ତପୋଧନ । ଭାଷିଲେ ଫିଟାଇ ନୟନ ।।
ଶୁଣ ହେ ବତ୍ସ ବ୍ରହ୍ମଚାରୀ । ସ୍ଥିର କରିଛି ମୁଁ ବିଚାରି ।।
ନାହିଁ ଏ ଦେହେ ପ୍ରୟୋଜନ । ମରିବି କରି ଅନଶନ ।।
କାଳର ଗତି ଭୟଙ୍କର । ପାପେ ପଡ଼ନ୍ତି ସର୍ବ ନର ।।
ବ୍ରାହ୍ମଣ ଯହିଁ ବିକେ ଗାଈ । ମ୍ଳେଚ୍ଛ ଘାତୁକେ ଧନ ପାଇ ।।

୧୨- ଅପେକ୍ଷା କରି; ୧୩- ହତ୍ୟା/ଧ୍ୱଂସ;

ନିଜସ୍ୱ ପରସ୍ୱ ନବାରେ । ଧର୍ମ କି ଅଛି ଏ ସଂସାରେ ।।
ଅପରାପର ବର୍ଣ୍ଣମାନେ । ନ ରହି ବିହିତ ବିଧାନେ ।।
କରନ୍ତି ଯେବେ ଗୋ-ବିକ୍ରୟ । ଜାଣ ଏ ବିତ୍‌ପାତ ସମୟ ।।
ଗୃହସ୍ଥ ଯେବେ ଗୋରୁ ପ୍ରତି । ନ କରେ ଆଦର ଭକତି ।।
ଗୋ-ସେବା ନ କରନ୍ତି ନାରୀ । ଦିଅନ୍ତି ନାହିଁ ତୃଣ ବାରି ।।
ପୋଛନ୍ତି ନାହିଁ ସେ ଗୁହାଳ । ଆସିଲା ଏ ବିଷମ କାଳ ।।
ଏ କଳିଯୁଗେ ଲୋକଗଣ । ଲୋଡ଼ନ୍ତି ଆପଣା ମରଣ ।।
ଯାଇଛି ସବୁ ଧର୍ମ ନାଶ । ଦେବତା ଗୋରୁରେ ବିଶ୍ୱାସ ।।
ଚଳାଉଥିଲା ଧର୍ମ ନାବ । ସେ ଏବେ ଘଟିଲା ଅଭାବ ।।
ଏ ଶେଷ ସମୟ ପ୍ରବେଶ । ଏଣିକି ମହା ଘୋର କ୍ଲେଶ ।।
ଗୋରୁ ଯେ ସାକ୍ଷାତେ ଦେବତା । ଜୀବର ହରତା[୧୪] କରତା ।।
ଗୋରୁ ଅମୃତ ରସଦାତା । ଜଗତ ଜନ ପିତାମାତା ।।
ଇହ ସଂସାରେ ମହାଧନ । ମରଣେ ମୁକତି କାରଣ ।।
ଏ ତଥ୍ୟ ଛୁଡ଼ିଲେଣି ଲୋକେ । ମରିବେ ଏବେ ରୋଗଶୋକେ ।।
ଦେଖି ଲୋକରେ ଏ ବେଭାର । ଗୋ-ଜାତି ପ୍ରତି ଅତ୍ୟାଚାର ।।
ଜାଣୁଛି ଏ ଘୋର ଦୁର୍ଗତି । ପାପେ ବୁଡ଼ିବ ବସୁମତୀ ।।
ଛାଡ଼ିବି ଏବେ କଳେବର । ବଞ୍ଚିବା ନୁହେଁ ଶ୍ରେୟସ୍କର ।।
ମୋର ଏ ପତ୍ନୀ ପତିବ୍ରତା । ଥିଲା ସତତ ଧର୍ମରତା ।।
ଥିଲା ତତ୍ପର ସେବା ବ୍ରତେ । ସେ ଏବେ ଛାଡ଼ିଗଲା ମତେ ।।
ଆଶ୍ରମ ଧେନୁ ଲାଗି ନାରୀ । ମଲା ଏ ଜାଣ ବ୍ରହ୍ମଚାରୀ ।।
ଧେନୁ ଆଶ୍ରମୁଁ ଯିବା ଦିନୁଁ । ରହିଲା ଜଳପାନ ବିନୁଁ ।।
ତୁମ୍ଭେ ଆସିବା ପୂର୍ବକ୍ଷଣେ । ଗଲା ଏ ଅମର ଭୁବନେ ।।
ଗଲା ଅପୂର୍ବ ଦିବ୍ୟ ରଥେ । କୁସୁମ ବରଷିଲା ପଥେ ।।
ଏ ନାରୀ ଅତି ଭାଗ୍ୟବତୀ । ଥିଲା ତପସ୍ୟା ମୂର୍ତ୍ତିମତୀ ।।
ମୋ ତପ ଏହାର ସଙ୍ଗତେ । ସମାପ୍ତ ହେଲା ଏ ଜଗତେ ।।
ମୋ ବିନା କ୍ଷଣେ ଧୈର୍ଯ୍ୟ ଧରି । ରହି ନ ପାରେ ଏ ସୁନ୍ଦରୀ ।।
ଏ ଏବେ ସ୍ୱର୍ଗଲୋକେ ଯାଇ । ଥିବ ମୋହର ବାଟ ଚାହିଁ ।।
ନ କରି ବିଳମ୍ବ ଅଧିକ । ହେବି ମୁଁ ସେ ପୁର ପଥିକ ।।
ପୁଣି ଆଶ୍ରମ ଧେନୁ ବଧ । ହୋଇଛି ସେ ଅନ୍ୟ ଆପଦ ।।

---

୧୪- ସଂହାର/ବହନକାରୀ;

ସେ ହତ୍ୟା ପାପ ଶିରେ ବହି । ଗୋ-ରକ୍ତେ ସିକ୍ତ ଦେଖି ମହୀ ।।
ବଞ୍ଚି ରହିବା ଅକଲ୍ୟାଣ । ତେଜିବି ଯୋଗେ ଶୀଘ୍ର ପ୍ରାଣ ।।
ଗୋ-ହତ୍ୟା ପାପୁଁ ମୁକ୍ତି ଆଶେ । ରହିବି ପୁଣି ଉପବାସେ ।।
କଠୋର ତପସ୍ୟା ସାଧନେ । ଦେହ ଛାଡ଼ିବି ଯୋଗାସନେ ।।
ଏହା ମୋ ମନେ ସୁନିଶ୍ଚୟ । ଏଥିରେ ନ ଘେନ ସଂଶୟ ।।
କହିଲି ମୋର ମନକଥା । ନ ପାଅ ବାବୁ ମର୍ମେ ବ୍ୟଥା ।।
କର ଲୌକିକ ବ୍ୟବହାର । ଏ ଗୁରୁପତ୍ନୀଙ୍କ ସଂସ୍କାର ।।
ମୋ ଆଶୀର୍ବାଦ ଘେନି ଶିରେ । ପ୍ରସ୍ଥାନ କର ନିଜ ଘରେ ।।
ତୁମ୍ଭ ସେବାରେ ମୁଁ ପ୍ରସନ୍ନ । ସରିଛି ତୁମ୍ଭ ଅଧ୍ୟୟନ ।।
ଲଭିଛ ଶାସ୍ତ୍ରେ ପାରଗତା । ତୁମ୍ଭେ ସୁଜ୍ଞାନୀ ସୁବକତା ।।
ସାଧିବ ବୁଝି ମୋ ଉଦ୍ଦେଶ୍ୟ । କି ଆଉ କହିବି ବିଶେଷ ।।
ଶିଷ୍ୟ କହନ୍ତି ପରିତାପେ । ମୁଁ ଯେ ମଜ୍ଜିଲି ମହାପାପେ ।।
ମୋ ଦୋଷେ ହେଲା ଏ ଗୋବଧ । ଘଟିଲା ସମସ୍ତ ବିପଦ ।।
ଏ ଗୁରୁପତ୍ନୀ ସୁଲକ୍ଷଣୀ । ପ୍ରତ୍ୟକ୍ଷେ ଥିଲେ ମୋ ଜନନୀ ।।
ପାଳିଲେ ମତେ କି ଆଦରେ । ତନୁ ତେଜିଲେ ମୋ ଦୋଷରେ ।।
ଏକେ ଗୋ-ବଧ ମହାପାପ । ସ୍ତ୍ରୀ-ବଧ ପାପେ ନାହିଁ ମାପ ।।
ତା'ପରେ ପୁଣି ଗୁରୁନାରୀ । ମୁଁ କି ତ୍ରିପାପୁଁ ହେବି ପାରି ।।
ଆପଣ ମୋ ଜୀବନ ଗତି । ଜାଳିଛ ହୃଦେ ଜ୍ଞାନ-ବତୀ ।।
ମତେ ତେଜି ଏ ଭବଜଳେ । ଇଚ୍ଛାରେ ଯିବ ନିତ୍ୟସ୍ଥଳେ ।।
କିପାଇଁ ଏତେ ପାପ କରି । ରହିବି ମୁଁ ବା ଦେହ ଧରି ।।
ଏ ଯେ ଦୁସ୍ତର ପାପରାଶି । ଗ୍ରାସିଛି ମତେ ଏବେ ଆସି ।।
ଏଥିରୁ କହ କି ପ୍ରକାରେ । ଉଦ୍ଧାର ପାଇବି ସଂସାରେ ।।
ସକଳ ଦିଗ ମତେ ଶୂନ୍ୟ । ନାହିଁ ମୋହର ତିଳେ ପୁଣ୍ୟ ।।
ହେ ତପୋଧନ ଦୟା ବହି । ଉପାୟ ମୋତେ ଦିଅ କହି ।।
ନ ହେଲେ ନିଜ ସଙ୍ଗେ ନିଅ । ସଦା ଚରଣ ସେବା ଦିଅ ।।
ବୁଦ୍ଧି ବିବେକ ମୋର ନଷ୍ଟ । ହୃଦେ ହେଉଛି ଗୁରୁ କଷ୍ଟ ।।
ଉଜ୍ଜ୍ୱଳ ଆଲୋକ ଦେଖାଅ । କର୍ତ୍ତବ୍ୟ ପଥ ମୋ ବତାଅ ।।

## ଗୁରୁ ଉବାଚ

ବିକଳ ନୁହ ବ୍ରହ୍ମଚାରୀ । ହେବ ସକଳ ପାପୁଁ ପାରି ।।
ଏ ଯେ ଜଗତ କାଳକାରା । ଏଠାରେ କାହାର କି ଚାରା ।।

ଇନ୍ଦ୍ରଙ୍କୁ କହିଲେ ଯା ଆଉ । ଶୁଣି ସନ୍ଦେହ ମନୁଁ ଯାଉ ।।
ଭୀଷ୍ମ ଏ ତତ୍ତ୍ୱ କଥାନ୍ତରେ । କହି ଅଛନ୍ତି ଯୁଧିଷ୍ଠିରେ ।।
ବ୍ରହ୍ମା ବାସବ କଥାମୃତ । ଏକାନ୍ତ ଚିତ୍ତେ ଶୁଣ ପୁତ୍ର ।।

## ବ୍ରହ୍ମା ଉବାଚ

ଗୋଗଣ ମହିମା ଅପାର । ତାହା ନ ଜାଣେ ସୁନାସୀର[୫୧] ।।
ଗୋଲୋକ ଦେବଲୋକ ପରେ । କହିଛି ଏହା ପୂର୍ବେ ଥରେ ।।
ଗୋ-ଜାତି ପରମ ପ୍ରଭାବ । ଏକାନ୍ତେ ଶୁଣ ହେ ବାସବ ।।
ଗୋରୁ ବୋଲାନ୍ତି ଯଜ୍ଞ ଅଙ୍ଗ । କହିଛି ପୂର୍ବେ ଏ ପ୍ରସଙ୍ଗ ।।
ଗୋରୁ ଦିଅନ୍ତି ଦୁଧ ଘୃତ । ତହିଁ ପ୍ରଜାଏ ଉପକୃତ ।।
ଗୋସୁତେ ଚଷନ୍ତି ମୃତ୍ତିକା । ଚଳାନ୍ତି ପ୍ରଜାଙ୍କ ଜୀବିକା ।।
ଜନମେ ଧାନ୍ୟ ବୀଜ ଆଦି । ତହିଁରେ ଚଳେ ଯଜ୍ଞବିଧି ।।
ସହି କଠୋର ଭୋକ ଶୋଷ । ବହନ୍ତି କେତେ ଭାର କ୍ଳେଶ ।।
କରନ୍ତି ଜନ ଉପକାର । ଗୋ-ଜାତି ସୁକୃତ ଅପାର ।।
ଯେ ସଦା ପର ହିତ ସାଧେ । ସେ ବସେ ଦେବଗଣ କାନ୍ଧେ ।।
ଆପଣେ ବହୁ ଦୁଃଖ ସହି । ମରେ ଯେ ନିତି ପର ପାଇଁ ।।
ନାହିଁ ତା ସୁକୃତର ସୀମା । ଦେବେ ଅଜ୍ଞାତ ତା ମହିମା ।।
ତେଣୁ ଗୋଲୋକ ଶ୍ରେଷ୍ଠ ଅତି । ଦେବହୁଁ ପ୍ରଧାନ ଗୋ-ଜାତି ।।
ଗୋରୁର ପ୍ରତି ଲୋମକୂପେ । ଦେବେ ବସନ୍ତି ନାନାରୂପେ ।।
ବହୁ ତପସ୍ୟା ଫଳେ ଗାଭୀ । ଅଛନ୍ତି ଏ ପ୍ରଭାବ ଲଭି ।।
ବିଷ୍ଣୁ ବାସବ ଆଦି ଦେବେ । ଜନ୍ମିଲେ ଅଦିତି ଗରଭେ ।।
ପୁତ୍ରାର୍ଥେ କରି ଘୋର ତପ । ଲଭିଲେ ଏ ଭାଗ୍ୟ ଅମାପ ।।
ସୁରଭୀ ଦକ୍ଷଙ୍କ ନନ୍ଦନା । ଦେଖିଣ ଅଦିତି ସାଧନା ।।
ତପ ସାଧିବା କଲେ ସ୍ଥିର । ଗଲେ ସେ କୈଳାସ ଶିଖର ।।
ସେଠାରେ ବସି ଯୋଗାସନେ । ତପ ସାଧିଲେ ଏକଧ୍ୟାନେ ।।
ଦଶ ସହସ୍ର ବର୍ଷ କାଳ । ତେଜି ସଂପୂର୍ଣ୍ଣ ଅନ୍ନ ଜଳ ।।
ସୁରଭୀ କଠୋର ତପସ୍ୟା । ଦେବଙ୍କୁ ହୋଇଲା ସମସ୍ୟା ।।
ଗୋ-ସଙ୍ଗେ ଦେବ ଋଷିଗଣ । କଲେ ସେ କୈଳାସେ ଗମନ ।।
ତପସ୍ୟା ଦେଖି ହେଲେ ଛନ୍ନ । ବନ୍ଦିଲେ ସୁରଭୀ ଚରଣ ।।

---

୫୧- ଇନ୍ଦ୍ର

ମୁଁ ପଚାରିଲି ସୁରଭୀଙ୍କି । ତପସ୍ୟା କରୁଛ କାହିଁକି ॥
ତୁମ୍ଭ ଏ ଦୁଷ୍କର ତପସ୍ୟା । ଦେଖି କରନ୍ତି ଦେବେ ହିଂସା ॥
ତୁମ୍ଭ ତପେ ମୁଁ ଅତି ପ୍ରୀତ । ମାଗ କି ବର ଅଭିପ୍ରେତ ॥
ଯେ ବର ତୁମ୍ଭ ଇଚ୍ଛା ଦେବି । କହ ମୁଁ ତାହା ସତ୍ୟ ଦେବି ॥

## ସୁରଭୀ ଉବାଚ

ହେ ସର୍ବ ଲୋକ ପିତାମହ । କରିଛ ମତେ ଅନୁଗ୍ରହ ॥
ମୋ ପ୍ରତି ଯେବେ ତୁମ୍ଭେ ପ୍ରୀତ । ମୁଁ ହେଲି ଆଜି କୃତକୃତ୍ୟ ॥
ଲଭିଛି ଯେଣୁ ତୁମ୍ଭ ପ୍ରୀତି । ନାହିଁ ମୋ ଆନ ବରେ ମତି ॥

## ବ୍ରହ୍ମା ଉବାଚ

ସୁରଭୀ କଲ ଯେ ତପସ୍ୟା । ନ ରଖି ବର ଲାଭେ ଆଶା ॥
ତେଣୁ ମୁଁ ହୋଇ ସୁପ୍ରସନ୍ନ । କରୁଛି ଏହି ବର ଦାନ ॥
ହେଉ ତୁମ୍ଭର ଅମରତ୍ୱ । ଲୋକରେ ପ୍ରକାଶୁ ମହତ୍ତ୍ୱ ॥
ତ୍ରିଲୋକ ପରେ ତୁମ୍ଭ ସ୍ଥାନ । ଘେନ ଗୋ ଏ ଶ୍ରେଷ୍ଠ ସମ୍ମାନ ॥
ଗୋଲୋକ ହେଉ ଲୋକେ ଖ୍ୟାତ । ତୁମ୍ଭେ ବୋଲାଅ ଲୋକମାତ ॥
ତୁମ୍ଭର ସନ୍ତାନ ସନ୍ତତି । ମର୍ତ୍ତେ ଲଭିବେ ଉତପତ୍ତି ॥
ସାଧିବେ ସଦା ପ୍ରଜା ହିତ । ହୋଇବ ଜଗତ ପୂଜିତ ॥
ସହିଣ କଷ୍ଟ ନିରନ୍ତର । କରିବେ ଲୋକ ଉପକାର ॥
ଧରିବେ ତୁମ୍ଭରି ଲକ୍ଷଣ । ଭୋଗରେ ନ କରିବେ ମନ ॥
ଦେବେ ସକଳେ ଦିବ୍ୟ ଭୋଗ । ସାଧିବେ ଏହି କର୍ମଯୋଗ ॥
ମର୍ତ୍ତେ ଏ କର୍ମଯୋଗ ଶେଷେ । ଆସିବେ ପୁଣି ତୁମ୍ଭ ପାଶେ ॥
ରହିବେ ଗୋଲୋକେ ନିଶ୍ଚିନ୍ତ । ଭୁଞ୍ଜିବେ ଅକ୍ଷୟ ଅମୃତ ॥
ସୁଭାଗ୍ୟବତୀ ତୁମ୍ଭେ ଧନ୍ୟା । ବ୍ୟାପନ୍ତୁ ତୁମ୍ଭ ପୁତ୍ରକନ୍ୟା ॥
ମନୁଷ୍ୟଲୋକେ ଦେଶେ ଦେଶେ । ବଞ୍ଚାନ୍ତୁ ଲୋକେ ସୁଧାରସେ ॥
ଯେ ସୁଖ ତୁମ୍ଭ ଅଭିପ୍ରେତ । ତା ସବୁ ହେବ ପରାପତ ॥
ଆଲୋକେ ହେଉ ତୁମ୍ଭ ବାସ । ଯହିଁ ନ ପଶେ ମୃତ୍ୟୁ ତ୍ରାସ ॥
ଏପରି ଗୋଲୋକ ଉତ୍ପତ୍ତି । ବୁଝ ଏ ତତ୍ତ୍ୱ ଶଚୀପତି ॥
ଗୋଲୋକେ ନାହିଁ ଜରା ଶୋକ । ସେ ତେଜେ ମଳିନ ପାବକ[୫୨] ॥
ଦିବ୍ୟ କାନନ ଦିବ୍ୟ ଗିରି । ଦିବ୍ୟ ଭଜନ ଦିବ୍ୟ ଶିରୀ ॥

---

୫୨- ଅଗ୍ନି

ଦିବ୍ୟ ବିମାନ ଇଚ୍ଛା ଗତି । ଅଚିନ୍ତ୍ୟ ସେ ଲୋକ ବିଭୂତି ।।
ନାହିଁ ସେ ପୁରେ ଦିବାନିଶି । ଗତି ନ କରେ ରବି ଶଶୀ ।।
ଦିବ୍ୟ ଆଲୋକ ଦିବ୍ୟ କାନ୍ତି । ସୁରଭି ହିଲ୍ଲୋଳ ସୁଶାନ୍ତି ।।
ଦେବତା ମାନବ କଳ୍ପନା । ନ କରି ପାରେ ଯା ରଚନା ।।
ଗୋଲୋକେ ତାହା ସବୁ ଠୁଳ । ସଂଭୋଗ ଐଶ୍ୱର୍ଯ୍ୟ ସଙ୍କୁଳ ।।
ତପସ୍ୟା ବ୍ରହ୍ମଚର୍ଯ୍ୟ ଦାନ । ସତ୍ୟ ତିତିକ୍ଷା[୫୩] ଦମ[୫୪] ଧ୍ୟାନ ।।
ଏ ଆଦି କଠୋର ସାଧନେ । ଗୋଲୋକେ ଯାନ୍ତି ଯୋଗୀଜନେ ।।
ଅସୀମ ଗୋଲୋକେ ବିଭବ । କିବା ମୁଁ ବର୍ଣ୍ଣିବି ବାସବ ।।
ଏ ପୁଣ୍ୟ ଗୋଲୋକ ଚରିତ । ଶୁଣେ ଯେ ସେ ହୁଏ ପବିତ୍ର ।।
ପୂରେ ତା ସକଳ କାମନା । ସତ୍କର୍ମେ ବଢ଼ଇ ସାଧନା ।।
ବଂଶ ପାବନ ସୁତ ଲଭେ । ବିଳାସେ ଅତୁଳ ବୈଭବେ ।।
ନାରୀ ହୁଅନ୍ତି ଭାଗ୍ୟବତୀ । ସୁପୁତ୍ରୀ ପତିଭକ୍ତା ସତୀ ।।
ଗୃହେ ବିରାଜେ ଶାନ୍ତି ସଦା । ଗୋ-ମାତା ହୁଅନ୍ତି ବରଦା ।।
ସର୍ବ ଦୁରିତ ଯାଏ କ୍ଷୟ । କର ହେ ଜନେ ଏଣେ ଲୟ ।।
ବ୍ରହ୍ମା ଯା କହିଲେ ବାସବେ । ଅନ୍ୟଥା ନ ଭାବ ତା କେବେ ।।
ଏ ବ୍ରହ୍ମା ବାସବ ସମ୍ବାଦ । ସର୍ବ ବିପଦ-ବିଷେ ଗଦ ।।
ପଢ଼ି ଏହାକୁ କର ହେତୁ । ଜାଣ ଗୋ-ଜାତି ଧର୍ମ ସେତୁ ।।
କର ଗୋ-ରକ୍ଷା ସର୍ବମତେ । ପାମର ଗୋପ କହେ ଗୀତେ ।।

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ମହାଭାରତାନ୍ତର୍ଗତେ ଆନୁଶାସନିକେ ପର୍ବଣି
ସୁରଭୀ ତପସ୍ୟା ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟ ।

## ଊନବିଂଶ ଅଧ୍ୟାୟ

### ଗୁରୁ ଉବାଚ

ହେ ବତ୍ସ ପ୍ରଶ୍ନର ଉତ୍ତର । ହେଲା ତ ତୁମ୍ଭର ଗୋଚର ।।
ସୁନାସୀରେ ଯା ଆଦିପିତା । କହିଲେ ଗୋ-ଉତ୍ପତ୍ତି ଗୀତା ।।
ବୁଝିଲଟି କି ତାର ତତ୍ତ୍ୱ । ଗୋ-ଜାତି ଗୌରବ ମହତ୍ତ୍ୱ ।।
ମନରୁ ଗଲା ତ ସଂଶୟ । ନିକଟ ଏବେ ମୋ ସମୟ ।।
ଶୀଘ୍ର ମୁଁ ଛାଡ଼ିବି ଏ ଦେହ । ପଚାର ଆଉ କି ସନ୍ଦେହ ।।

୫୩- ସହିଷ୍ଣୁତା/କ୍ଷମା; ୫୪- ଇନ୍ଦ୍ରିୟନିଗ୍ରହ;

## ଶିଷ୍ୟ ଉବାଚ

ଗୋ-ଜାତି ମାହାତ୍ମ୍ୟ ଆଖ୍ୟାନ । ଶୁଣି ମୁଁ ହୋଇଅଛି ଧନ୍ୟ ।।
ଗୋ-ଜାତି ଉପକାର କିଏ । ସୁଝି ପାରିବ ନରଦେହେ ।।
ସନ୍ଦେହ ନ ମେଣ୍ଟିଲା କିନ୍ତୁ । ଗୋ-ଜାତି ପଶୁ କେଉଁ ହେତୁ ।।

## ଗୁରୁ ଉବାଚ

ଗୋ-ଜାତି ପଶୁରୂପ ମାତ୍ର । ଦେବହୁଁ ଅଧିକ ପବିତ୍ର ।।
ନର ଦେବତା ଆଉ ପଶୁ । ବିଭିନ୍ନ ଗୁଣ କର୍ମ ବଶୁଁ ।।
ରୂପ ଆକାରେ ଯେ ବିଶେଷ । ତହିଁରେ ଲାଭକ୍ଷତି କିସ ।।
ମାନବ କରେ ଅହଙ୍କାର । ମଣେ ନିଜକୁ ସର୍ବୋପର ।।
ଗୋ ତହୁଁ ବଡ଼ ସେ କିପରି । କହ ବିଚାରି ବ୍ରହ୍ମଚାରୀ ।।
ଯେ ନର ଅଙ୍ଗ ସୁଘଟନା । ଅପର ସଙ୍ଗେ ତା ତୁଳନା ।।
କନ୍ଧ ବୃଷଭକନ୍ଧ ସମ । ମୃଗ ନୟନ ମନୋରମ ।।
କଟି କେଶରୀ ସଙ୍ଗେ ତୁଳ । ସ୍ୱନରେ ନ ଜିଣେ କୋକିଳ ।।
ନାସା ତୁଳନା ଶୁକ ସଙ୍ଗେ । ବିଶେଷ କି ମାନବ ଅଙ୍ଗେ ।।
ଭୋଜନ ଶୟନ ମୈଥୁନ । ଏ ଆଦି କ୍ରିୟା ସାଧାରଣ ।।
ପଶୁ ପରାଏ କରେ ନର । ଏଥି କି ବିଶେଷ ତାହାର ।।
ଧର୍ମ ହିଁ ମାନବ ବିଶେଷ । ଧର୍ମେ ତରେ ସେ ଭବକ୍ଲେଶ ।।
ହୁଏ ସେ ଧର୍ମପୋତେ ପାର । ଏ ଘୋର ଦୁସ୍ତର ସଂସାର ।।
ଅଛି ନରର ବୁଦ୍ଧି ବଳ । ଅପୂର୍ବ କଳ୍ପନା କୌଶଳ ।।
ତେଣୁ ସେ ବସି ଧର୍ମନାବେ । ଆପଣା ବୁଦ୍ଧିର ପ୍ରଭାବେ ।।
ଜିଣି ପାରଇ ତିନି ଲୋକ । ଏହାହିଁ ମାନବର ଟେକ ।।
ମାତ୍ର ଏ ସଂସାରେ ମାନବ । କରଇ କେବଳ ଗରବ ।।
ନିଜକୁ ମାତ୍ର ବଡ଼ ମଣେ । ଭାବେ ତା ପରି ନାହିଁ ଜଣେ ।।
ସ୍ୱାର୍ଥେ ଜଡ଼ିତ ରହେ ନିତି । ତେଣେ ହୁଅଇ ଆତ୍ମଘାତୀ ।।
ଅପର ସୌଭାଗ୍ୟେ କାତର । ହିଂସଇ ପରେ ନିରନ୍ତର ।।
କିପାଁଇ ମନେ ଭାବ ତେବେ । ମାନବ ଅଧିକ ଗୌରବେ ।।
ସେ ନର ଜୀବନେ ବିଶେଷ । ନ ଦିଏ ଯେହୁ ପରେ କ୍ଲେଶ ।।
ପର ନିମନ୍ତେ କ୍ଲେଶ ସହେ । ପରର ଭାର ନିଜେ ବହେ ।।
ନ କରେ ନିଜ ପର ଭେଦ । ନ ଧରେ ହୃଦେ ହିଂସାବାଦ ।।

ସଂସାର ହିତେ ଜନ୍ମ ତାର । କରେ ଯେ ସଦା ଏ ବିଚାର ।।
ସେ ନର ଏକା ବୁଦ୍ଧିମାନ । ସେ ଏକା ମାନବ ସନ୍ତାନ ।।
ସେ ଧର୍ମ-ତରଣୀ କାଣ୍ଡାରି । ତରି ଅନ୍ୟକୁ କରେ ପାରି ।।
ସକଳ ଧର୍ମେ ଶ୍ରେଷ୍ଠସାର । କେବଳ ପର ଉପକାର ।।
ଏ ଧର୍ମ ପାଳନ୍ତି ଗୋ-ଜାତି । ଏ ଲାଗି ତାଙ୍କ ଉତପତ୍ତି ।।
ନାହିଁ ତାଙ୍କର ଅହଙ୍କାର । ବିଦ୍ୱେଷ କପଟ ବିଚାର ।।
ସହନ୍ତି ପର ଲାଗି ଦୁଃଖ । କେବେ ହେଁ ନୁହନ୍ତି ବିମୁଖ ।।
ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ।।
ଭୋଗନ୍ତି ଖରା ବର୍ଷା ଶୀତ । ସାଧନ୍ତି ସଦା ଲୋକହିତ ।।
ଧରନ୍ତି ପର ଲାଗି ପ୍ରାଣ । କରନ୍ତି ଲୋକେ ଅନ୍ନ ଦାନ ।।
ଅନ୍ନେ ବର୍ତ୍ତଇ ସାରା ସୃଷ୍ଟି । ଅନ୍ନେ ସକଳ ଜୀବ ପୁଷ୍ଟି ।।
ଗୋ-ଜାତି ବହେ ପର ଭାର । ପରେ ବଞ୍ଚାଏ ଦେଇ କ୍ଷୀର ।।
ମରଇ ପର ଉପକାରେ । ଗୋ ସମ କେ ଆଉ ସଂସାରେ ।।
ନ ମଣ ତାକୁ ପଶୁ କରି । ସେ ଲୋକମାତା ବିଶ୍ୱମ୍ଭରୀ[୫୫] ।।
ଗୋ-ଧର୍ମ ସର୍ବ ଧର୍ମ ସାର । ଯେ କରେ ଗୋ-ଧର୍ମ ଆଚାର ।।
ସାଧଇ ପର ଉପକାର । କ୍ଳେଶରେ ନ ହୁଏ କାତର ।।
ପାଣି ଫଟାଇ ନିଜ ରକ୍ତ । ଅନ୍ୟ ଜୀବନ କରେ ଶକ୍ତ ।।
ପିଆଏ ଅନ୍ୟେ ସୁଧାରସ । ଲଭି ଆପଣା ଦେହେ ପ୍ରାସ ।।
ଅନ୍ୟ ସକାଶେ ମରେ ଶେଷେ । ସେ ଲେଖା ଯଥାର୍ଥ ମନୁଷ୍ୟେ ।।
ଗୋ-ଧର୍ମ କରେ ଯେ ପାଳନ । ଗୋଲୋକେ ଯାଏ ସେହି ଜନ ।।
ଯହିଁ ସୁରଭୀ ସୁତାସୁତ । ଯାନ୍ତି ସାରି ଏ ମର୍ତ୍ତ୍ୟକୃତ୍ୟ ।।
ହେ ଶିଷ୍ୟ ବୁଝିଲ ତ ତତ୍ତ୍ୱ । ଗୋ ତହିଁ ନ ଲାଗେ ପଶୁତ୍ୱ ।।
ଦେଖୁଛ ଯାର ମଳମୂତ୍ର । ଜାହ୍ନବୀ ସମାନ ପବିତ୍ର ।।
ଯାହାର ଲୋମେ ଦେବଗଣ । ବସି ହୁଅନ୍ତି ନିଜେ ଧନ୍ୟ ।।
ଯା ଯୋଗେ ଚଳେ ଲୋକସୃଷ୍ଟି । ଯା ରସେ ଦେବତାଙ୍କ ଦୃଷ୍ଟି ।।
ଜୀବନ ମରଣେ ଯେ ନିତି । ସାଧେ ସର୍ବଥା ଲୋକପ୍ରୀତି ।।
ପ୍ରଜାପତିଙ୍କ ଜ୍ୟେଷ୍ଠା କନ୍ୟା । ଶୁଭା ସୁସ୍ନିଗ୍ଧା ଲୋକମାନ୍ୟା ।।
ସଂସାରେ ନିଜ କର୍ମ ସାରି । ଯିବ ଯେ ନିତ୍ୟଧାମେ ଫେରି ।।
ସାମାନ୍ୟ ପଶୁ ବୋଲି ତାରେ । ଯେ ଜନ ମନରେ ବିଚାରେ ।।

---

୫୫- ଜଗତର ପାଳନକର୍ତ୍ତ୍ରୀ;

ସେ ନିଜେ ପଶୁ ନର ରୂପେ । ଭ୍ରମେ ସଂସାର ଅନ୍ଧକୂପେ ॥
ପଶୁ ରୂପରେ ବିଶ୍ୱସାଇଁ । ଗୋ-କୁଳ ଅଛନ୍ତି ପଠାଇ ॥
ଗୋ-ଜାତି କରି ନିଜ କର୍ମ । ଲୋକଙ୍କୁ ଶିଖାନ୍ତି ଗୋ-ଧର୍ମ ॥
ଆଖି ଫିଟାଇ ବୁଝ ଜନେ । ବୁଡ଼ି ନ ମର ଅଭିମାନେ ॥
ଏଣେ ମିଳିବ ସର୍ବ ଶୁଭ । ତୁଟିବ ଭବବନ୍ଧ କ୍ଷୋଭ ॥
ସାର୍ଥକ ହେବ ଏ ଜୀବନ । କହଇ ଗୋପ ଅକିଞ୍ଚନ ॥

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁଶିଷ୍ୟୋପାଖ୍ୟାନେ ଗୋ-ଧର୍ମ
କଥନେ ନାମ ଊନବିଂଶୋଽଧ୍ୟାୟଃ ।

## ବିଂଶ ଅଧ୍ୟାୟ

### ଶିଷ୍ୟ ଉବାଚ

ହେ ଗୁରୁ ବୁଝିଲି ଗୋ-ତତ୍ତ୍ୱ । ହେଲି ମୁଁ ଏବେ ଶୁଦ୍ଧସତ୍ତ୍ୱ ॥
ପଶୁର କେବଳ ଆକାର । ଗୁଣକର୍ମେ ଗୋ ସର୍ବୋପର ॥
ମନୁ ମୋ ଘୁଞ୍ଚିଅଛି ଭ୍ରମ । ବୁଝିଣ ଯଥାର୍ଥ ଗୋ-ଧର୍ମ ॥
ଘେନିଣ ତବ ଆଜ୍ଞା ଶିରେ । କହିବି ଏ ଧର୍ମ ଲୋକରେ ॥
ଆଉ ଯେ ତତ୍ତ୍ୱ ତପୋଧନ । ଜାଣୁଛ ମୋର ପ୍ରୟୋଜନ ॥
ସଦୟେ ମୋତେ କହ ତାତ । ଜଗତେ କରିବି ବିଖ୍ୟାତ ॥

### ଗୁରୁ ଉବାଚ

ଗୋଲୋକ ତତ୍ତ୍ୱ ଅଛେ ଆଉ । କହିବି ଦିନ ଥାଉଁ ଥାଉଁ ॥
ତାପରେ ତୁମ୍ଭେ ଯିବ ଘର । ଛାଡ଼ିବି ମୁଁ ଏ କଳେବର ॥
ତ୍ରିଲୋକ ଉପରେ ଗୋଲୋକ । ଯହିଁ ନ ପଶେ ଦୁଃଖ ଶୋକ ॥
ସେ ଲୋକ ଐଶ୍ୱର୍ଯ୍ୟ ଅତୁଳ । କହିଛି ପୂର୍ବେ ସେ ସକଳ ॥
ଗୋ-ଲୋକନାଥ ସନାତନ । ଅନନ୍ତ ଶ୍ରୀ ପୁରୁଷୋତ୍ତମ ॥
ଶ୍ରୀ ବାସୁଦେବ ପ୍ରଭୁ ହରି । ଅଟନ୍ତି ଗୋଲୋକବିହାରୀ ॥
ଗୋଲୋକ ତାଙ୍କ ନିତ୍ୟ ଧାମ । ତେଣୁ ଏ ସର୍ବ ପୁରୋତ୍ତମ ॥
ଯହିଁ ବିଜୟେ ପୀତବାସ । ଲାଗିଛି ଯହିଁ ନିତ୍ୟ ରାସ ॥
ଉଚ୍ଛୁଳେ ଯହିଁ ନିତ୍ୟ ପ୍ରେମ । ସେ ଶ୍ରେଷ୍ଠ ବଇକୁଣ୍ଠ ଧାମ ॥
ମୁଁ ଏହା ବର୍ଣ୍ଣିବି ବିସ୍ତାରି । ଲକ୍ଷ୍ମୀ ସେ ପୁର ପରିଚାରୀ ॥

ତହିଁ ପ୍ରବେଶ ଅଧିକାର । ନିଷ୍କାମ ପ୍ରେମେ ପାଏ ନର ।।
ଆଚରି ତପସ୍ୟା କଠୋର । ସୁରଭୀ ନ ବାଞ୍ଛିଲା ବର ।।
ଲୋଡ଼ିଲା ନିଷ୍କାମ ଭକତି । ତା ଲାଗି ଗୋଲୋକ ଉତ୍ପତ୍ତି ।।
ବିହିଲେ ଯହିଁ ବନମାଳୀ । ପରମ ନିତ୍ୟ ରାସସ୍ଥଳୀ ।।
ସୁରଭୀ ସୁଧାରସ ସ୍ରୋତ । ବହଇ ଯହିଁ ଓତପ୍ରୋତ ।।
ଯାଆନ୍ତି ତହିଁ ପୂର୍ଣ୍ଣକାମ । ବସନ୍ତି ତହିଁ ଆତ୍ମାରାମ ।।
ମର୍ତ୍ତ୍ୟେ ନିଷ୍କାମ କର୍ମ ସାଧି । ଗୋ-ଜାତି ତହିଁ ପାନ୍ତି ସିଦ୍ଧି ।।
ଜଗତେ ନର ନାରାୟଣ । ତାଙ୍କୁ ଯେ ସେବେ ଅନୁକ୍ଷଣ ।।
ନିଷ୍କାମ ଭାବ ଧରି ହୃଦେ । ଅନ୍ତେ ଗୋଲୋକେ ବସେ ମୁଦେ ।।
ଗୋଲୋକ-ନାଥ ବାସୁଦେବ । ମାନବେ ବହି ଦୟାଭାବ ।।
ଗୋ-ଜାତି ଅଛନ୍ତି ପଠାଇ । ସଂସାରେ ଲୋକଶିକ୍ଷା ପାଇଁ ।।
ଗୋ-ଜାତି ଦିଏ ଲୋକଶିକ୍ଷା । ନିଷ୍କାମ ଧର୍ମ ମହାଦୀକ୍ଷା ।।
ଈଶ୍ୱର-ଦୂତ ତାକୁ ଜାଣ । ଯେ ଧରେ ଲୋକହିତେ ପ୍ରାଣ ।।
ନିଷ୍କାମେ ଲୋକସେବା କରେ । ଲୋକଙ୍କ ହିତେ ବଞ୍ଚେ ମରେ ।।
ଗୋଲୋକ ପ୍ରାପ୍ତ ଏହି ପଥେ । ଶିଖାନ୍ତି ଗୋ-ଜାତି ଜଗତେ ।।
ନିଜେ ଗୋଲୋକ-ନାଥ ହରି । ମାନବ ରୂପେ ଅବତରି ।।
ଦେଖାଇଛନ୍ତି ଗୋ ମହତ୍ତ୍ୱ । ଶିଖାଇ ଅଛନ୍ତି ଗୋ-ତତ୍ତ୍ୱ ।।
ଜନମ ଲଭି କ୍ଷତ୍ରିକୁଳେ । ରହିଲେ ଗୋପଗୋପୀ ମେଳେ ।।
ବନରେ ଚରାଇଲେ ଗାଈ । ଜନେ ମୋହିଲେ ବଂଶୀ ବାଇ ।।
ଗୋରୁଙ୍କୁ କଲେ ନିଜ ପ୍ରାଣ । ତାହାହିଁ ମଣିଲେ ସମ୍ମାନ ।।
ଗୋ-ସେବା ଲୋକସେବା ବ୍ରତ । ସ୍ୱଦେଶ ସେବା କର ତାତ ।।
ଏ ଉପଦେଶ ଦେଲେ ନନ୍ଦେ । ଗୋପାଳେ ମତାଇ ଆନନ୍ଦେ ।।
ନନ୍ଦ ନ କଲେ ଇନ୍ଦ୍ରପୂଜା । କୋପିଲେ ତେଣୁ ଇନ୍ଦ୍ରରାଜା ।।
ବାସବ କୋପକୁ ନ ଡରି । ନନ୍ଦ ଅର୍ଚ୍ଚନା କଲେ ଗିରି ।।
ସ୍ୱଦେଶ ମାଟି ଶିଳା ତରୁ । ନଦୀ ପର୍ବତ ଜନ ଗୋରୁ ।।
ଏ ଆଦି ଜଙ୍ଗମ ସ୍ଥାବର । ଇନ୍ଦ୍ରହୁଁ ବଳି ଗୁରୁତର ।।
ଏ ତତ୍ତ୍ୱ ବୁଝି ଗୋପବାସୀ । ବାସବ ପୂଜା ଦ୍ରବ୍ୟରାଶି ।।
ଭେଟିଲେ କହି ଗିରିପଦେ । "ସଖା ତୁ ସମ୍ପଦ ବିପଦେ ।।
ତୁ ଗୋପପୁର ମୂର୍ତ୍ତିମନ୍ତ । ତୋ ଘେନି ଆମ୍ଭେ ଭାଗ୍ୟବନ୍ତ ।।
ତୋର ଚରଣେ ପୂଜି ଆଜ । ପୂଜୁଁ ଦେବାଧିଦେବରାଜ ।।

ତୁ ଆମ୍ଭ ଇନ୍ଦ୍ର ଗୋବର୍ଦ୍ଧନ । ତୋ ଯୋଗେ ଆମ୍ଭେ ପାଉ ଅନ୍ନ ।।
ତୁ ଆମ୍ଭ ସର୍ବ ସୁଖଦାତା । ତୁ ଆମ୍ଭ ପ୍ରତ୍ୟକ୍ଷ ଦେବତା ।।
ହେ ଗିରି ହୁଅ ଅନୁକୂଳ । ବଢ଼ନ୍ତୁ ଆମ୍ଭର ଗୋକୁଳ" ।।
ଏ ରୂପେ ଗିରି ପୂଜା ସାରି । ସେ ଗୋପପୁର ନରନାରୀ ।।
ବ୍ରାହ୍ମଣ ଆଦି ସର୍ବବର୍ଣ୍ଣେ । ତୋଷିଲେ ବିବିଧ ବ୍ୟଞ୍ଜନେ ।।
ସୁରସ ଅନ୍ନ ପାଳ ଘାସ । ଗୋରୁଙ୍କୁ କରାଇଲେ ଗ୍ରାସ ।।
ଏରୂପେ ଗୋଲୋକ-ବିହାରୀ । ଲୋକରେ ଅଛନ୍ତି ପ୍ରଚାରି ।।
ଗୋ-ସେବା ମହାପୁଣ୍ୟବ୍ରତ । ଲୋକସେବାର ଅନ୍ତର୍ଗତ ।।
ନୁହଇ ଯାଗ ବଳି ହୋମ । ଗୋ-ସେବା ଲୋକ ସେବା ସମ ।।
ଏ ସେବାବଳେ ଗୋପଜନେ । ଇନ୍ଦ୍ରକୁ ନ ଡରିଲେ କ୍ଷଣେ ।।
ଇନ୍ଦ୍ର ବୋଲାଏ ଦେବରାଜ । ପାଇଲା କିନ୍ତୁ ବଡ଼ ଲାଜ ।।
ଶ୍ରୀକୃଷ୍ଣେ ଶରଣ ପଶିଲା । ଗୋବିନ୍ଦ ନାମ ତାଙ୍କୁ ଦେଲା ।।
ଗୋ-ଜାତି ପ୍ରତି ଦାମୋଦର । କଲେ ଯେ ସେନେହ ଆଦର ।।
ତା ଦେଖି ଭକ୍ତି ଗଦଗଦେ । ସୁରଭୀ ନମିଲା ଶ୍ରୀପଦେ ।।
ବୋଇଲା "ଆଜ ମୋ ସନ୍ତତି । କୃତାର୍ଥ କଲ ହେ ଶ୍ରୀପତି ।।
ତୁମ୍ଭେ ହେ ଗୋକୁଳ-ମହେନ୍ଦ୍ର । ଗୋପରେ ଶ୍ରୀ ଗୋପାଳଚନ୍ଦ୍ର ।।
ଗୋ-ଜାତି ପୁଣ୍ୟ ଯଶରାଶି । ପ୍ରକାଶ କଲେ ବ୍ରହ୍ମରାଶି ।।
ଗୋ-ସେବା ଆଚରି ଆପଣେ । ଶିଖାଇ ଗଲେ ବିଶ୍ୱଜନେ ।।
ଜ୍ୟେଷ୍ଠ ତାଙ୍କର ହଳଧର । ମର୍ତ୍ତ୍ୟେ ଅନନ୍ତ ଅବତାର ।।
ଶ୍ରୀ ବଳଦେବ ନାମେ ଖ୍ୟାତ । ସର୍ବଦା ହଳାୟୁଧହସ୍ତ ।।
ବଳଦଗଣଙ୍କ ଗୌରବ । ଏଥିରୁ କି ଅଧିକ ହେବ ।।
ବଳଦ ନିତି କରେ ଚାଷ । ଗାଇ ଦିଅଇ ସୁଧାରସ ।।
ଏଣେ ନଅନ୍ତି ପ୍ରଜାକୁଳ । ଗୋ-ଜାତି ସର୍ବ ସୁଖମୂଳ ।।
ତେଣୁ ଗୋବିନ୍ଦ ହଳଧର । ପୂଜିଲେ ଗୋ-ଜାତି ପୟର ।।
ଗୋ-ସେବା ସର୍ବ ଧର୍ମସାର । ଏହା ବୁଝିଲେ ସର୍ବ ନର ।।
ହୋଇବ ଏ ସଂସାର ସ୍ୱର୍ଗ । ଲଭିବେ ଲୋକେ ଅପବର୍ଗ ।।
ଶ୍ରୀ ବଳଦେବ ଜଗନ୍ନାଥ । ଦେଖାଇଛନ୍ତି ଏହି ପଥ ।।
ଚାଲ ହେ ଜନେ ଏହି ବାଟେ । ନ ପଡ଼ ବିଷମ ସଂକଟେ ।।
ଏଣେ ହୋଇବ ବିଶ୍ୱହିତ । ଗୋଲୋକନାଥ ହେବେ ପ୍ରୀତ ।।
ଶ୍ରୀ ବଳଦେବ ଜଗନ୍ନାଥ । ପୂର୍ଣ୍ଣ କରିବେ ମନୋରଥ ।।

ଲଭିବ ଧନ ସୁତ ଯଶ । ଅନ୍ତେ ଗୋଲୋକଧାମେ ବାସ ।।
ଗୋରୁଙ୍କୁ ମଣ ନିଜ ପ୍ରାଣ । ମଣିଲେ ଯଥା ନାରାୟଣ ।।
ଗୁରୁ ଯା ଦେଲେ ଉପଦେଶ । ଗୀତେ ଭଣିଲା ଗୋପ ଦାସ ।।

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୁରୁଶିଷ୍ୟସମ୍ବାଦେ ଶ୍ରୀକୃଷ୍ଣସ୍ୟ ଗୋ-ସେବା ରହସ୍ୟ ପ୍ରକଟନେ ଗୋ-ଗୌରବ ବ୍ୟାଖ୍ୟାନେ ନାମ ବିଂଶୋଽଧ୍ୟାୟଃ ।

## ଏକବିଂଶ ଅଧ୍ୟାୟ

ଏବେ ଦିବସ ଅବସାନ । ଆରକ୍ତ ପଶ୍ଚିମ ଗଗନ ।।
ଅସ୍ତ ନ ହେଉଁ ଦିବାକର । ଛାଡ଼ିବି ମୁଁ ଏ କଳେବର ।।
କହିଲି ଯେତେ ଉପଦେଶ । ଗୋ-ଧର୍ମ ଗୋଲୋକ ରହସ୍ୟ ।।
ସେ ସର୍ବ ମନେ ହେତୁ କରି । ଲୋକେ ପ୍ରଚାର ବ୍ରହ୍ମଚାରୀ ।।
ଯାଅ ହେ ବାବୁ ଏବେ ଘର । ସୁଖେ ଗୃହସ୍ଥାଶ୍ରମ କର ।।
ଆଚର ଗୋ-ଧର୍ମ ସନ୍ତତ । କର ଗୋ-ସେବା ନିତ୍ୟବ୍ରତ ।।
ଗୋ-ସେବା ଲୋକରେ ଶିଖାଅ । ଗୋ-ହିତେ ଧନ ମନ ଦିଅ ।।
ସେ ଫଳେ ଲଭ ଯଶମାନ । ଧନ ସମ୍ପଦ ସୁସନ୍ତାନ ।।
ଗୋବିନ୍ଦ ପଦେ ହେଉ ଭକ୍ତି । ପ୍ରକାଶୁ ହୃଦେ ଦିବ୍ୟ ଶକ୍ତି ।।
ଅନ୍ତେ ଗୋଲୋକେ ପାଅ ସ୍ଥାନ । କରନ୍ତୁ ପ୍ରଭୁ ଏ କଲ୍ୟାଣ ।।
ଛାଡ଼ି ଯାଅ ହେ ମତେ ଏକା । ଏ ଜନ୍ମେ ଏହି ଶେଷ ଦେଖା ।।
ସନ୍ଧ୍ୟା ପ୍ରବେଶ ନୋହୁ ଆଜ । ସରିବ ମୋର ଭବ କାର୍ଯ୍ୟ ।।
ବସିଣ ଧ୍ୟାନେ ଯୋଗବଳେ । ଗୋମତୀ ନଦୀ ଅନ୍ତର୍ଜଳେ ।।
ମିଶାଇ ପଞ୍ଚଭୂତେ କାୟା । କାଟିବି ଚିର ଭବମାୟା ।।
ଯିବି ତୁରିତ ଅନ୍ୟ ପୁରେ । ଦିଶଇ ତା ମୋତେ ଅଦୂରେ ।।
ଏ ଯେ ଗୋମତୀ ପୁଣ୍ୟସ୍ରୋତ । ଗୋଲୋକ ଧାମକୁ ଏ ପଥ ।।
ମର୍ତ୍ତ୍ୟେ ସୁରଭୀ ସୁଧାଧାର । ଗୋଲୋକ ଧାମକୁ ଦୁଆର ।।
ଗୋ-କ୍ଷୀର ପ୍ରତ୍ୟକ୍ଷ ଏ ଜଳ । ନାଶେ ସକଳ କଳିମଳ ।।
ଏ ନଦୀତୀରେ ପୁଣ୍ୟବନେ । ମୁଁ ଆଜି ଯୋଗଯୁକ୍ତ ମନେ ।।
କହିଲି ତୁମ୍ଭଙ୍କୁ ଯା ଶିଷ୍ୟ । ଗୋ-ତତ୍ତ୍ୱ ଗୋଲୋକ-ରହସ୍ୟ ।।
ଯେ ଏହା ପଢ଼େ ଶ୍ରଦ୍ଧାଚିତ୍ତେ । କେବେ ସେ ନ ପଡ଼େ ଦୁରିତେ ।।

ଗ୍ରହଣ କାଳେ ଗୋ-ପ୍ରଦାନେ । ଯେ ଅବା ପଢ଼େ ତୀର୍ଥ ସ୍ଥାନେ ।।
ଲଭଇ ବିଶେଷ ସୁକୃତ । ପୂରେ ତାହାର ମନୋରଥ ।।
ବଇତରଣୀ ଦାନ କାଳେ । ମୁମୂର୍ଷୁ ଜନେ ଶୁଣାଇଲେ ।।
ମିଳଇ ତାଙ୍କୁ ଦିବ୍ୟ ଗତି । ଉପୁଜେ ଗୋବିନ୍ଦ ଭକତି ।।
ଗୋଗୋଷ୍ଠେ କି ଅବା ଗୁହାଳେ । ପଢ଼ଇ ଯେ ନିତ୍ୟ ନିଶ୍ଚଳେ ।।
ସେ ଲଭେ ବିପୁଳ ଗୋଧନ । ଲକ୍ଷ୍ମୀ ହୁଅନ୍ତି ସୁପ୍ରସନ୍ନ ।।
ଶ୍ରାବଣ ପୂର୍ଣ୍ଣମୀ ତିଥିରେ । ଗୋରୁଙ୍କୁ ପୂଜିବ ବିଧିରେ ।।
ଗାଧୋଇ ତାଙ୍କୁ ଶୁଦ୍ଧ ନୀରେ । ହଳଦୀ ବୋଳିବ ଶରୀରେ ।।
ଶିଙ୍ଗରେ ଲଗାଇବ ତେଲ । ଶିରେ ସିନ୍ଦୂର ଫୁଲମାଳ ।।
ପୂଜିବ ଦେବତା ଧିଆନେ । ଭକ୍ତି ଆଦର ସନମାନେ ।।
ଖୁଆଇ ପିଠା ଘାସ ଅନ୍ନ । କରିବ ତାଙ୍କୁ ସୁପ୍ରସନ୍ନ ।।
କାର୍ତ୍ତିକ ଶୁକ୍ଳାଷ୍ଟମୀ ଦିନ । ଗୋକୁଳେ କରିବ ଅର୍ଚ୍ଚନ ।।
ତୃଣ ତୋଡ଼ାଣି ମିଷ୍ଟ ଅନ୍ନ । ଗୋଗଣେ କରିବ ପ୍ରଦାନ ।।
ଗ୍ରାମର ଯେତେ ଗୋରୁଗାଈ । ଆଣି ସକଳେ ଏକଠାଇଁ ।।
କରିବ ବିବିଧ ଉତ୍ସବ । ଏଣେ ସନ୍ତୁଷ୍ଟ ବାସୁଦେବ ।।
ଆବର ଫାଲଗୁନ ମାସେ । ପ୍ରସିଦ୍ଧ ପୂର୍ଣ୍ଣମୀ ଦିବସେ ।।
ଖେଳନ୍ତି ଯେବେ ସୁଖେ ଦୋଳି । ରାମଗୋବିନ୍ଦ ବନମାଳୀ ।।
ଗୋ-ଗଣେ ପୂଜିବ ଆଦରେ । ବିବିଧ ଖାଦ୍ୟ ଉପହାରେ ।।
କରାଇ ସ୍ନାନ ସୁମାର୍ଜନା । ଦେବ ତୋଡ଼ାଣି ପାଣି ପଣା ।।
ଏ ତିନି ଶ୍ରେଷ୍ଠ ଗୋ-ଉତ୍ସବ । ଗୃହସ୍ଥ ଅବଶ୍ୟ ପାଳିବ ।।
ଗୋଗୋଷ୍ଠେ କିବା ଗୋ ଗୁହାଳେ । ଅଥବା ଗୋରୁ ମହାମେଳେ ।।
ଶ୍ରଦ୍ଧାରେ ଯେହୁ ଏହା ପଢ଼େ । ପଢ଼ି ଗୋଗଣ ପଦେ ପଡ଼େ ।।
କହଇ ଯୋଡି ବେନି ହାତ । ହେ ଧେନୁ ତୁମ୍ଭେ ମୋର ମାତ ।।
ହେ ବୃଷ ତୁମ୍ଭେ ମୋର ପିତା । ବଳଦ ଭ୍ରାତା ଅନ୍ନଦାତା ।।
ଘେନ ମୋ ପୂଜା ଆରାଧନ । ହୁଅ ସର୍ବଦା ସୁପ୍ରସନ୍ନ ।।
ସେ ଜନ ପାଏ ମହା ଫଳ । ସଦା ସଂପୂର୍ଣ୍ଣ ଅନ୍ନଜଳ ।।
ତା ଘରେ ନ ପଡ଼େ ଦୁର୍ଗତି । ବଢ଼ଇ ବଂଶ ଧନ ଖ୍ୟାତି ।।
ଅନ୍ତେ ସେ ପାଏ ସଦଗତି । ଲଭଇ ଗୋବିନ୍ଦେ ଭଗତି ।।
ଯେ ଗ୍ରାମେ ମିଳି ଲୋକ ସର୍ବ । କରନ୍ତି ଏ ତିନି ଉତ୍ସବ ।।
ସକଳ ବର୍ଣ୍ଣ ସର୍ବ ଜାତି । ଏକତ୍ରେ ଉତ୍ସବ ପାଳନ୍ତି ।।

କରନ୍ତି ଗୋ ପ୍ରତି ଆଦର । ବାରନ୍ତି ନାହିଁ ନିଜ ପର ॥
ସେ ଗ୍ରାମେ ନ ପଶଇ କଳି । ସୁଖେ ରହନ୍ତି ସର୍ବେ ମିଳି ॥
ଶିରୀ ସେ ଗ୍ରାମରୁ ନ ତୁଟେ । ଲୋକଙ୍କ ଦେହେ ତେଜ ଫୁଟେ ॥
ନ ଘଟେ ଗ୍ରାମେ ମାରୀଭୟ[୫୬] । ନୁହେ ଅକାଳେ ଜନକ୍ଷୟ ॥
ଯେ ଗ୍ରାମେ ମିଳି ସର୍ବ ନର । ରଖନ୍ତି ବହୁତ ଗୋଚର ॥
ସେ ଗ୍ରାମ ଜାଣ ପୁଣ୍ୟସ୍ଥଳୀ । ତହିଁ ନ ଯାଏ କେବେ କଳି ॥
ହୁଅନ୍ତି ସର୍ବଜନେ ସୁଖୀ । ନ ରହେ ପର ମୁଖାପେକ୍ଷୀ ॥
ଯେ ଘରେ ନାହିଁ ଗାଈଗୋରୁ । ସେ ଘର ଭୟଙ୍କର ମରୁ ॥
ସେ ଗୃହ ଅଟେ ଶମଶାନ । ନୁହେ ଲକ୍ଷ୍ମୀଙ୍କ ବାସସ୍ଥାନ ॥
ଗୋ ରଖି ଘରେ ଯେଉଁ ଜନ । ନ ହୁଏ ସଦା ସାବଧାନ ॥
ଗୋରୁଙ୍କୁ କରେ ଅବହେଳା । ବୁଡ଼ିବ ଜାଣ ତାର ଭେଳା ॥
ପଡ଼ଇ ଯେବେ ଗୋ-ନିଃଶ୍ୱାସ । ବଂଶ ସମ୍ପଦ ସର୍ବନାଶ ॥
ବଳଦେ କରିଣ ଯେ ଚାଷ । ନ ଦିଏ ପୂର୍ଣ୍ଣ ଜଳ ଘାସ ॥
ଚାଷ ଉତ୍ପନ୍ନ ଖାଏ ଆପେ । ସେ ବୁଡ଼ି ମରେ ମହା ପାପେ ॥
ଖାଏ ସେ ସାକ୍ଷାତ ଗୋ-ମାଂସ । ତା ଇହ ପରକାଳ ନାଶ ॥
ଯେ ଗାଈଠାରୁ ଖାଏ ରସ । ନ ଦେଇ ତାକୁ ପୂରା ଗ୍ରାସ ॥
ବତ୍ସାକୁ ନ କରେ ଯତନ । କରେ ସେ ଗୋ-ଶୋଣିତ ପାନ ॥
ତା ଦେହୁଁ ତୁଟିଯାଏ ଶିରୀ । ତା ପୁତ୍ରକନ୍ୟା ଯାନ୍ତି ମରି ॥
ବଳଦ ଲଗାଇଣ ଚାଷେ । ବିକଇ ଯେ ବୁଢ଼ା ବୟସେ ॥
ବିଶେଷେ ସଦ୍ୟ ଧନ ପାଇଁ । ଘାତୁକେ ବିକେ ଗୋରୁ ଗାଈ ॥
ଜାଣ ସେ ବଞ୍ଚିଥାଉଁ ମରେ । ଜଘନ୍ୟ ପାପୀ ସେ ସଂସାରେ ॥
ତା ସାତ ଉପର ପୁରୁଷ । ସାତ ପୁରୁଷ ଭାବୀ ବଂଶ ॥
ପଡନ୍ତି ଦୁସ୍ତର ନରକେ । ସଢ଼ନ୍ତି ଘୋର କୁମ୍ଭୀପାକେ ॥
ନ ହୁଏ ତା କୁଳ ଉଦୟ । ସକଳ ଶିରୀ ଯାଏ କ୍ଷୟ ॥
ଯେ ନାରୀ କରନ୍ତି ଗୋ-ସେବା । ସେ କେବେ ନୁହନ୍ତି ବିଧବା ॥
ବିଧବା ଗୋରୁ ସେବା କରି । ଭବଦୁଃଖରୁ ଯାନ୍ତି ତରି ॥
ଗୋ-ଜାତି ସର୍ବ ସୁଖାଳୟ । ଗୋ-ଜାତି ସର୍ବ ଶୁଭମୟ ॥
ଗୋ-ଜାତି ଲୋକ ପିତାମାତା । ଗୋ-ଜାତି ଶକ୍ତି ମୁକ୍ତିଦାତା ॥
ଗୋ-ଜାତି ଦେବଗଣ ପରେ । ଏ ତତ୍ତ୍ୱ ହେତୁ କର ନରେ ॥

---

୫୬- ଜନକ୍ଷୟର ଭୟ/ମହାମାରୀର ଭୟ

ଗୋ-ସେବା କର ଘରେ ଘରେ । ଗୋ-ହିତ ବିଚାର ମନରେ ।।
ଗୋ-ରକ୍ଷା କର ଗ୍ରାମେ ଗ୍ରାମେ । ହାଟେ ନଗରେ ପୁଣ୍ୟଧାମେ ।।
ଯାହାଙ୍କୁ ପ୍ରଭୁ ଭଗବାନ । କରିଅଛନ୍ତି ଭାଗ୍ୟବାନ ।।
ଗୋ-ନାମେ ଖଞ୍ଜନ୍ତୁ ସେ ବୃତ୍ତି । ଗୋଚର ପରମ ସୁକୃତି ।।
ଗ୍ରାମରେ ପାଳନ୍ତୁ ବୃଷଭ । ସେ ଯେ ସାକ୍ଷାତେ ମହାଦେବ ।।
ପ୍ରାଣାନ୍ତେ ଗୋଲାଙ୍ଗୁଳ ଧରି । ବଇତରଣୀ ହେବ ପାରି ।।
ସଂସାରେ ଥିବ ଯେତେ କାଳ । ଲଭିବ ଧନ ଜନ ବଳ ।।
ଗୋ-ଧର୍ମ ପାଳ ହେ ମାନବ । ଯେବେ ଗୋଲୋକଧାମେ ଯିବ ।।
ହେ ଶିଷ୍ୟ ମୋ ଏ ଧ୍ରୁବ ବାର୍ତ୍ତା । ଲୋକରେ ପ୍ରଚାର ସର୍ବଥା ।।
ଗୁରୁଙ୍କ ଉପଦେଶ ଶେଷେ । ଶିଷ୍ୟ ନମିଲେ ପାଦଦେଶେ ।।
ସାଷ୍ଟାଙ୍ଗେ ପଡ଼ିଲେ ପୟରେ । ଘେନିଲେ ଆଶିଷ ସେ ଶିରେ ।।
ଗୁରୁ ଅନୁଜ୍ଞା ଅନୁସାରେ । ଆସିଲେ ଶୀଘ୍ର ନିଜ ଘରେ ।।
ଶିଷ୍ୟଙ୍କୁ ବିଦା ଦେଇ ମୁନି । ବସିଲେ କ୍ଷଣେ ହୋଇ ତୁନି ।।
ପରେ ଗୋମତୀ ଜଳେ ପଶି । ତନୁ ତେଜିଲେ ଯୋଗେ ଋଷି ।।
ଗୋଲୋକଧାମେ ଗଲେ ଚଳି । ଯହିଁ ଗୋବିନ୍ଦ ନିତ୍ୟ ସ୍ଥଳୀ ।।
ଗଲେ ସେ ମୁନି ଯେଉଁ ପଥେ । ଚିନ୍ତ ହେ ଜନେ ତାହା ଚିତ୍ତେ ।।
ଗୋରକ୍ଷା କର ହେ ନିରତ । ଆଚର ଗୋପାଳନ ବ୍ରତ ।।
ଗୁରୁଶିଷ୍ୟଙ୍କ ଏ ସମ୍ବାଦ । ପଢ଼ ଖଣ୍ଡିବ ପରମାଦ ।।
ଗୁରୁ-ଗୋବିନ୍ଦେ ହେବ ଭକ୍ତି । ହୃଦେ ଜନ୍ମିବ ଦିବ୍ୟ ଶକ୍ତି ।।
ସେ ଶିଷ୍ୟ ଗୁରୁ ଆଜ୍ଞା ମାନି । ସଂସାରେ ଗଲେ ଯା ବଖାଣି ।।
ଅଧମ ଗୋପ ତାହା ଗୀତେ । ପ୍ରକାଶ କଲା ଲୋକହିତେ ।।
ଦିଅ ହେ ଜନେ ଏଥି ଧ୍ୟାନ । ମନରେ ନ ବିଚାର ଆନ ।।
ଗୋପ ତୁମ୍ଭର ପାଦେ ଭୃତ୍ୟ । କର ହେ ତାକୁ କୃତକୃତ୍ୟ ।।
ଗୋ-ଲୋକନାଥ ବାଞ୍ଛାନିଧି । କରନ୍ତୁ ସର୍ବ ବାଞ୍ଛାସିଦ୍ଧି ।।

ଇତି ଶ୍ରୀ ଗୋ-ମାହାତ୍ମ୍ୟେ ଗୋଗଣୋତ୍ସବ ବର୍ଣ୍ଣନେ ଫଳଶ୍ରୁତି ନିର୍ଣ୍ଣୟେ ନାମ ଏକବିଂଶୋଽଧ୍ୟାୟଃ ।

---

# ପ୍ରାକ୍-ସୂଚନା

ପଣ୍ଡିତ ଗୋପବନ୍ଧୁ ହଜାରିବାଗ ଜେଲ୍‌ରେ ବନ୍ଦୀଜୀବନ କଟାଉଥିଲାବେଳେ ବିଭିନ୍ନ ଉପଲକ୍ଷ୍ୟରେ ଓ ନିଃସଙ୍ଗ ଜୀବନକୁ ଅର୍ଥବହ କରିବାପାଇଁ ସାନ ବଡ଼ ତେରଟି ଖଣ୍ଡକବିତା ଲେଖିଥିଲେ । ୧୯୨୪ ମସିହାରେ ମୁକ୍ତି ପାଇବା ପରେ ବି ସେ ଏଗୁଡ଼ିକୁ ସ୍ୱତନ୍ତ୍ର ଭାବରେ ବା ଏକ କବିତାସଂଗ୍ରହ ଭାବରେ ବ୍ୟସ୍ତତା ହେତୁ ପ୍ରକାଶ କରିପାରି ନ ଥିଲେ । ଜୁନ୍ ୧୭, ୧୯୨୮ ମସିହାରେ ତାଙ୍କର ଦେହାନ୍ତ ପରେ 'ସମାଜ'ର କର୍ମକର୍ତ୍ତାଗଣ ଓ ସତ୍ୟବାଦୀ ପ୍ରେସ୍‌ର ପରିଚାଳକ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ଏଗୁଡ଼ିକ ପ୍ରକାଶ କରିବାକୁ ଆରମ୍ଭ କରିଥିଲେ । ୧୯୩୧ ମସିହାରେ ପ୍ରକାଶିତ 'ସମାଜ'ର ତୃତୀୟ ବର୍ଷର ଶ୍ରାଦ୍ଧ-ସଂଖ୍ୟାରେ ନିତ୍ୟଧାମ ନୀଳାଚଳ, ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ, କାହିଁ ଅଛ ?, କାହିଁ ଚାଲିଗଲେ, ପିତୃପକ୍ଷ ତର୍ପଣ, ବନ୍ଦୀର ବିରହ ବ୍ୟଥା, ବନ୍ଦୀର ସାନ୍ଧ୍ୟ ଭକ୍ତି, ବଜାଅ ସେ ବୀଣା, ପ୍ରେମର କି ଏହି ପରିଣାମ – ଏହି ନଅଟି କବିତା ପ୍ରକାଶିତ । କବିତାଗୁଡ଼ିକର ପରିଚୟ ଦେଇ ପାଦଟୀକାରେ କୁହାଯାଇଥିଲା : "ଏ ଅପ୍ରକାଶିତ କବିତାଗୁଡ଼ିକ ଗୋପବନ୍ଧୁ ୧୯୨୩-୨୪ରେ ହଜାରିବାଗ ଜେଲ୍‌ରେ ଥିବାବେଳେ ଲେଖିଥିଲେ । ତାଙ୍କର ସେ ସମୟର ଅନେକ ଅପ୍ରକାଶିତ ଲେଖା ମଧ୍ୟରୁ ଏହା କେତୋଟି ମାତ୍ର ।" (ସମାଜ, ତା ୧୫.୭.୧୯୩୧) । ପରେ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' କବିତାଟି 'ଯୁଗବୀଣା' ପତ୍ରିକାର ଦ୍ୱିତୀୟ ଭାଗ ତୃତୀୟ ସଂଖ୍ୟା (ଜୁଲାଇ, ୧୯୩୪)ରେ 'ଜଣେ ସହକର୍ମୀଙ୍କ ପ୍ରତି' ଶୀର୍ଷକରେ ପ୍ରକାଶିତ । କବିତା ସମ୍ପର୍କରେ ସୂଚନା ଦେଇ 'ଯୁଗବୀଣା'ର ସଂପାଦକ 'ପାଦଟୀକା'ରେ ଲେଖିଥିଲେ : "୧୯୨୪ ମସିହାରେ ପଣ୍ଡିତ ଗୋପବନ୍ଧୁ ହଜାରିବାଗ ଜେଲରେ ଥିବାବେଳେ ଏହି କବିତାଟି ଜଣେ ବିଶିଷ୍ଟ ଆଜୀବନ ସହକର୍ମୀଙ୍କ ଉଦ୍ଦେଶ୍ୟରେ ଲେଖିଥିବାର ଲେଖକଙ୍କ ନୋଟ୍ ଖାତାରୁ ଜଣାଯାଏ ।" 'ବନ୍ଦୀର ସ୍ୱଦେଶ ଚିନ୍ତା', 'ବନ୍ଦୀର ସନ୍ଧ୍ୟା-ଭାବନା', 'କାରାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ' ଓ 'ବିଶ୍ୱର ମିଳନଚିତ୍ର' – ଏହି ଚାରୋଟି କବିତା 'ସମାଜ'ର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରଥମେ ମୁଦ୍ରିତ ହୋଇଥିଲା । 'କାରାକବିତା'ରେ ସଂକଳିତ ହେଲାବେଳେ 'ବଜାଅ ସେ ବୀଣା' କବିତାର ଶୀର୍ଷକ ହୋଇଛି 'ଦେଖା ଦିଅ ବାରେ' ।

୧୯୩୧ ମସିହାର 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା ପ୍ରକାଶିତ ହେବାକୁ ଯାଉଥିବା ସ୍ୱର୍ଗୀୟ ଗୋପବନ୍ଧୁଙ୍କ

ରଚନାବଳୀର ଏକ ବିଜ୍ଞାପନ ଦେଖିବାକୁ ମିଳେ । ସେହି ବିଜ୍ଞାପନର ଚତୁର୍ଥ ପୁସ୍ତକ ହେଲା : 'ଶେଷଚିନ୍ତା (ତାହାଙ୍କ ଶେଷ ଜୀବନର କବିତା) – ଅପ୍ରକାଶିତ, ଯନ୍ତ୍ରସ୍ଥ' । କିନ୍ତୁ 'ଶେଷଚିନ୍ତା' ଶୀର୍ଷକରେ ଗୋପବନ୍ଧୁଙ୍କର କୌଣସି କବିତା ପୁସ୍ତକ ପ୍ରକାଶିତ ହୋଇନାହିଁ । ଅପରପକ୍ଷରେ 'କାରାକବିତା' (୧୯୨୩-୨୪ ହଜାରିବାଗ ଜେଲ୍‌ରେ ଲିଖିତ) ଶୀର୍ଷକ 'ସ୍ୱର୍ଗୀୟ ଗୋପବନ୍ଧୁ ଦାସ'ଙ୍କର ୬୪ ପୃଷ୍ଠାର ଏକ କବିତା ପୁସ୍ତକ ଆର୍.ଏନ୍. ରଥଙ୍କଦ୍ୱାରା ସତ୍ୟବାଦୀ ପ୍ରେସ୍‌ରେ ମୁଦ୍ରିତ ହୋଇ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା ୧୯୩୫ ମସିହାରେ ପ୍ରକାଶିତ । ତେଣୁ ମନେହୁଏ 'ସତ୍ୟବାଦୀ ସାହିତ୍ୟ ମନ୍ଦିର'ର କର୍ମକର୍ତ୍ତାଗଣ ଗୋପବନ୍ଧୁଙ୍କର ଯେଉଁ କବିତାଗୁଡ଼ିକୁ ପ୍ରଥମେ 'ଶେଷଚିନ୍ତା' ଶୀର୍ଷକରେ ପ୍ରକାଶ କରିବାର ଯୋଜନା କରିଥିଲେ, ୧୯୩୫ ମସିହାରେ ସେମାନେ ମତ ପରିବର୍ତ୍ତନ କରି ସେହି କବିତାଗୁଡ଼ିକ 'କାରାକବିତା' ଶୀର୍ଷକରେ ପ୍ରକାଶ କରିଛନ୍ତି । ପୁସ୍ତକଟିର ପରିଚୟ ଦେଇ ପ୍ରକାଶକ 'ନିବେଦନ'ରେ ଲେଖିଥିଲେ :

> ପୁଣ୍ୟାତ୍ମା ଗୋପବନ୍ଧୁ ୧୯୨୩-୨୪ ମସିହାରେ ହଜାରିବାଗ୍ ଜେଲ୍‌ରେ ୨ ବର୍ଷକାଳ ବନ୍ଦୀ ହୋଇ ଥିବାବେଳେ 'ବନ୍ଦୀର ଆତ୍ମକଥା' କବିତା ଛଡ଼ା ଆଉ ଯେଉଁ କେତୋଟି କବିତା ଲେଖିଥିଲେ; ତାହାସବୁ ୧୯୨୮ ଜୁନ୍ ୧୭ ତାରିଖରେ ତାଙ୍କର ପରଲୋକ ହେବାପରେ 'ସମାଜ'ର ଶ୍ରାଦ୍ଧସଂଖ୍ୟାମାନଙ୍କରେ ପ୍ରକାଶ ପାଇଥିଲା । ସେହି କବିତାଗୁଡ଼ିକୁ ବର୍ତ୍ତମାନ ଏହି କ୍ଷୁଦ୍ର ପୁସ୍ତକରେ ପ୍ରକାଶ କରାଯାଇଛି । ତ୍ୟାଗୀ, ଯୋଗୀ, ସାଧକ, କର୍ମୀ, ଚାଳକ, ଭାବୁକ, ସାହିତ୍ୟିକ, ସଂସ୍କାରକ, ପ୍ରେମିକ, ଭକ୍ତ, କବି ଗୋପବନ୍ଧୁଙ୍କ ସୁଲଳିତ କବିତାଧାରା ଓ ତାଙ୍କ ହୃଦକନ୍ଦରନିହିତ ଅପୂର୍ବ ଭାବରାଶି ଏସବୁ କବିତାରେ ଯେପରି ବିକଶିତ ହୋଇଛି, ତାହା ବାସ୍ତବିକ ଗୋଟିଏ ପବିତ୍ର ମନୋହର ମାଳାରୂପେ ଜୀବନର ସନ୍ଧ୍ୟାରେ ସେ ଦେଶବାସୀଙ୍କୁ ଅର୍ପିଦେଇ ଯାଇଛନ୍ତି । ଆମ୍ଭେମାନେ ତାଙ୍କ ବନ୍ଦୀଜୀବନ ଓ ଶେଷଜୀବନର ସେହି 'କାରାକବିତା' ମାଳା ଦେଶବାସୀଙ୍କ ହସ୍ତରେ ଦେଇ ଆଶାକରୁଛୁ, ଏହା ସାଦରେ ଗୃହୀତ ହେବ ।

ଉଦ୍ଧୃତ 'ନିବେଦନ' ଯେ ତା ୧୫.୭.୧୯୩୧ ମସିହାରେ 'ସମାଜ'ର ପାଦଟୀକାରେ ଦିଆଯାଇଥିବା ସୂଚନାର ସଂପ୍ରସାରଣ, ଏହା ନିଃସନ୍ଦେହ । 'କାରାକବିତା' – ଏଭଳି ନାମକରଣ ସହ ଗୋପବନ୍ଧୁଙ୍କର କୌଣସି ସମ୍ପର୍କ ନାହିଁ ଓ କବିତାଗୁଡ଼ିକ ଗୋପବନ୍ଧୁଙ୍କ ଦେହାନ୍ତ ପରେ ପ୍ରକାଶିତ । 'କାରାକବିତା' ପ୍ରଥମ ସଂସ୍କରଣ (୧୯୩୫)ର ପାଠ ବର୍ତ୍ତମାନର ସଂକଳନରେ ଗୃହୀତ ।

**ସଂପାଦକ**

## ୧ । ନିତ୍ୟଧାମ ନୀଳାଚଳ

ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟରାସ
ବୋଲି ହରି ହରି
କେ ପ୍ରେମ ଭିକାରି
ପରାଣ-ପୁଲକେ ତେଜିବ ନିଶ୍ୱାସ ? ।୧।

ସେହି, ନାହିଁ ଯାର ନିଜ ପର ଜ୍ଞାନ,
ପାଏ ନୀଚ ଯାର ସ୍ନେହ ସନମାନ
ବିଶ୍ୱ ହିତେ ଯାର
ଆହାର ବିହାର
କରେ ବିଶ୍ୱହିତେ ଯେ ଜୀବନ ଦାନ ।୨।

ସେହି, କରେ ଯେହୁ ସତ୍ୟ ଆଚରଣ,
ସତ୍ୟ ଆରାଧନା, ସତ୍ୟ ସମ୍ଭାଷଣ,
ଭିତର ବାହାର
ଯାର ସତ୍ୟ ସାର,
ସୁଖେ ଦୁଃଖେ ସଦା ସତ୍ୟ ଯା ଶରଣ ।୩।

ନାହିଁ ଜାତି ଭେଦ, ନାହିଁ ଧର୍ମଭେଦ,
ସାମ୍ୟମୈତ୍ରୀମନ୍ତ୍ର ଗାଏ ଯାର ବେଦ,
କେ କରିବ ଭବେ
ଦେବତା ମାନବେ,
ନୀଳାଚଳେ ତାର ପ୍ରବେଶ ନିଷେଧ ? ।୪।

□□□

## ୨ । ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ

(ଜଣେ ଆଜୀବନ ସହକର୍ମୀଙ୍କ ପ୍ରତି)

କାହାଗେ ଗାଇବି ପରାଣ-ସଙ୍ଗୀତ
କା ପାଶେ ବାଇବି ଅନ୍ତର-ବୀଣା,
କା କାନେ କହିବି ମରମ ବେଦନା
ମନକଥା ମନେ ରହିଲା ସିନା !

ଜୀବନ ପ୍ରଭାତେ ଆପଣାର ବୋଲି
କରିଥିଲି ଯାକୁ ପରାଣ-ସଖା,
ସେ ତ ନ ଜାଣିଲା ମୋ ଅନ୍ତର ଗତି
ଦେଲା ମୋ ପରାଣେ ଦାରୁଣ ଧକ୍କା ।

ଯା ମୁଖ ଅନାଇଁ ଅନ୍ତିମ ସଙ୍କେତ
ଦେଇ ଲଭିଥାନ୍ତି ଶେଷ ସାନ୍ତ୍ୱନା,
ମୋ ନେତ୍ର-ଲୋତକେ ସତ୍ୟ ସରଳତା
ନ ଦେଖି ଦେଖେ ସେ ନୀଚ ଛଳନା ।

ଯାର ଗଉରବେ ମୋ ଭାଗ୍ୟ ବିଭବ
ଯାର କୃତିତ୍ୱେ ଏ ପ୍ରାଣ ଉଲ୍ଲାସେ,
ମୋର ଉପଯୋଗେ[୧] ସେ ଯେବେ କାତର
ଏ ଜୀବନ ଆଉ କି ସୁଖ ଆଶେ ?

ଜୀବନ କି ଖାଲି ନିରାଶାର ବାଲି,
ମରୁ-ମରୀଚିକା ସେନେହ ପ୍ରୀତି,
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଚି ନିତି ?

ପ୍ରେମ ପରା ସହେ ସହି ସୁଖ ପାଏ
ପ୍ରେମ ନ ଜାଣଇ କେବେ ଶୋଚନା,

୧- ଉପଯୋଗିତା/ଆନୁକୂଲ୍ୟ/ନୈକଟ୍ୟ

ପ୍ରିୟଜନେ ନୁହେ ପ୍ରେମିକ ବିମୁଖ
ହେଲେ ହେଉ ଯେତେ ଗୁରୁ ଗଞ୍ଜଣା ।
ମୋ ପ୍ରେମ କି ସତେ କେବଳ ଛଳନା
ଲୋଡ଼େ ଅଲକ୍ଷିତେ ଆପଣା ସୁଖ ?
କରୁଛି କି ମୁହିଁ ଆତ୍ମ-ପ୍ରବଞ୍ଚନା
ତେଣୁ ମୋ ମନେ ଏ ଦାରୁଣ ଦୁଃଖ ।

ଲଭିଅଛି ଏବେ ଆତ୍ମପରିଚୟ
ଲିଭିଅଛି ମୋର ହୃଦ କାଳିମା,
କର ପ୍ରାଣସଖା ତୀବ୍ର କଷାଘାତ
ପରଖ ଏ ହୃଦ ସହନ ସୀମା ।

ବିଷାକ୍ତ ନୟନେ ମୋ ସରଳ ପ୍ରାଣେ
ଦେଖ ଯେବେ ସଖା କପଟ-କାଳି,
ଆଖି ପୋଛି ଦେଖ ମୋ ହୃଦେ ତୋ ହୃଦ,
ଆତ୍ମପରିଚୟେ ନ ଦିଅ ଗାଳି ।

ଗାଳି ଗଞ୍ଜଣାକୁ ନାହିଁ ମୋର ଛଳ
ତୁମ ଅନୁତାପ ଏକା ଶୋଚନା,
ପାଅ ଯେବେ ସୁଖ ସେ କଟୁ ବଚନେ
ଦେବ ତା ମୋ ହୃଦେ ମଧୁ ମୂର୍ଚ୍ଛନା ।

ଫୁଲ ପରି ପ୍ରେମ ଝାଉଁଳେ କି ବନେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାରା,
ଦୂର କଲେ ମତେ ହେବି କି ଅନ୍ତର
ତୁମେ ଯେ ମୋ ପ୍ରାଣ-ପ୍ରଣୟ-କାରା ।

ଏ ଜୀବନେ ପ୍ରେମ ନୁହେ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା,
ଶୁଦ୍ଧ ନେତ୍ରେ ତହିଁ ଦେଖିବ ମୋ ହୃଦେ
ପ୍ରେମ ରସାଣିତ ଅମୃତ ଲେଖା ।

ପ୍ରେମେ ଅବଗାହି ନିଜ ପରିଚୟ
ପାଇଅଛି ମୁଁ ଏ କ୍ଷୁଦ୍ର ଜୀବନେ,

ମୋ ହୃଦ-କଲ୍ଲୋଳ ଉଛୁଳେ ଉଲ୍ଲାସେ
ଜଳେ ସ୍ଥଳେ ଫଳେ ଫୁଲେ ଗଗନେ ।

ଶତ ଆବର୍ଜନା ସହସ୍ର ତାଡ଼ନା
କିବା ଶତ ସ୍ନିଗ୍ଧ ସୁମନ-ହାର,
ଏ ପ୍ରେମ-କଲ୍ଲୋଳେ ସମାନ ସକଳେ
ପରମ ସାଦର ସ୍ନେହ ସମ୍ଭାର ।

ନିଜକୁ ଭୁଲି ମୁଁ ପାଇଅଛି ସଖା
ନିଜ ପରିଚୟ ନିଜ ତୃପତି,
ତବ କଷାଘାତେ ଜନମିଛି ମୋର
କଠୋର ପ୍ରହାର ସହା[୨] ଶକତି ।

ଗାଢ଼ ଆଲିଙ୍ଗନ ସୁଚାରୁ ଚୁମ୍ବନ
ଅଶ୍ରୁଧାରା ଯେଉଁ ପ୍ରେମ ବ୍ୟଞ୍ଜନା,
ଲୋହିତ ଲୋଚନ ନିଷ୍ଠୁର ବଚନ
ଓଲଟ ଈକ୍ଷଣେ ତାର ଲାଞ୍ଛନା ।

ଏ ବେନି ବିଭାବ ହେଲା ଅନୁଭବ
ଅଳପ ଦିବସେ ତୁମ ସଙ୍ଗତେ,
କେତେ ସୁଖ ଦୁଃଖ ସୁହାସ ଲୋତକ
ନିଭାଇଲି ଏହି ଅଙ୍ଗେ ଗୁପତେ ।

ତବ କୋପାନଳେ ବିଦଗଧ ହୋଇ
ଝଲିଛି[୪] ଦି'ଗୁଣେ ଏ ମୋ ପରାଣ,
ବୁଝିଛି ଜଗତେ ରୋଷ ତୋଷ ବେନି
ପ୍ରେମମୟଙ୍କର ପ୍ରେମ ପ୍ରଦାନ ।

ତାଙ୍କ ପ୍ରେମ-ରାଜ୍ୟେ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ବିନ୍ଦୁ
କି ମୋର ଭାବନା ମୋ ପ୍ରାଣ-ପ୍ରବାହ
ଭେଟିଅଛି ଆଜି ସେ ପ୍ରେମସିନ୍ଧୁ ।

□□□

୨- ସହ୍ୟ କରିବାର; ୩ - ଦୃଷ୍ଟିରେ/ଦେଖିବାରେ; ୪- ଦୀପ୍ତିମନ୍ତ ହୋଇଛି/ସୁନ୍ଦର ଦେଖାଯାଇଛି ।

## ୩ । କାହିଁ ଅଛ ?

କାହିଁ ଅଛ ନାଥ　　　　ପରାଣ ଦେବତା
　　ଦେଖାଦିଅ ମତେ ଥରେ ହେ,
ଭବ-ପାରାବାରେ　　　　ବିଷମ ପ୍ରହାରେ
　　ଏ ହୃଦୟ ମୋର ଥରେ ହେ ।

ତୁମେ ପରା ପ୍ରଭୁ　　　　ମୋ ଅନ୍ତରଯାମୀ
　　ଦିଶୁନାହଁ ତ ଅନ୍ତରେ ହେ,
ରହିଥିଲେ ଲୁଚି　　　　ଦିଅ ବେଗେ ସୂଚି
　　ଦେଖାହେବ କି ମନ୍ତରେ ହେ ।

ସାରା ବିଶ୍ୱ ଭରି　　　　ପ୍ରକାଶିଛ ହରି !
　　ବେଦ ବନ୍ଦେ ସଙ୍ଗୀତରେ ହେ,
ରୂପ ରେଖ କାହିଁ　　　　ଏବେ ଦିଶୁ ନାହିଁ
　　ବାହାରେ କିବା ଭିତରେ ହେ ।

ସେ ଦିବ୍ୟ-ଅଞ୍ଜନ　　　　ପ୍ରଭୁ ନିରଞ୍ଜନ !
　　ଦିଅ ଏ ନେତ୍ରରେ ବାରେ ହେ,
ତବ ଜ୍ୟୋତିରେଖା　　　　ହେଉ ପଥେ ଦେଖା
　　ଆଜି ଅମା-ଅନ୍ଧକାରେ ହେ ।

## ୪ । ଆହା ଚାଲିଗଲେ !

କି ମୋହନିଦ୍ରା ମୋତେ ଘୋଟିଥିଲା,
କିପାଁ ଏ ପାପ ଆଖି ନ ଫିଟିଲା । ଘୋଷା ।
　　ପାଖରେ ମୋର ବସି
　　ଚାରୁ ମୋହନବଂଶୀ
ବଜାଇ କି ବେଗେ ସେ ଚାଲିଗଲା ।
　　ଡାକିଲା କେତେ ଥର
　　ହେବାକୁ ଉଜାଗର,
ପଦେ ହେଲେ ଉତ୍ତର ନ ଆସିଲା ।

ମୋ କକ୍ଷ ଅନ୍ଧକୂପ
ସେ ପ୍ରଭାମୟ ରୂପ
ଆଲୋକ କାହିଁ କ୍ଷଣେ ଲିଭିଗଲା ।

ନ ମେଲିଲି ନୟନ
ପଥେ ପଡ଼ିବା ଧନ
ଏ ଭାଗ୍ୟହୀନ ନେତ୍ର ନ ଦେଖିଲା ।

## ୫ । ପିତୃପକ୍ଷ ତର୍ପଣ

ଆସିଅଛି ପିତୃପକ୍ଷ କରୁଛି ତର୍ପଣ
ମନ୍ତ୍ରପାଠ ତିଳୋଦକେଂ[୧] କରେଁ ସମର୍ପଣ ।

ପିତୃ ପିତାମହଗଣ ବୈଦିକ ବିଧାନେ,
ଦେବଗଣେ ଋଷିଗଣେ ପୂଜେ ଜଳଦାନେ ।

ଅଧିକ କରିବି କିବା ଏଥି କାରାବାସେ,
ଏ ଆଶ୍ୱାସ ସଙ୍ଗେ ମନେ ସଂଶୟ ମୋ ଆସେ ।

ମୁଁ ଯେ କାରାଗାରେ ବନ୍ଦୀ, ବନ୍ଦୀର ତର୍ପଣ
କରନ୍ତି କି ପିତୃଲୋକେ ସାଦରେ ଗ୍ରହଣ ?

ବନ୍ଦୀ ଉଚ୍ଚାରିତ ସ୍ୱାହା[୨] ସ୍ୱଧା[୩] ବଷଟ୍‌କାର[୪]
ଦିଅଇ କି ପିତୃଲୋକେ ଶୁଦ୍ଧ ସୁଧାଧାର ?

ବନ୍ଦୀ ପରା ଅପରାଧୀ କଳୁଷିତ ପ୍ରାଣ,
ପିତୃ ଦେବଗଣେ ଗ୍ରାହ୍ୟ କିପରି ତା ଦାନ ?

ଅକାରଣ ତେବେ କି ମୋ ଉଦକ-ଅଞ୍ଜଳି,
ଏ ତିଳ ତଣ୍ଡୁଳ ମାତ୍ର କାକ-ଶ୍ୱାନ-ବଳି ?

କରୁଛି କି ପଣ୍ଡଶ୍ରମ ଉଷୀର[୫] କର୍ଷଣ,
କାରାଗାର କଷ୍ଟସାଧ ବୃଥା ଆୟୋଜନ ?

---

୧- ତର୍ପଣ ବେଳେ ବ୍ୟବହୃତ ରାଶିମିଶ୍ରିତ ଜଳ/ତିଳ ଓ ଜଳର ଅଞ୍ଜଳି; ୨-ଅଗ୍ନିରେ ଆହୁତି ପ୍ରଦାନ କଲାବେଳେ ଉଚ୍ଚାରିତ ଶବ୍ଦ/ଅଗ୍ନିଙ୍କ ସ୍ତ୍ରୀ; ୩- ପିତୃଲୋକ ଉଦ୍ଦେଶ୍ୟରେ ଜଳ ଓ ପିଣ୍ଡ ଆଦି ଦାନ ଦେବାବେଳେ ଉଚ୍ଚାରିତ ଶବ୍ଦ/ପିତୃଲୋକ-ପତ୍ନୀ/ଅଗ୍ନିଙ୍କର ଜଣେ ସ୍ତ୍ରୀ; ୪- ହୋମ; ୫- ବେଣାଚେର;

ନିରାଶା ସଂଶୟେ ପ୍ରାଣ ବ୍ୟାକୁଳ ବିଶେଷ,
କେ ଏଥି ତୋଷିବ ମନ ଦେଇ ଉପଦେଶ ?

ମୁଁ କି ଦୋଷୀ ? ପଚାରିଲେ ଅନ୍ତରେ ଅନାଇଁ
ଅନ୍ତରୁ ଉତ୍ତର ଆସେ ନାହିଁ ନାହିଁ ନାହିଁ ।

ନୁହେ ନରହନ୍ତା କିବା ପରଧନହାରୀ,
ପରଶି ନାହିଁ ଏ ତନୁ କେବେ ପର ନାରୀ ।

ଜ୍ଞାତସାରେ ଦେଇନାହିଁ ପର ପ୍ରାଣେ ପୀଡ଼ା
ଅପରାଧେ ଅନ୍ୟ ପାଶେ ହୋଇନାହିଁ ଛିଡ଼ା ।

ହରି ନାହିଁ କେବେ ଶସ୍ୟ ବଳେ ପର କ୍ଷେତ୍ରୁଁ,
କାଟି ନାହିଁ ସାଧାରଣ ଜଳାଶୟ ସେତୁ ।

କରି ନାହିଁ ଶାନ୍ତିଭଙ୍ଗେ କାହିଁ ଆୟୋଜନ,
ଦେଇ ନାହିଁ ଜାତି-ଧର୍ମ-ବିଦ୍ୱେଷ-ଭାଷଣ ।

କରି ନାହିଁ ପରନିନ୍ଦା ଈର୍ଷା ସହକାରେ,
ଅପରାଧେ କଳୁଷିତ ତେବେ କି ପ୍ରକାରେ ?

କହନ୍ତି ମତେ ସେ ରାଜନୀତି-ଅପରାଧୀ,
ରାଜାପ୍ରତି ମନେହେଲେ କେବେ ନାହିଁ ବାଧି[୬] ।

ରାଜା ପ୍ରଜାଙ୍କର ଶାନ୍ତି ଶୁଭ ଅଭିଳାଷେ,
ପ୍ରତ୍ୟହ ପ୍ରାର୍ଥନା ମୋର ବିଭୁପଦ ପାଶେ ।

କାହିଁ ରାଜଧର୍ମ ଆଜି ପବିତ୍ର ପ୍ରଭାତେ,
ମରନ୍ତି ଯେ ଦେଶେ ପ୍ରଜା ଦୁର୍ଭିକ୍ଷ ଆରତେ ?

ସୀତା ଦମୟନ୍ତୀ ବଂଶେ ଜାତ କୁଳାଙ୍ଗନା,
ଲଭନ୍ତି ଯେ ଦେଶେ ଆଜି ଘୋର ନିର୍ଯ୍ୟାତନା ।

ପ୍ରଜା ଲାଗି ସର୍ବତ୍ୟାଗ ଯହିଁ ରାଜନୀତି,
ମହାରାଜା ରାମଚନ୍ଦ୍ର ଲୋଡ଼ି ପ୍ରଜାପ୍ରୀତି;

ତେଜିଥିଲେ ପ୍ରାଣପ୍ରିୟା ସୀତା ବନବାସେ,
ଏହିକି ସେ ଦେଶ ଯହିଁ ପ୍ରଜାହିତ ଆଶେ,

---

୬- ଦ୍ୱେଷଭାବ/ମନ୍ଦ ଚିନ୍ତା;

ଜ୍ୟେଷ୍ଠସୁତ ଅସମଞ୍ଜେ[7] ସଗର ରାଜନ
ଅକାତରେ କରିଥିଲେ ଦେଶୁଁ ବିସର୍ଜନ ?

ରାଜପଦ ଅର୍ଥ ଯହିଁ ପରଜା-ରଞ୍ଜନ,
ସହେ ପ୍ରଜା ତହିଁ ଏବେ କି ଗୁରୁଗଞ୍ଜନ ?

ରାଜଧର୍ମ କ୍ଷାତ୍ରଧର୍ମ କ୍ଷତୁଁ କରେ ତ୍ରାଣ,
ରାଜନୀତି ଚୋଟେ ଯେବେ କ୍ଷତ ପ୍ରଜାଗଣ ।

ଘୋର ଅପଚାର ଯେବେ ରାଜନୀତି ନାମେ,
ସତ୍ୟ ରାଜନୀତି କାହିଁ ଏ ଭାରତ ଧାମେ ?

ପ୍ରଜା ଲାଗି ରାଜା, ପ୍ରଜା ହିତେ ରାଜନୀତି,
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି ।

ସାର୍ବଭୌମ[8] ସନାତନ[9] ଏ ଶାସନ ବିଧି,
ଲଭିଛି ସର୍ବତ୍ର ଆଜି ବିଶେଷ ପ୍ରସିଦ୍ଧି ।

ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜ୍ୟେ ଅମାତ୍ୟସଂସ୍ଥା ରାଜନୀତି ଯନ୍ତ୍ର ।

କାହିଁ ଏଥି ରାଜା ? ଏ ଯେ ନୌକର-ସାହି[10],
ପ୍ରଜା ସୁଖ ଶାନ୍ତି ନାମେ ବୃଥାଧର୍ମଦ୍ରୋହି ।

ପ୍ରଜାହିତ ପ୍ରଜାମତ ଛଳନା କେବଳ,
ପ୍ରେଷ୍ୟ[11] ଗୋଷ୍ଠୀ ଇଚ୍ଛାଧୀନ ଏ ଶାସନ କଳ ।

ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର,

ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ଚାରି ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।

ଭାରତେ ଅମାତ୍ୟସଂସ୍ଥା ରାଜନୀତି ଆଜ
ଓପାଡ଼ି ଏ ଚାରି ସ୍ତମ୍ଭ ଭାଙ୍ଗିଛି ସମାଜ;

୭- ସଗର ରାଜାଙ୍କ ପ୍ରଥମା ପତ୍ନୀ କୋଶିନୀଙ୍କ ପୁତ୍ର ଅସମଞ୍ଜଙ୍କୁ; ୮- ଅବାଧ/ଜଗଦ୍‌ବ୍ୟାପୀ; ୯- ବହୁକାଳୁ-ପ୍ରଚଳିତ/ନିତ୍ୟ; ୧୦- ଚାକର ସମାଜ/ଭୃତ୍ୟତନ୍ତ୍ର; ୧୧- ସେବକ/ଚାକର

ଦେବଭୂମି କର୍ମଭୂମି ଧର୍ମଭୂମି ସାର
ଭାରତରେ ନାହିଁ ନର ଜନ୍ମ ଅଧିକାର ।

ଆର୍ଯ୍ୟଋଷି ପ୍ରତିଷ୍ଠିତ ପବିତ୍ର ଭାରତ
ନିସ୍ତେଜ ନିଷ୍ପ୍ରଭ ଦୀନ ପରପଦାନତ ।

ଦେଖି ଏ ଦୁର୍ଗତି ମୋର ପିତୃ ପିତାମହ
ଅନ୍ତରୀକ୍ଷେ ଦେବଗଣ ଋଷିଗଣ ସହ

ବିକଳେ କାନ୍ଦନ୍ତି, ମୋର ହୃଦେ ଏ ପ୍ରତୀତି,
ମାନିବି କିପରି ତେବେ ଏ ଶାସନନୀତି ?

ରାଜନୀତି ଉଲ୍ଲଙ୍ଘନେ ନାହିଁ ମୋର ଦୋଷ
ଏଥି ମୋର ପିତୃଗଣ ଲଭନ୍ତି ସନ୍ତୋଷ ।

ନୁହେଁ ଯେଉଁ ନୀତି ପ୍ରଜାମତ ଅନୁକୂଳ
ଯାର ନିଷ୍ପେଷଣେ ପ୍ରଜା ବିବ୍ରତ ବ୍ୟାକୁଳ,

ଯାର ବ୍ୟୂହେ ଏକ ଦେଶେ ଅନ୍ୟ ଅଧିଗତ,
ଏକ ଜାତି ଅନ୍ୟ ଜାତି ଚିର ପଦାନତ,

ଯାର ଚକ୍ରେ ତ୍ରିଂଶ କୋଟି ଭାରତ ସନ୍ତାନ
ନିଜ ବାସେ ପରବାସୀ ନିଜ ଦେଶେ ଶ୍ୱାନ,

ଯାର ଫଳେ ଉପବାସୀ ମୋର ଦେଶବାସୀ
ଭାରତ ଜନନୀ ମୋର ପରଦ୍ୱାରେ ଦାସୀ,

ନୁହେ ସେ ନୀତି ମୋ ପିତୃ ଦେବର୍ଷିସମ୍ମତ,
ନୁହେଁ ତାହା ଆର୍ଯ୍ୟଧର୍ମ ନ୍ୟାୟ ସୁସଙ୍ଗତ ।

ଅପରାଧ ନୁହେ ନିଶ୍ଚେ ସେ ନୀତି ଲଙ୍ଘନ,
ଭାରତର ଧର୍ମ ଯାର ଉଚ୍ଛେଦ ସାଧନ ।

ଆସ ବିଶ୍ୱଦେବା[୧୨], ଆସ ମହର୍ଷିନିବହ
ଆସ କୁରୁକୁଳ ବୃଦ୍ଧ ଭୀଷ୍ମ ପିତାମହ !

ଆସ ବର୍ହିଷଦ[୧୩] ଆଦି ସର୍ବ ପିତୃଗଣ,
ଆସ ସର୍ବ ବସୁ[୧୪] ଯମ ଅନଳ ପବନ;

୧୨- ଦଶ ଗଣଦେବତା/ଅଗ୍ନି; ୧୩- ଅଗ୍ନିରେ ଆହୁତି ଦେଲେ ଯେଉଁମାନେ ଭୋଜନ କରନ୍ତି / ପିତୃଗଣ ବିଶେଷ; ୧୪- ଗଣଦେବତା ବିଶେଷ;

ଆସ ବନସ୍ପତି ଗିରି ସରିତ ସାଗର,
ଖେଚର[୧୫] ଭୂଚର ଯକ୍ଷ ପିଶାଚ କିନ୍ନର[୧୬],
ନିଖିଳ ବ୍ରହ୍ମାଣ୍ଡବାସୀ ସର୍ବ ଚରାଚର,
ଦେବତା ଅସୁର ନାଗ ରକ୍ଷ ସିଦ୍ଧ ନର
ଆସ ମୋର ପିତୃ ମାତୃ ମାତାମହଗଣ,
ଘେନ ସର୍ବେ ଏଥି ମୋର ଭକ୍ତି ଆବାହନ ।
ଘେନ ମୋର ଜଳାଞ୍ଜଳି ଘେନ ନମସ୍କାର,
ଦିବ୍ୟ ଅବଧାନେ ସର୍ବେ କର ହେ ବିଚାର ।
ନ୍ୟାୟର ନିର୍ମମ ତୁଳେ ତୁଳି କହ ଫେଡ଼ି,
ଯେ କାରଣେ ଲାଗିଛି ମୋ ହାତେ ଲୁହାବେଡ଼ି,
ଯେ ବ୍ୟାପାରେ ଭୋଗେ ମୁହିଁ ଆଜି କାରାଗାର
କହ ତହିଁ ଅପରାଧ ଯଥାର୍ଥ କାହାର ?
ମୁଁ କି ଏକା, ଶତ ଶତ ଭାରତ ସନ୍ତାନ,
ଭୋଗିଛନ୍ତି ଅକାତରେ କାରା ଅପମାନ ।
ଭୋଗନ୍ତି ଅଦ୍ୟାପି କେତେ ଦାରୁଣ ଯାତନା
ତେଜି ଜୀବନର ସୁଖ ସମ୍ଭୋଗ ବାସନା ।
ଶୋଣିତ-ପିପାସୁ ଘୋର ପାଶବ ସଭ୍ୟତା
ନାଶିବାକୁ ପ୍ରଚାରେ ଯେ ଅହିଂସା ବାରତା;
ଜିଘାଂସା ବିଷାକ୍ତ ନରେ ଶାନ୍ତି ସୁଧା ପଥ
ଦେଖାଇବା ଜୀବନରେ ଯାର ମୁଖ୍ୟବ୍ରତ,
ଶମ ଦମ ସତ୍ୟ ଶୁଦ୍ଧ ତ୍ୟାଗପୂତ ପ୍ରାଣ
ମାନବ-ଗୌରବ ଗାନ୍ଧି ଭାରତ-ସନ୍ତାନ,
ଦୀର୍ଘକାଳ ଲାଗି ଏବେ ବନ୍ଦୀ କାରାଗାରେ,
କାହା ଦୋଷ ଏଥି ? କହ ଉଚିତ ବିଚାରେ ।
ରାଜଭକ୍ତି ଭାରତରେ ଚିର ଶାସ୍ତ୍ରବିଧି,
ନୃପତି ଭାରତ-ନେତ୍ରେ ଦେବ-ପ୍ରତିନିଧି,

---

୧୫- ଆକାଶଗାମୀ/ପକ୍ଷୀ/ବିଦ୍ୟାଧର; ୧୬- କିଂପୁରୁଷ/ ଘୋଡ଼ାପରି ମୁଖ ଓ ମଣିଷ ଭଳି ଦେହବିଶିଷ୍ଟ ପୁରୁଷ/ଦେବଲୋକର ଗାୟକ;

ତୁଟିଛି ଭାରତେ ଯେବେ ଆଜି ଏ ବିଶ୍ୱାସ,
କୋଟି କୋଟି ପ୍ରାଣେ ଦୀର୍ଘ ନିରାଶା ନିଶ୍ୱାସ,

କାହାର ଏ ଅପରାଧ ? କେ ଏଥିର ହେତୁ ?
ଭାଙ୍ଗିଛି କେ ଶାସନର ସନାତନ ସେତୁ ?

ଯେ ଅମାତ୍ୟସଂଘ୍ରା ନୀତି ଅନିଷ୍ଟର ମୂଳ,
ଯାହାର ପ୍ରଭାବେ ପ୍ରଜା ବ୍ୟଥିତ ବ୍ୟାକୁଳ,

ରକ୍ତ-ମାଂସ ଦେହ ଧରି ଆଉ କେତେ ଦିନ,
ଭାରତେ ରହିବ ନର ସେ ନୀତି ଅଧୀନ ?

ଯେ ବିଧାନେ ସର୍ବେସର୍ବା ରାଜପ୍ରେଷ୍ୟଗଣ,
ପ୍ରଜାକୁଳ ସହେ ଯହିଁ ନିତ୍ୟ ନିଷ୍ପେଷଣ ।

ଶାସନ ବୋଇଲେ ଯହିଁ କେବଳ ପ୍ରହାର
ପାଳନର ଅର୍ଥେ ପ୍ରଜା ବୁଝେ କରଭାର,

ସମ୍ପଦ ଶଠତା ଯହିଁ ପାଏ ସମ୍ବର୍ଦ୍ଧନା,
ଦରିଦ୍ର ନିରୀହ ପ୍ରଜା ଭୋଗେ ନିର୍ଯ୍ୟାତନା ।

ମାନବ-କର୍ତ୍ତବ୍ୟ-ଜ୍ଞାନ ଥିବ ଯାର ଲେଶ
ଅନୁଭବେ ଅନ୍ତରେ ଯେ 'ମୋ ଜାତି ମୋ ଦେଶ'

ଅହିଂସାର ଶାନ୍ତି-ପଥେ ଏଥି ପ୍ରତିବାଦ
କରେ ଯେବେ ସେହି ତାର କିବା ଅପରାଧ ?

ଏହି ଅପରାଧେ ଗାନ୍ଧି ଏବେ କାରାଗାରେ,
ଏହି ଅପରାଧେ ଦଣ୍ଡ ଘଟିଛି ମୋଠାରେ ।

ଭୋଗୁଛନ୍ତି ଦଣ୍ଡ କେତେ ଗୃହସ୍ଥ ସନ୍ୟାସୀ
ଏଥି କାହା ଦୋଷ କହ ତ୍ରିଲୋକ-ନିବାସୀ ?

ପ୍ରେଷ୍ୟପ୍ରତିଷ୍ଠିତ ହେଲେ ଶାସନପଦ୍ଧତି,
ଲଭେ ପ୍ରଜାକୁଳ ନାନା ବିଷମ ଦୁର୍ଗତି,

ପ୍ରଜାସାଧାରଣ ମତ ଯେବେ ଉପେକ୍ଷିତ
ଅଶାନ୍ତି ଅନଳ ହୁଏ ହୃଦୟେ ସଞ୍ଚିତ,

ଦମନ-ପବନେ ଥରେ ଜଳିଲେ ପାବକ
ମାନେ ନାହିଁ ବେଡ଼ି ଶୂଳି କୃପାଣ ସାୟକ ।

ଉଠେ ସେ ଦାବାଗ୍ନି[୧୭] କ୍ରମେ ମହାରୁଦ୍ରବେଶେ,
ଭୀଷଣ ବିପ୍ଳବ ବାତ୍ୟା ବହେ ସାରା ଦେଶେ ।

ବରଷେ ଶୋଣିତଧାରା ଭାସେ ରସାତଳ,
ଅବଶେଷେ ପ୍ରଜା ପଦେ ନମେ ରାଜବଳ ।

ମାନବ-ଜଗତେ ଏହି ଗତି ପୁରାତନ,
ଦିଏ ଇତିହାସ ଯାର ଶତ ନିଦର୍ଶନ ।

ନ ଉଠୁ ଏ ଭାରତେ ସେ ହିଂସାନଳ ଶିଖା,
ନ ଆସୁ ରକ୍ତାକ୍ତ ହତ୍ୟା ଭୀମ-ବିଭୀଷିକା ।

ଅହିଂସାର ଆଦି ସ୍ଥାନ ଏ ଋଷି ଆଶ୍ରମ,
ଶିଖାଉ ଜଗତେ ପୁଣି ଅହିଂସା ନିୟମ ।

ଏଥିଲାଗି ଗାନ୍ଧି କଲେ ଅହିଂସା ପ୍ରଚାର,
ଚଉଦିଗେ ବ୍ୟାପିଲା ସେ ଶୁଭ ସମାଚାର ।

ଅହିଂସାର ମହାମନ୍ତ୍ରେ କୋଟି ନରନାରୀ
ଜାଗିଲେ ଭାରତେ ଗୃହୀ ତ୍ୟାଗୀ ବ୍ରହ୍ମଚାରୀ ।

ପୁରପଲ୍ଲୀ ଗିରି ବନେ ଉଠେ ଶାନ୍ତି ତାନ,
ନବ ଆଶା ନବୋତ୍ସାହେ ଜାଗେ କୋଟି ପ୍ରାଣ

ଅହିଂସା ବ୍ରହ୍ମାସ୍ତ୍ରେ ଯିବ ପ୍ରେଷ୍ୟବଳ ନାଶ,
ମିଳିବ ସ୍ୱରାଜ୍ୟ – ଦୃଢ଼ ହେଲା ଏ ବିଶ୍ୱାସ ।

ଗାନ୍ଧିଙ୍କର ହେଲା ଏହା ମହା ଅପରାଧ,
ଗଣିଲେ ଅମାତ୍ୟଗଣ ଶାସନ-ପ୍ରମାଦ ।

ସାନ ବଡ଼ ଆଉ ଯେତେ ଶାନ୍ତି-ସେନାଗଣ,
ଉଡ଼ାଇଲେ ଗ୍ରାମେ ନଗ୍ରେ ଅହିଂସା-କେତନ

ଶିଖାଇଲେ ବୁଝାଇଲେ ଲୋକେ ଆତ୍ମବଳ,
ପ୍ରେଷ୍ୟଗଣ ନେତ୍ରେ ହେଲେ ସେ ସକଳେ ଖଳ ।

ସେହି ଖଳ ବୋଲି ମୋର ଏବେ କାରାବାସ,
ଏଥିରେ ମୋର କି ଦୋଷ ? କର ହେ ପ୍ରକାଶ ।

ହେ ଦ୍ୟୁଲୋକବାସୀ ଦେବ ପିତୃଋଷିଗଣ,
ସର୍ବଭୂତ ଚରାଚର, ଘେନ ମୋ ତର୍ପଣ ।

---

୧୭ - ବଣର ନିଆଁ/ବଣ ପୋଡ଼ି

ଅପରାଧେ କଳୁଷିତ ଯେବେ ମୋ ଅନ୍ତର,
ସଦୟେ ସୂଚାଇ କହ, ମୁଁ ଅତି କାତର ।
ନାହିଁ ଯେବେ ଦୋଷ ମୋର ବହି ତେବେ ତୁଷ୍ଟି,
ଏ ତର୍ପଣ କାଳେ ମୋତେ ଦିଅ ଦିବ୍ୟ ଦୃଷ୍ଟି ।
ତୁଟୁ ମୋ ମାନବମୋହ, ଘୁଞ୍ଚୁ ମୋ ସଂଶୟ
ତବପୁଣ୍ୟ ଦିବ୍ୟାଲୋକେ ଆଲୋକୁ ହୃଦୟ ।
ଏହି ଯେ ଦେଖେଁ ମୁଁ ସର୍ବେ ଅନ୍ତରୀକ୍ଷେ ଠୁଳ,
ଦିଶନ୍ତି ଉଦ୍‌ବିଗ୍ନ ବ୍ୟସ୍ତ ବ୍ୟଥିତ ବ୍ୟାକୁଳ ।
ଆସ ନାହିଁ କିପାଁ ଏଥି ଆବାହନ ସ୍ଥାନେ,
ଘଟିଛି କି ବ୍ୟତିକ୍ରମ ତର୍ପଣ ବିଧାନେ ?
କାରାଗାରେ କରିବି ମୁଁ କିବା ଆୟୋଜନ ?
ଆନ୍ତରିକ ଶ୍ରଦ୍ଧା ମୋର କର ହେ ଗ୍ରହଣ ।
ପର ଭୂମେ ପିତୃକାର୍ଯ୍ୟ ନୁହେ ସୁବିହିତ,
ଓହ୍ଲାଇବା ପାଇଁ ତେଣୁ ହୁଅ କି ଶଙ୍କିତ ?
ଦେଖି ନିଜ ବଂଶେ ଜାତ ଭାରତ-ନିବାସୀ,
ନିଜ ଦେଶେ ପରଦେଶୀ ସ୍ୱଗୃହେ ପ୍ରବାସୀ ।
ହେ ଭାରତପୂଜ୍ୟ ପୂର୍ବ ପିତୃ-ପିତାମହ,
ଦେଖେଁ ତବ ନେତ୍ରୁ ଅଶ୍ରୁ ବହେ ଅହରହ ।
ପରଶ-ଅଯୋଗ୍ୟ ଜନ ପାଶୁଁ ରହି ଦୂରେ,
ଶୁଦ୍ଧଦେହୀ ନିଏ କିଛି ଯେସନ ଆତୁରେ,
ବଢ଼ାଇ ଅନିଚ୍ଛା ସହ କର ସଙ୍କୁଚିତେ,
ଦେଖୁଛି ମୋ ତିଳୋଦକ ନେଉଛ କୁଣ୍ଠିତେ ।
ଅସ୍ପୃଶ୍ୟ ମୁଁ ପରାଧୀନ ଏ ଦୁଃଖ ଭାବନା
ଦିଏ ହୃଦେ ଅନୁକ୍ଷଣ ଅସହ୍ୟ ବେଦନା ।
ତବ ଗଢ଼ା ଦେବାଳୟେ ନୁହେଁ ଅଧିକାରୀ,
ତବ ପ୍ରତିଷ୍ଠିତ ରାଜ୍ୟେ ମୁଁ ଦୀନ ଭିକାରି ।
ତବ ମର ତନୁ ଯହିଁ ମିଶିଛି ମାଟିରେ,
ପଡ଼ିଅଛି ଅସ୍ଥି ତବ ଯେଉଁ ନଦୀତୀରେ ।

ସେ ପୁଣ୍ୟ ଶ୍ମଶାନ ନୁହେ ମୋର ଅଧିକାରେ,
ଅନାଦୃତ ଶ୍ୱାନ ମୁହିଁ ଭାଗୀରଥି ତୀରେ !
ଜାତି ଧର୍ମ ନିର୍ବିଶେଷେ ଭାରତ ତନୟ,
ଭୋଗନ୍ତି ସରବେ ଏହି ଦଶା ବିପର୍ଯ୍ୟୟ ।
ପିତୃରାଜ୍ୟେ ନାହିଁ ଯାର ପୂର୍ଣ୍ଣ ଅଧିକାର,
ସେ ଅଧମ ସୁତ ଶିରେ ସହସ୍ର ଧିକ୍‌କାର ।
ସର୍ବସ୍ୱାନ୍ତ ପରାଧୀନ ହୋଇ ପିତୃଗଣ
ଅକିଞ୍ଚନ ଭାବେ ଯେବେ ତେଜନ୍ତି ଜୀବନ ।
ସେହି ଏକା ସୁସନ୍ତାନ କୁଳର ଗୌରବ,
ଆଣେ ଯେ ଫେରାଇ ପୁଣି ଅତୀତ ବିଭବ,
ସେ ଏକା ଦାୟାଦ ନାମ କରଇ ସାର୍ଥକ,
ଯା ଯୋଗେ ତରନ୍ତି ପିତୃ ଦାସତ୍ୱ ନରକ ।
ଜନନୀ ଓ ଜନ୍ମଭୂମି ସ୍ୱର୍ଗୁଁ ଗରୀୟସୀ,
ଗାଇଲେ ଯେ ପୁଣ୍ୟଶ୍ଳୋକ ସୁକବି ମହର୍ଷି ।
ନ ବୁଝେ ମହତ୍ତ୍ୱ ତାର ତବ କୁଳୋଦ୍ଭବ,
ନ କରେ ସେ ଦେଶପ୍ରେମ ପ୍ରାଣେ ଅନୁଭବ ।
ସେଥିଲାଗି ମନେ ପରା କରୁଛ ଶୋଚନା,
ଦେଖି ଏ ପବିତ୍ରଭୂମି ଦୁଃସହ ଲାଞ୍ଛନା !
ଶରଣ୍ୟ ବରେଣ୍ୟ ଦେବରଷି ପିତୃଗଣେ,
ତର୍ପଣ କରେ ଯେ କାରା ଆବଦ୍ଧ ପ୍ରାଙ୍ଗଣେ ।
କଳ୍ପନାର ଦିବ୍ୟ ନେତ୍ରେ ଦେଖେଁ ଯେ ଆକାଶେ,
ତବ ଶୋକାକୁଳ ଛବି ସୁସ୍ପଷ୍ଟ ପ୍ରକାଶେ ।
କି ଦୁଃଖ ଆବେଗେ ମୋର ବିଦୀର୍ଣ୍ଣ ହୃଦୟ,
ମୁଁ କି ସେ ସ୍ୱାଧୀନ ଆର୍ଯ୍ୟ ମହର୍ଷିତନୟ;
ଯାହାର ସ୍ୱାଧୀନ ଚିନ୍ତା ଦିଗ ଦିଗନ୍ତରେ
ବିସ୍ତାରିଲା ଜ୍ଞାନାଲୋକ ଧରଣୀ ପୃଷ୍ଠରେ ?
ଗଙ୍ଗା ଗୋଦାବରୀ ଆଦି ପବିତ୍ର ସରିତେ,
ଏ କାରା ଉଦକେ ଆଣି କଳ୍ପେ ମୁଁ ଯେ ଚିତ୍ତେ ।

ଅଛି କି ସେ ନଦୀ ନଦେ ସ୍ୱର୍ଗୀୟ କରଣି,
ଅଛି କି ସେଥିରେ ମୋର ସ୍ୱଚ୍ଛନ୍ଦ ସରଣି ?

ବିଶ୍ୱବାସୀ ଚରାଚରେ କରି ଆମନ୍ତ୍ରଣ,
ମୁଁ ଯେ ଏଥି କରେ ଜଳ ଅଞ୍ଜଳି ଅର୍ପଣ ।

ସେ ସାରା ବିଶ୍ୱରେ ମୋରେ ଅଛି କାହିଁ ସ୍ଥାନ ?
ସର୍ବତ୍ର ମୋ ଭାଗ୍ୟେ ଘୋର ପୀଡ଼ା ଅପମାନ ।

ଏ ଦାରୁଣ ଚିନ୍ତାରାଶି ଦିଏ ଯେ ଯନ୍ତ୍ରଣା,
ତାହା କି ହେ ସ୍ୱର୍ଗବାସୀ ତୁମ୍ଭଙ୍କୁ ଅଜଣା ?

ଜାଣୁଅଛ ଯେବେ ମୋର ଅନ୍ତର କଷଣ,
ଅନୁଗ୍ରହେ କର ତବ ଆଶିଷ ବର୍ଷଣ ।

ତୁମ୍ଭର ସୁକୃତବଳେ ଏତେକାଳେ ଆଜ,
ଭାରତ-ସନ୍ତାନ ହୃଦେ ଅଙ୍କୁରେ ସ୍ୱରାଜ୍ୟ ।

ଆସୁ ସ୍ୱର୍ଗରାଜ୍ୟୁଁ ତବ ପବିତ୍ର ପ୍ରେରଣା,
ଝରୁ ଶୁଭ ଆଶୀର୍ବାଦ ଅମୃତ ଝରଣା,

ପଡୁ ଏ ଭାରତ-ପ୍ରାଣେ ସ୍ୱର୍ଗୀୟ କିରଣ
ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ;

ସ୍ୱରାଜ୍ୟ ଅଙ୍କୁର କ୍ରମେ ହେଉ କଳ୍ପତରୁ,
ଭାରତ ଅଭୀଷ୍ଟ ଶାଖା ଫୁଲ ଫଳ ଧରୁ;

ଭାରତ-ପ୍ରଭାବେ ହେଉ ସାର୍ଥ ଋଷିବାଣୀ
ମଧୁମୟ ଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ ।

ସର୍ବ ସିନ୍ଧୁ ସ୍ରୋତେ କ୍ଷରୁ ମଧୁମୟ ନୀର
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।

ମଧୁମୟ ରସେ ପୁଷ୍ଟ ହେଉ ବନସ୍ପତି,
ମଧୁମୟ ରସେ ଶୋଭୁ ସର୍ବ ବସୁମତୀ ।

ହେଉ ମଧୁମୟ ଉଷା ପ୍ରଦୋଷ ରଜନୀ,
ନଭୋଦେଶେ ମଧୁମୟ ରବି ଦିନମଣି ।

ମଧୁମୟ ରବେ ହେଉ ବିଶ୍ୱ ନିନାଦିତ,
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ-ସଙ୍ଗୀତ ।

□□□

## ୬ । ବନ୍ଦୀର ବିରହ ବ୍ୟଥା

ମଧୁର ବସନ୍ତ ସମୟ ଦିନ ହେଲାଣି ଶେଷ,
ଛାଡ଼ି ପୂର୍ବ ଏବେ ତପନ ଯିବେ ପଶ୍ଚିମଦେଶ ।
ବିଦାୟର ତେଣୁ ଲାଗିଛି ଆୟୋଜନ ବିସ୍ତର,
ନାନାରଙ୍ଗ ଚନ୍ଦ୍ର ଆତପେ[୧] ଆଚ୍ଛାଦିତ ଅମ୍ବର ।
ଦଳେ ଦଳେ ପକ୍ଷୀ ଗାଆନ୍ତି ଉଚ୍ଚେ କରୁଣ ଗାନ,
ତରୁ ଗିରି ଛାୟା ବିସ୍ତାରି ପାଦେ କରେ ପ୍ରଣାମ ।
ତାଙ୍କ ଶିରେ ସୂର୍ଯ୍ୟ ଦିଅନ୍ତି ହେମବରଣୀ ପାଟ,
ଅନୁରକ୍ତ ଭୃତ୍ୟ ମସ୍ତକେ ଯଥା ବାନ୍ଧେ ସମ୍ରାଟ ।
ଅସ୍ତାଚଳ ଉଚ୍ଚ ଆସନେ ବସି ହସନ୍ତି ରବି,
ପ୍ରାଚୀ ଅନୁରାଗେ ରଞ୍ଜିତ ଚାରୁ ବଦନ ଛବି ।
ପ୍ରାଚୀ ଅଭିମୁଖେ ଲମ୍ବାଇ ସ୍ନିଗ୍ଧ କନକ କର,
କୋମଳ ଆଶ୍ୱାସେ ଦେଖାନ୍ତି ନିଜ ସ୍ନେହ ଆଦର ।
ସମୀରଣ ମୃଦୁ ମର୍ମରେ ପ୍ରେମ ଅସ୍ପଷ୍ଟ ଗିର,
କହନ୍ତି "ଅଚିରେ ଫେରିବି ଧନି ! ନୁହ କାତର ।"
ଅନୁରାଗ ରଙ୍ଗ ପ୍ରକାଶେ କ୍ଷଣେ ପ୍ରାଚୀ-କପୋଳେ,
ତା ମଧ୍ୟରେ କିନ୍ତୁ ବିରହ-ଦୁଃଖ-କାଳିମା ଦୋଳେ ।
ରବି ଲାସ୍ୟହାସ୍ୟେ[୨] ପ୍ରକଟେ ଗୁରୁ ବିଷାଦରେଖା,
ଅନୁଭବୀ ନେତ୍ରେ କେବଳ ସିନା ଯାଏ ସେ ଦେଖା ।
ଆହା, ପ୍ରିୟଜନ ବିରହ କି ଦାରୁଣ କଷଣ ?
ପ୍ରୀତିପାଶେ ବନ୍ଧା ଜଗତେ ସର୍ବ ଜଡ଼ ଚେତନ ।
ଏ ବିରହ ଦୃଶ୍ୟ ଦିଅଇ ବନ୍ଦୀ ପରାଣେ ବ୍ୟଥା,
ପଲକେ ପଲକେ ପଡ଼ଇ ମନେ କେତେ କି କଥା ।

---

୧- କିରଣ, ୨- ନୃତ୍ୟ ଓ ହସ ।

ସମ୍ଭାଳ ଟିକିଏ ସିପାହି ଚାବି ନ ଦିଅ ଦ୍ୱାରେ,
ପ୍ରଣୟ ପ୍ରଭାବ ଦେଖିବି କ୍ଷଣେ ରହି ବାହାରେ ।

ପ୍ରଣୟ-ପୀୟୂଷେ ମିଶିଛି କିପାଁ ବିରହ-ବିଷ,
ବିଶ୍ୱବାସୀ ପ୍ରତି ବିଚିତ୍ର ଏ କି ବିଧି ଆଶିଷ ?

ସୁନ୍ଦର ସରୋଜ ଚରଣେ କିପାଁ ଜଡ଼ିତ ଅହି,
ବିପରୀତ ସ୍ଥିତି ରହସ୍ୟ କିଏ ପାରିବ କହି ?

ପ୍ରିୟଜନ ପ୍ରିୟ ସ୍ଥାନ ମୁଁ ଛାଡ଼ି ବନ୍ଦୀ ଏଠାରେ,
ବିରହ-ବିଷମ ବିଷେ ମୋ ମନ ପରାଣ ଘାରେ ।

ବିଶ୍ୱ ପ୍ରକୃତିରେ ଦେଖିଲେ ସମ ହୃଦ-ବେଦନା,
ତାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।

ରହ ଆଉ ଦଣ୍ଡେ ସିପାହି କିପାଁ କର କଟାଳ ?
କକ୍ଷେ ଅବରୋଧ ସମୟ ପରା ଗୋଧୂଳିକାଳ !

ଦେଖ ରତ ରତ ହୁଅଇ ରବି ଏବେ ଗଗନେ,
ଆଉ ଟିକିଏ ମୁଁ ବୁଲିବି ଏଥି କାରା-ପ୍ରାଙ୍ଗଣେ ।

ଯମଦୂତ ହୃଦେ କରୁଣା କାହୁଁ ବସିବ ତିଳେ ?
ଅଧିକ ନ କହି ମର୍ଯ୍ୟାଦା ଜଗି ପଶିବି ବିଳେ ।

## ୭ । ବନ୍ଦୀର ସାନ୍ଧ୍ୟ ଭକ୍ତି

ସତ୍ୟ ସ୍ୱାଧୀନତା ଲାଗି ଯାର କାରାବାସ,
ତା ଲାଗି ଏ ପୁଣ୍ୟବେଳେ କରେଁ ମୁଁ ବିଶ୍ୱାସ ।

ପଶ୍ଚିମ ଭୂଭାଗେ ଆଜି ଯବନ[୧] ମହର୍ଷି,
ଶାନ୍ତ ଦାନ୍ତ[୨] ମହାଯୋଗୀ ଆଦି ତତ୍ତ୍ୱଦର୍ଶୀ,

ଆତ୍ମାର ଅମର ତତ୍ତ୍ୱ ପ୍ରଚାରି ଲୋକରେ,
ସତ୍ୟସନ୍ଧ ସକ୍ରେଟିସ୍ ଯେବେ ଅକାତରେ,

୧- ଗ୍ରୀକ୍ / ହିନ୍ଦୁଧର୍ମାବଲମ୍ବୀ ହୋଇନଥିବା; ୨- ଜିତେନ୍ଦ୍ରିୟ;

ପାଷଣ୍ଡ ଶାସନ-ଦଣ୍ଡେ ଦେଖାଇଲେ ଶିର,
ମୁଖେ ଯେବେ ବିଷପାତ୍ର ଲଗାଇଲେ ବୀର ।

ଆଥେନସ ଆକାଶେ ଏହି ଅସ୍ତମିତ ରବି,
ଦେଖାଇଲା ହାସ୍ୟାଭାସେ ନିରାନନ୍ଦ ଛବି ।

ବୁଡ଼ି ନାହିଁ ଏବେ ସୂର୍ଯ୍ୟ, ଆସି ନାହିଁ କାଳ,
ନ ପିଅ ମହର୍ଷି, ଆଉ ମୁହୂର୍ତ୍ତେ ସମ୍ଭାଳ ।

ସବିନୟେ ନିବେଦନ କଲେ ଶିଷ୍ୟଦଳ,
ମମତା ଉପେକ୍ଷି ମୁନି ପିଇଲେ ଗରଳ ।

ଗଲା ସେ ଅମର ଆତ୍ମା ଛାଡ଼ି ମରକାୟା,
ଆଚ୍ଛାଦିଲା ଚଉଦିଗେ ବିଷାଦର ଛାୟା ।

ଜାଣି ନ ଥିଲା ଯେ ହୃଦ ଭୟ ପଳାୟନ,
ମରଣେ ଯେ ଦେଖୁଥିଲା ଅମର ଜୀବନ,

ଚାଲିଗଲା ଚାହୁଁ ଚାହୁଁ ତେଜି ମର୍ତ୍ତ୍ୟବାସ,
ବୀର ଗୁଣଗାଥା ଏବେ ଗାଏ ଇତିହାସ ।

ଦେଖିଛ ତ ସେ ଘଟନା ବୀର ଦିନନାଥ,
ସତ୍ୟ ସ୍ୱାଧୀନତା ପ୍ରତି ଶାସନ ବିଘ୍ନାତ ।

ଶାନ୍ତି ସୁଶାସନ ନାମେ ପଶୁ ଅତ୍ୟାଚାର,
ସତ୍ୟ ସ୍ୱାଧୀନତା ଶିରେ ଉତ୍କଟ ପ୍ରହାର ।

କେତେ କାରାଗାରେ କେତେ ଘୋର ନିର୍ଯ୍ୟାତନ,
କେତେ ସାଧୁହତ୍ୟା କେତେ ବୀର ନିଷ୍ପେଷଣ ।

କ୍ରୂର କଦର୍ଥନେ[୩] କେତେ ହୃଦ ଖଣ୍ଡ ଖଣ୍ଡ,
କେତେ ଦେବଦୂତେ ବୃଥା ଅମାନୁଷ ଦଣ୍ଡ,

ମାନବ ସଭ୍ୟତା ମୁଖେ କଳଙ୍କ କାଳିମା
ଦେଖିଛ ସବିତା, ତାର ନାହିଁ ପରିସୀମା ।

କହ ଦେବ ହେଲା କିବା ପରିଣାମ ତାର,
ଜଗତରେ କାହା କାର୍ଯ୍ୟ ଲଭିଲା ପ୍ରସାର ?

ଉଡ଼ିଅଛି ଅବଶେଷେ ସତ୍ୟର ନିଶାଣ,
ବାଜିଅଛି ସ୍ୱାଧୀନତା ବିଜୟବିଷାଣ[୪] ।

---

୩- ପୀଡନ / ଅବମାନନା; ୪- ବିଜୟର ଶିଙ୍ଗାବାଦ୍ୟ ।

ହୋଇଅଛି ରାଜଶକ୍ତି ଲୀନ କାଳଗ୍ରାସେ,
ପାଉଅଛି ଅପଯଶ ଭାବୀ ଇତିହାସେ ।

ଏ ସକଳ ଗ୍ରହରାଜ କରିଛ ସାକ୍ଷାତ,
ଘେନ ଦେବ ମୋର ସାନ୍ଧ୍ୟ ଭକ୍ତି ପ୍ରଣିପାତ ।

ବିଜନ ପ୍ରକୋଷ୍ଠ ଏବେ କରିବି ଆଶ୍ରୟ,
ସ୍ମୃତିରେ ସେବିବି ତହିଁ ବସନ୍ତ-ମଳୟ ।

## ୮ । ବନ୍ଦୀର ସ୍ୱଦେଶ ଚିନ୍ତା

ବାହାରେ ବହଇ କେଡ଼େ ସୁଶୀତଳ
ମଧୁର ମଳୟ ମୃଦୁ ମରୁତ,
ନବ ମଲ୍ଲୀକଢ଼ି ମୁଡୁକି[୧] ହସଇ
ଭ୍ରମର ଦୋଳାଏ ପ୍ରେମେ ତା ବୃନ୍ତ ।

କବାଟ ଫାଙ୍କରେ ଚାହିଁଲେ ବାଙ୍କରେ
ଥରେ ଥରେ ଆସେ ଚୋରା ପବନ
ସେ କି ଗୁପ୍ତଚର, ବାହାର ଖବର
ଦେଇ ଲୁଚି ଚାଲିଯାଏ ବହନ ।

ସେ ସ୍ନିଗ୍ଧ ପରଶେ ନିମିଷ ସଂଭାଷେ[୨]
ତାପିତ ପ୍ରାଣ ମୋ ପୂରେ ପୁଲକେ,
କେତେ ସୁଖସ୍ମୃତି ଜାଗେ ଏ ଅନ୍ତରେ
କେତେ ଚାରୁଚିତ୍ର ନାଚେ ପଲକେ ।

ମନେ ଏବେ ଆସେ ତରୁଣ ବୟସେ
ବୁଲୁଥିଲି ଯେବେ ଭାର୍ଗବୀ ତୀରେ,
ପୁନାଗଂ ବକୁଳ- ସୌରଭ ସଂକୁଳ-
ସୁବାସ ଶୀତଳ ସଞ୍ଜ ସମୀରେ ।

କ୍ଷୀଣତୋୟା ନୀରେ ଖେଳେ ଧୀରେ ଧୀରେ
ସୁମଞ୍ଜୁଳା ଲଘୁ ଲହରୀମାଳା,

---

୧- ଈଷତ୍ / ସ୍ମିତ; ୨- ଆଳାପରେ / ପରିଚୟରେ;

ଦକ୍ଷିଣ ଦିଗକୁ କୁଞ୍ଚିତ କୁନ୍ତଳ
ମେଲାଇ ଦେଇଛି କି ପଲ୍ଲୀବାଳା ।

ଗ୍ରାମ ସୀମନ୍ତିନୀ ଚହଲାଇ ପାଣି
କଳସରେ ଯେବେ ନିଅନ୍ତି ଭରି,
ନୀଳମଣି ଦାମ[୩] ପ୍ରାଏ ସେ ଲହରୀ
ଖଣ୍ଡେଦୂର କ୍ଷଣେ ଯାଏ ପ୍ରସରି ।

ଗାଈଆଳ ପିଲା ଗୋଠୁଁ ବାହୁଡ଼ାଇ
ଆଣୁଥାଏ ଗାଈ ବେଣୁ ବଜାଇ,
ହାଟକାମ ସାରି ଫେରନ୍ତି ବେପାରୀ
ଭଞ୍ଜ ଚଉପଦୀ ପଦ ପକାଇ ।

ଯାଗେଶ୍ୱରୀ ପାଶେ ଦୀପ ଦେଇ ବାସେ
ଆସନ୍ତି କୌତୁକେ କୁମାରୀ କୁଳ
କିଏ କରେ କଳି ଆନ ସଙ୍ଗେ ଖେଳି
କିଏ ବା ଗୋଟାଏ ବଉଳଫୁଲ ।

ଯାଉଁଳି କାନ୍ଧରେ କେବେ ବା ବନ୍ଧରେ
ଭଉଣୀ ଆଗରେ ଚାଲଇ ଭାଇ,
ଶାଶୁଘରେ ନିଏ ସନ୍ଧ୍ୟା ଦେଖି କହେ
ଚାଣ୍ଡେ[୪] ଗୋଡ଼ କାଢ଼ି ଚାଲିବା ପାଇଁ ।

ନବ ଯଉବନୀ କାଖେ ପିଲା ଘେନି
ଚାଲି ନ ପାରଇ ଜଘନ ଭାରେ;
ତା ଚାହିଁ ଚପଳ ଯୁବା ସଙ୍ଗୀଦଳ
ପରିହାସେ ଏକ ଆନକୁ ଠାରେ ।

କେତେ ଆଡୁ ଉଡ଼ି ଆସୁଛି ବାଦୁଡ଼ି
ଝୁଲନ୍ତି ପୁନାଗ-ଫଳିତ-ଶାଖେ,
ନଦୀ ତପେ ତପେ ପାଦପ ପ୍ରକମ୍ପେ
ଚପଳାଙ୍ଗୀ ଚାହେଁ ଚମକି ପାଖେ ।

କାହିଁ ନଦୀଜଳେ ମିଳି ଟୋକା ଦଳେ
ଗୋଳନ୍ତି ଗୋବର ଦେଖାନ୍ତି ହୁଳା[୫],

---

୩- ମାଳା/ଦଉଡି; ୪- ଶୀଘ୍ର; ୫- ନିଆଁ ଲଗାହୋଇଥିବା ପାଳବିଣ୍ଡା/ଏକପ୍ରକାର ମଶାଲ

ମାଛ ଧରିବାର          କରନ୍ତି ବିଚାର
     ଦେଇ କାନିଖିଅ ବାଲି ଘୁମୁରା[୬] ।
ତୀର ସଇକତେ          ଆଉ ପିଲା କେତେ
     ଖେଳୁଥାନ୍ତି ଉଚ୍ଚେ ଟେକିଣ ରାହା[୭],
ଗୁଡ଼ିଆଦାଣ୍ଡରେ          କେ କାହାକୁ ମାରେ
     କିଏ ହସି ପୁଣି ଦେଖାଏ ବାହା ।

ହଳ ଲେଉଟାଇ          ଆସୁଥାଏ ଭୋଇ
     ମୁଣ୍ଡେ ଘାସଗୋଛା ହାତେ ପାଞ୍ଚଣ
ବଳଦ ଓଡ଼ାଇ          ଦିଏ କେବେ ଗାଇ
     "କିପାଁ ଛାଡ଼ିଗଲୁ ତୁ ଲଇକ୍ଷଣ !"

ବାଟୋଇ ଭିକାରି          ବନ୍ଧରୁ ଉତୁରି
     ଆଶ୍ରୟ ଆଶାରେ ଗ୍ରାମରେ ପଶେ
ହୁଏ ଯହିଁ ଗୀତ          ଉଚ୍ଚେ ଭାଗବତ
     ଶୁଣିବାକୁ ତହିଁ ପିଣ୍ଡାରେ ବସେ ।

ପଡ଼ିଯାଏ କ୍ରମେ          ଘରକଥା ମନେ
     ଅତିଥି ଆଦର ଦେବ ଅର୍ଚ୍ଚନା,
କାରାଗାର କକ୍ଷେ          କିପାଁଇଁ ଏ ବକ୍ଷେ
     ଆଣିବି ଆଉ ସେ ବୃଥା ଭାବନା ?

ହେ ବସନ୍ତବାତ          ମୋ ଦ୍ୱାରେ ଆଘାତ
     କର ଭଲା ଆଉ ଥରେ ସଦୟେ,
ଦକ୍ଷିଣ ଦିଗର          କହ ସମାଚାର
     ସିଞ୍ଚ ଶାନ୍ତି-ସୁଧା କ୍ଷଣେ ହୃଦୟେ ।

ମୋର ପ୍ରିୟସ୍ଥଳୀ          କେତେ ନିଉଛାଳି[୮]
     କରିଥିବେ ତବ ଆସିବା ବାଟେ,
ଦେଇଥିବେ ପରା          କେତେ କି ବାରତା
     ଶୁଣାଅ ମନ ମୋ ଅଛି ଉଚ୍ଚାଟେ ।

---

୬- ଲୁଗାରେ ବାଲିପୁଡ଼ା କରି ମାଛ ଧରିବାର କୌଶଳ; ୭- ବିରାମହୀନ କ୍ରନ୍ଦନ ବା ଚିତ୍କାର/ଆଶ୍ରୟ ଦେବାର ସ୍ଥାନ; ୮- ଖୋସାମତ/ବନ୍ଦନା/ପ୍ରଣାମ ।

କରିଥିବ ଭେଟ ମଞ୍ଜୁଷା-ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ ନାଚିଥିବ ପ୍ରେମେ
ଦୋହଲାଇ ତରୁ ଭୁଜସଂକୁଳ ।

ରସନା ନୟନ ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ-ମଣ୍ଡନ ସୁରମ୍ୟ 'ଉଦ୍ୟାନ'
ଦେଇଥିବେ କେତେ କି ଉପହାର ।

ଆମ୍ବ ରମ୍ଭା ବେଲ ଲେମ୍ବୁ ନାରିକେଳ
ପଣସ ସପୁରୀ ଖଜୁରୀ ତାଳ,
ବିଧିରକ୍ଷା ପାଇଁ ଆସିଥିବ ଛୁଇଁ
'ଉଦ୍ୟାନ'ର ନାନା ଫଳ ରସାଳ ।

କୃଶୋଦରୀ ଋଷି- କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ[୯] !
ତୀରବାସୀଙ୍କର ରାଗିଣୀ ମଧୁର
ଶୁଣିଥିବ ଚମ୍ପୂ ଲଳିତ ଗାନ ।

ଆଲିଙ୍ଗନ ଆଶେ ତବ ପଥପାଶେ
ଚିଲିକା ଆବେଗେ ଥିବ ଅନାଇଁ,
ମୁକ୍ତନୀଳକେଶୀ ଶ୍ୟାମଶୋଭାରାଶି-
ଗିରି-ଶିରୀ ସ୍ଫୀତ ବକ୍ଷ ମେଲାଇ ।

ଚଞ୍ଚଳ ହିଲ୍ଲୋଳେ ଚାରୁ ଗଣ୍ଡସ୍ଥଳେ
ଚୁମ୍ବିଥିବ ଯେବେ ଗାଢ଼େ ସମୀର,
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।

ପୁଳିନ କାନନେ ସ୍ନିଗ୍ଧ ସନସନେ
ଖେଳି ଯାଇଥିବ ପ୍ରେମ-ଲହରୀ,
ହଲିଯାଇଥିବ କେତେ କେତେ ନାବ
ଦେଖୁଥିବ ଖଣ୍ଡଦୂରେ ସୋଲରି ।

---

୯- ପବନ/ବିଶୁଦ୍ଧକାରକ

ମାଛରଙ୍କା ହଂସ ଗଣ୍ଡାଳି ସାରସ
ନାନା ଜାତି ଖଗ ଖଚିତ ମାଳି,
ଚିଲିକା ବକ୍ଷରେ ଦୋଳିଥିବ ଯଥା
ନୀଳମେଘେ ଧାଡ଼ି ଧାଡ଼ି ବକାଳି[୧୦] ।

ଫେଡ଼ି ମୀନ ନେତ୍ର ଓଲଟାଇ ଗାତ୍ର
ଚାହିଁଲାବେଳକୁ ଚିଲିକା ପୁଣ,
ଶୈଳ ପ୍ରତିଘାତେ ଶରମେ ତୁରିତେ
ଚାଲିଲା ବଢ଼ାଇ ଗତି ଦ୍ୱିଗୁଣ ।

ଆସିଥିବ ଉଡ଼ି ଭ୍ରମେ ପଥ ଛୁଡ଼ି
ସିନ୍ଧୁ ସଇକତେ ଶ୍ରୀକ୍ଷେତ୍ରଧାମ,
ପୁଣ୍ୟ ନୀଳାଚଳେ ମହୋଦଧି ଜଳେ
ସ୍ନାନେ ହୋଇଥିବ ଶୁଚି ଆରାମ ।

ସଞ୍ଚରି ସ୍ୱଚ୍ଛନ୍ଦେ ଭୃଙ୍ଗ[୧୧] ବାଲିକୁଦେ
ତାଳ ଲଙ୍କାଆମ୍ବ ଛାୟା ପନ୍ତାରେ
ନୀଳାଚଳପତି ପୟରେ ପ୍ରଣତି
କରିଥିବ ପଶି ଦକ୍ଷିଣ ଦ୍ୱାରେ ।

ଶ୍ରୀପଦ ତୁଳସୀ ଶିରରେ ପରଶି
ଲଭିଥିବ ମହାମୋଦ ଅନ୍ତରେ,
ନୀଳଚକ୍ର ଚୂଳେ ପ୍ରେମ ଭକ୍ତିଭୋଳେ
ଦେଇଥିବ ନେତ ଉଡ଼ାଇ ଥରେ ।

ପୁଣ୍ୟ ଗନ୍ଧବହ, କର ଅନୁଗ୍ରହ
କହ ପ୍ରିୟ ପୁରୀ ସୁସମାଚାର,
କନ୍ଦର ନିବାସୀ ପ୍ରଭୁ ବ୍ରହ୍ମରାଶି
କରୁଛନ୍ତି ଏବେ କେଉଁ ବିଚାର ?

ଗମ୍ଭୀରାରୁ କିବା ଶ୍ରୀମୁଖ ଆଦେଶ
ପଠାଇଅଛନ୍ତି ଦେବ ମୋ ପାଇଁ
କହ ବେଗେ ବାୟୁ, କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ?

---

୧୦- ବକ ସମୂହ; ୧୧- ଭୃଙ୍ଗରାଜ ଗଛ;

ନୀଳାଚଳବାସୀ ମୋତେ କି ଆଶ୍ୱାସି
କହିଛନ୍ତି କିଛି ଶୁଭ ବାରତା,
ସାଧାରଣ ସନ୍ଥ ସେବକ ମହନ୍ତ
ପଚାରନ୍ତି କି କେବେ ସ୍ୱରାଜ୍ୟ କଥା ?

ସାରି ଦରଶନ କ୍ଷେତ୍ର ପ୍ରଦକ୍ଷିଣ
କରିଥିବ ପୁଣି ଉତ୍ତରଗତି
ଅଟକାଇଥିବେ ପଥରେ ଟିକିଏ
ସତ୍ୟବାଦୀ କୁଞ୍ଜେ ତରୁବ୍ରତତୀ ।

ସୁମଧୁର ତାନେ ତବ ଆବାହନେ
ଗାଇଥିବ ପିକ ସ୍ୱାଗତ ଗୀତି,
ବକୁଳ ତମାଳ ଦେଇଥିବେ ତାଳ
ପୂରି ଉଠିଥିବ ପରମ ପ୍ରୀତି ।

ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ-
ରନ୍ଧ୍ରେ ରଚିଥିବ ଅସ୍ଫୁଟ ସ୍ୱନ,
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନିଙ୍କ ମନ ।

ହସି ଉଠିଥିବେ ଯୁଗଳ ମୂରତି
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ ଶିରେ ଆହା କି ରୁଚିରେ
ହଲିଥିବ ବାଙ୍କ ମୟୂରଚୂଳ ।

ବଉଳ ସେବତୀ ମରୁଆ ମାଳତୀ
ଚମ୍ପା ନାଗେଶ୍ୱର ଜାଇ ଦଅଣା,
ଚହଟାଇ ବାସ ତବ ଚଉପାଶ
କରିଥିବେ ଗନ୍ଧବ୍ୟୂହ ରଚନା ।

ବରଜ ବିହାରୀ ଗୋପୀ ମନୋହାରୀ
ଗୁପତେ କରନ୍ତି ଯହିଁ ବିହାର,
କି ଉପମା ତାରେ ସେହି ସୁଷମାରେ
ସେହି ସ୍ଥାନ ପଟାନ୍ତର ତାହାର ।

ବସନ୍ତ ମାଧୁରୀ କୁଞ୍ଜେ କୁଞ୍ଜେ ପୂରି
ପଡୁଥିବ ଯହିଁ ଉଛୁଳି ସତେ,

ଦେବଦତ୍ତ ଧାମ ମୋ ପ୍ରିୟ ଆଶ୍ରମ
ପଡ଼ିଛି କି ତବ ନୟନ ପଥେ ?
ମୋ ସଖା ସୋଦର ପ୍ରିୟ ପରିକର
ଅନ୍ତେବାସୀ ବନ୍ଧୁ ପଡ଼ୋଶୀଗଣ
ଛନ୍ତି ତ କୁଶଳେ ବିରହ ବିକଳେ
ବିବଶ ବିଷଣ୍ଣ ନୁହେଁ ବଦନ ?
ସତ୍ୟବାଦୀ କୁଞ୍ଜ ଛୁରୀଅନା ପୁଞ୍ଜ
ଜାଣିଥିଲେ ଏଥି ତବ ସଞ୍ଚାର,
ଅବଶ୍ୟ ମୋ ପାଇଁ ଥିବେ ପଠିଆଇ
ମୃଦୁ ମଧୁମୟ ଗନ୍ଧ ସମ୍ଭାର ।
ଗନ୍ଧଭାରେ ଭରା ଆସିଥିବ ପରା
ଧୀରେ ଧୀରେ ସିଧା ଉତ୍ତର ଦିକେ,
ଲଙ୍ଘି ବିଲ ଗ୍ରାମ କଲ କି ବିଶ୍ରାମ
ଲିଙ୍ଗରାଜ ଦେବ ଦେଉଳ ଶିଖେ ।
ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ କରେ ଗରାସ,
ବୈଭବ କଙ୍କାଳ ବିଲୋକି ଅନିଳ
ପାଇଥିବ ପ୍ରାଣେ ଗଭୀର ତ୍ରାସ ।
କେତେ ଚମତ୍କାର ମନୋଜ୍ଞ ମନ୍ଦିର
ମିଶିଛି ମାଟିରେ ପଡ଼ିଛି ପଦା[୧୨];
ଖଣ୍ଡ ଖଣ୍ଡ ଶିଳା ଖସି କାହା ଦେହୁଁ
ଉଭା ହୋଇଅଛି ପଥରଗଦା ।
ଶିଳ୍ପ ସିଦ୍ଧି ସୀମା ପାଷାଣ ପ୍ରତିମା
ଭାଙ୍ଗିଅଛି ମୁଖ, ତୁଟିଛି କର,
ପଡ଼ିଅଛି ବାଟେ କିବା ବଣ ପାଟେ
ହୋଇଅଛି କାହିଁ ତୁଠ ପଥର ।
ହଳ ମୁନେ ଖେତେ ବାହାରନ୍ତି କେତେ
ଖୋଦିତ ଅଖଣ୍ଡ ଅପୂର୍ବ ମୂର୍ତ୍ତି,

---

୧୨- ପଡିଆ ଭୂମି

ତୁଟି ନାହିଁ ତିଳେ ଲାବଣ୍ୟ ସୁଷମା
ପ୍ରକାଶେ ସର୍ବାଙ୍ଗେ ଜୀବନ୍ତ ସ୍ଫୂର୍ତ୍ତି ।
ଲାଗେ ଦକ୍ଷ ଶିଳ୍ପୀ ମନେ କି ବିକଳ୍ପି
ସଦ୍ୟ ଗଢ଼ି ରଖିଗଲା ଗୋପନେ,
କି ଅବା ମେନକା ଚାଲିଗଲା ଏକା
ଶିଶୁ ଶକୁନ୍ତଳା ଫିଙ୍ଗି ବିଜନେ ।

ନୃପତି ନବର- ପତନ ପ୍ରାଚୀର
ସଞ୍ଚାର ଦେଖାଏ ମୃତ୍ତିକା ସ୍ତୂପ,
ଲତା ଗୁଳ୍ମରାଶି ଗଳାଣି ଗରାସି
କେତେ ସୁଗଠିତ ତଡ଼ାଗ କୂପ ।
ଶକ୍ତି ଛାଡ଼ି ବ୍ୟଙ୍ଗ କେତେ ଶିବଲିଙ୍ଗ
ପଡ଼ିଛନ୍ତି କାହିଁ ତା ପରିଚୟ ?
ରହିଛି କେବଳ ଐଶ୍ୱର୍ଯ୍ୟର ଛାୟା
କି ବିଭବ ଆହା କି ବିପର୍ଯ୍ୟୟ !

ବିଧ୍ୱସ୍ତ ଐଶ୍ୱର୍ଯ୍ୟ ମଧ୍ୟେ ଧରି ଧୈର୍ଯ୍ୟ
ଉଭା ଲିଙ୍ଗରାଜ ତୁଙ୍ଗ ମନ୍ଦିର,
ମହା ଶମଶାନେ ଯଥା ବୀରାସନେ[୧୩]
ଯୋଗାରୂଢ଼ କଳ୍ପ[୧୪] ଯୋଗୀ ଶରୀର ।
ଶୈବାଳଆବୃତ ବିବର୍ଣ୍ଣ ବିକୃତ
ଦିଶଇ ବିରାଟ ଉନ୍ନତ କାୟା,
ଗମ୍ଭୀର ଉଦାସେ ଚାହେଁ ଚଉପାଶେ
ତୁଟାଇଛି କି ସେ ଏ ଭବମାୟା ?

ସେ ଗରୁ ଉଦାର ପୁରାଣ ସ୍ଥବିର
ସଦାଶିବ କଳ୍ପ ଶିବମନ୍ଦିର,
ବିପୁଳ ଆକୃତି ବିଲୋକି ପ୍ରଣତି
କରିଥିବ ପୂଜା ପାଦେ ସମୀର ।
ବେଶୀ ବେଳ ତହିଁ ନ ଥିବ ତ ରହି
କିଏ ସେ ରହିବ ହୃଦୟ ବହି ?

---

୧୩- ଡାହାଣ ଓ ବାଁ ପାଦକୁ ଯଥାକ୍ରମେ ବାଁ ଓ ଡାହାଣ ଜଙ୍ଘ ଉପରେ ରଖି ବସିବା / ପଦ୍ମାସନ; ୧୪- ଭଳି / ପ୍ରାୟ ସମାନ;

ସେ ବିଷାଦମୟ ଭଗ୍ନ ଦୃଶ୍ୟଚୟ
ଦେଖି କାହା ଛାତି ପାରିବ ସହି !

ଶମ୍ଭୁ ସୁକଲ୍ୟାଣ ଘେନି ସମୀରଣ
ବହିଥିବ ପୁଣି ଗତି ଉତ୍ତରେ,
ଦି'ପହଣ୍ଡ ଯାଇ- ଥିବ ବା ନ ଥିବ
ଭେଟିଥିବ ଖଣ୍ଡଗିରି ପଥରେ ।

ଦେଖି ନାହିଁ କେତେ ଦିନୁଁ ଖଣ୍ଡଗିରି
ଇତିହାସ ଯାର ଅଙ୍କେ ଅଙ୍କିତ,
ଅମର ଅକ୍ଷରେ ନୀରବ-ଗମ୍ଭୀରେ
ଗାଏ ଯେ ଉତ୍କଳ-ଗୌରବ ଗୀତ ।

ପଡ଼େ ଏବେ ମନେ ପ୍ରଥମ ଯୌବନେ
ସୁଷମା ପିପାସା ଭାବ ଉନ୍ମାଦେ,
ଖଣ୍ଡଗିରି ଶିରୀ ଦେଖି ନେତ୍ର ଭରି
ଚିନ୍ତା ନିମଗନେ ବସିଲି ପାଦେ ।

କଳ୍ପନାର ପୋତେ କାଳ ପ୍ରତିସ୍ରୋତେ
ଭାସି ଦେଖିଲି ମୁଁ ଉଜ୍ଜ୍ୱଳ ଛବି,
ଇତିହାସ ଯାର ନ କରେ ପ୍ରଚାର
ଚିନ୍ତି ନାହାନ୍ତି ଯା କାବ୍ୟରେ କବି ।

କାଳର ପ୍ରଭାବେ ଜନ ସ୍ମୃତିପଟୁ
ରୂପରେଖ ଯାର ଲିଭିଛି ଆଜି,
କଳିଙ୍ଗର ସେହି ଅତୀତ ବିଭବ
ବୀର ଖାରବେଳ କୀରତିରାଜି ।

ବାଜେ ବୀରବାଜା କାହିଁ ରଣସଜ୍ଜା
କାହିଁ ବା ଲାଗିଛି ଗୁପ୍ତ ମନ୍ତ୍ରଣା,
ଦୂରଦେଶୁଁ ଦୂତ ବିଜୟ-ବାରତା
ଘେନିଆସି କରେ ଛାମୁରେ ଜଣା ।

ଶ୍ରମଣ ସନ୍ନ୍ୟାସୀ ଦଳେ ଦଳେ ବସି
ଚାଲିଅଛି କାହିଁ ତତ୍ତ୍ୱବିଚାର,
ଗମ୍ଭୀର ନିର୍ଘୋଷେ ଲୋକ ଉପଦେଶେ
କାହିଁ ବା ଅହିଂସା ଧର୍ମପ୍ରଚାର ।

ଖଣ୍ଡଗିରି ଅଙ୍ଗେ ଶିଳ୍ପୀ ଶତ ଶତ
ଖୋଳନ୍ତି ନିଭୃତ ଗୁମ୍ଫା ନିରତେ,
କାହିଁ ଗୁପ୍ତଚର ରାଜ୍ୟ ସମାଚାର
ଏକାନ୍ତେ ଜଣାଏ ନୃପପୁରତେ ।

କଳ୍ପନାର ନେତ୍ରେ ଏହିପରି କେତେ
ଦିଶେ ଚିତ୍ର ଖଣ୍ଡଗିରି ଶରୀରେ,
ବିନଷ୍ଟ ସର୍ବସ୍ୱ ବୃଦ୍ଧ ଖଣ୍ଡଗିରି
ବିବିକ୍ତ ପରାଏ ଉଭା ଗମ୍ଭୀରେ ।

ମହାକାଳ ନୀରେ ବୁଦ୍‌ବୁଦ ପରାଏ
ଯାଇଅଛି ମିଶି କଳିଙ୍ଗ-ଭୂତି[୧୫],
କଳିଙ୍ଗ-ସନ୍ତାନ ଭୁଲିଛନ୍ତି ଏବେ
କଳିଙ୍ଗର ନାମ ଗୌରବ ସ୍ମୃତି ।

ତଥାପି ସେ ଗାଥା ରଖିଅଛି ଗିରି
କାଳ ପରାଭବେ ଦେଖାଇ ହିଆ,
ଅତି ନାରଖାର ରାଣୀହଂସପୁର
ସାକ୍ଷ୍ୟ ଦେବାଲାଗି ଅଦ୍ୟାପି ଠିଆ ।

ଚୂଲୁଁ ମୂଳଯାଏ ଶୋଭେ ଶିଳାକାୟେ
ପ୍ରାସାଦ ପ୍ରାଙ୍ଗଣ ଗୁମ୍ଫା ଦେଉଳ,
ତରୁଲତା ଦଳ ରୋଧିଛନ୍ତି ପଥ
ନିବସନ୍ତି ଯହିଁ ଶ୍ୱାପଦକୁଳ ।

ପଦପ୍ରାନ୍ତ ବାସୀ ସାଧୁ ଧର୍ମବେଶୀ
କହନ୍ତି ଅଦ୍ଭୁତ ବହୁ କାହାଣୀ
ଦେଖାନ୍ତି ଶ୍ରୋତାଙ୍କୁ ପ୍ରତ୍ୟକ୍ଷ ପ୍ରମାଣ
କେତେ ଜୀର୍ଣ୍ଣସ୍ମୃତି କଠାଉ ଆଣି ।

ତାପସ ସାଧକ ଅଦ୍ୟାପି ଅନେକ
ନିବିଡ଼ ଅନ୍ଧାର ଗୁହା ଗରଭେ,
ଲୁଚି ରହିଛନ୍ତି ଗଭୀର ନିଶୀଥେ
ଶୁଣାଯାଏ ତାଙ୍କ ସଙ୍ଗୀତ ନଭେ ।

---

୧୫- କଳିଙ୍ଗର ମହିମା / କଳିଙ୍ଗର ଐଶ୍ୱର୍ଯ୍ୟ;

ଶୁଣିଛି ମୁଁ ନିଜେ  କହନ୍ତି ସେ ତେଜେ
 ପଥିକ ବଦନେ ଦେଖି ସଂଶୟ,
ନୁହେଁ ତା ବିଚିତ୍ର  ବାହ୍ୟ ବିଶ୍ୱେ ମାତ୍ର
 ପ୍ରତିଫଳେ ନର ନିଜ ହୃଦୟ ।

ଅତିଥି ଆଦରେ  ଅତି ଆଗ୍ରହରେ
 କରିଥିବ ଖଣ୍ଡଗିରି ବନ୍ଦନ,
ବନ ଉପତ୍ୟକା  ଗୁହା ଗର୍ଭେ ଏକା
 ସ୍ୱଚ୍ଛନ୍ଦେ ସଞ୍ଚରିଥିବ ପବନ ।

ତବ ଆଗମନ  ସନସନ ସ୍ୱନ
 ଶୁଣି ଗିରିଗୁମ୍ଫା ଦରି-କନ୍ଦର,
ଗାଇଥିବ ଗୀତ  ଗୌରବ ସଙ୍ଗୀତ
 ତୁମ ସ୍ୱର ସଙ୍ଗେ ମିଳାଇ ସ୍ୱର ।

ପୂର୍ବ ସୁଖସ୍ମୃତି  ଦୁଃଖେ ମନେ ଆସେ
 ବଢ଼ାଏ ବିଷାଦ ଦିଗୁଣ ପ୍ରାଣେ,
ତଥାପି ଉଷତ  ବିଷାଦ ସଙ୍ଗୀତ
 ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।

କହ ସମୀରଣ  କଲ କି ଦର୍ଶନ
 ଶୁଦ୍ଧ ସାଧୁ ଆତ୍ମା ଗୁପ୍ତ ସଞ୍ଚାର,
ଖଣ୍ଡଗିରି ଚୂଳେ  ବହଇ ନିରୋଳେ
 ଯା ଅମର ସୁଧା ସଙ୍ଗୀତ ଧାର ।

ଏ ମୋ କାରା ଦ୍ୱାରେ  ଲାଗିଯାଅ ବାରେ
 ସେ ଦୂର ସଙ୍ଗୀତ ଶୁଭୁ ମୋ କାନେ,
କମ୍ପି ଉଠୁ ମୋର  ହୃଦ-ବୀଣା ତାର
 ମୋ ଅନ୍ତର ଧ୍ୱନି ମିଶୁ ସେ ତାନେ ।

କି ଦେଖିଲ ଆଉ  ହେ ବସନ୍ତ ବାୟୁ
 କହ ବେଗେ କର ନାହିଁ ଛଳନା,
ତୁମ୍ଭେ କି ନ ଜାଣ  ନିର୍ବାସିତ ପ୍ରାଣ
 ସ୍ୱଦେଶ ସନ୍ଦେଶେ ପାଏ ସାନ୍ତ୍ୱନା ।

ଖଣ୍ଡଗିରି ପରେ  ଉନ୍ମୁକ୍ତ ଅମ୍ବରେ
 କରିଥିବି ନବଗତି ରଚନା,

ବାଟରେ ଅଟକ କଲା କି କଟକ
ମହାନଦୀ ନୀଳ-ନୀର-ବସନା ।
ଉଦ୍‌ବେଗ ବାହାନା କରିଥିବ ସିନା
ଉପେକ୍ଷି ନ ଥିବ ତା ସମାଦର,
ଯେ ଯେତେ କର୍ମଠ କରେ କ୍ଷଣେ ମଠ
ପ୍ରେମ ପାଶୁଁ ହେବାବେଳେ ଅନ୍ତର ।

ଫୁଲିଉଠିଥିବ ମହାନଦୀ ବକ୍ଷ
କମ୍ପି ଉଠିଥିବ ଲହରୀହାର,
ପଠା ଖଡ଼ିପନ୍ତି[୧୬] ଥିବେ ମଥା ପୋତି
ମୃଦୁ ହାସେ ଦେଖି ଅଙ୍ଗ ବିକାର ।

ଦେଖିଥିବ ତହିଁ ବାରବାଟି ଦଶା
କି ବେଦନା ଥିବ ମରମେ ବାଧି,
ଉତ୍କଳର ବୀର- ବିହାର ପ୍ରାଙ୍ଗଣ
ଏବେ ସେ ଉତ୍କଳ-ଶୌର୍ଯ୍ୟ ସମାଧି ।

ଥିଲା ଦିନ ଯେବେ ନବତଳ ହର୍ମ୍ୟେ
ଯୁଦ୍ଧଯାତ୍ରୀ ରାଜା ମେଲାଣି କାଳେ,
ଆଣି ନଦୀ ନୀର ସିଞ୍ଚିଲା ସମୀର
ସ୍ୱେଦବିନ୍ଦୁସିକ୍ତ ମହିଷୀ ଭାଲେ ।

ସ୍ନେହ ସୁଧାବିନ୍ଦୁ ଯେବେ ମୁଖଇନ୍ଦୁ
ମଣ୍ଡିଲା ପ୍ରସରି ନେତ୍ର ଯୁଗଳେ,
ବିନ୍ଦୁ ସୁଶୀତଳେ ହରିଲା କୌଶଳେ
ନ ପକାଇ ମୁକ୍ତାଫଳକ ତଳେ ।

ଯେବେ ରଣଜିତି ପୁରେ ଗଜପତି
ବାହୁଡ଼ିଲେ ହେଲା ଜୟ ଘୋଷଣା
ଆଳିଗଣ ମିଳି ଘେନି ଅର୍ଘ୍ୟଥାଳୀ
କଲେ ବନ୍ଦାପନା ବୀର ଅଙ୍ଗନା ।

ବାଜିଲା ମହୁରୀ ଶଙ୍ଖ ଭେରି ତୁରି
ଉଡ଼ିଲା ଅମ୍ବରେ ଜୟ କେତନ;

୧୬- ଏକଜାତୀୟ ତୃଣର ଧାଡ଼ି / ନରମ ଓ ଧଳା ପଥର ସବୁ

ସେ ବିଜୟ ଘୋଷ ନେଲ ଦଶଦିଶ
କମ୍ପାଇଲ କେତେ ତୁମ୍ଭେ ପବନ ।
ବନ୍ଦାପନା ଦୀପ ନଚାଇଲ ପୁଣି
ଉଡ଼ାଇଲ ବାମା ମଥା ଓଢ଼ଣା,
ତବ ଧୃଷ୍ଟପଣେ ପୁଲକିତ ପ୍ରାଣେ
ଦେଲେ ବ୍ୟାଜଗାଳି[୧୭] ବରବରଣା ।

ବାରବାଟି ଅଙ୍ଗେ ସେ ସୌଭାଗ୍ୟ ରଙ୍ଗେ
କରିଥିଲ ଅଭିନୟ ପବନ,
ଆଜି ତ ଦେଖିଛ ସେହି ବାରବାଟି
ଦେଖିଲ ସତ୍ୟ କି ଅବା ସ୍ୱପନ !

ନ'ତଳ ପ୍ରାସାଦ ସେ ଶୌର୍ଯ୍ୟ ସମ୍ପଦ
ବିଜୟ ବାଜଣା ବିଜୟ ଧ୍ୱଜା,
ବୀର କବିତାର ଶୌର୍ଯ୍ୟ ସମାଦର
ଉତ୍କଳର ବୀର ବିକ୍ରମୀ ପ୍ରଜା;

ବାରବାଟି ଗଡ଼େ ନେତ୍ରପଥେ ପଡ଼େ
ଏବେ କି ସେ ପୂର୍ବ ଦୃଶ୍ୟପଟଳ,
ପ୍ରତିବିମ୍ବେ ଶୋଭେ ପ୍ରତିନାଦେ କମ୍ପେ
ଆଉ କି ସରିତ ହୃଦ-କମଳ ?

କରପୂର ଉଡ଼ି କନା ଥିଲେ ପଡ଼ି
କନା ରଖିଥାଏ କର୍ପୂର ସ୍ମୃତି;
କନା ଯାଇ ନାଶ ରହିଲେ ପାଉଁଶ
ଧରିବ ତା ଦେଖି କିଏ ସେ ଧୃତି ?

ଉଚ୍ଚ ମାଟିଗଦା ରୁକ୍ଷ ରିକ୍ତ ପଦା
ପ୍ରାଚୀନ ଜାତିର ଶକ୍ତି ଶ୍ମଶାନ,
ନିରେଖି ମଳୟ ସଦୟ ହୃଦୟ
ହୋଇ କରିଥିବ ଶୋକେ ସମ୍ମାନ ।

ସେ ମୃତ୍ତିକା ସ୍ତୂପ ଶିରେ ଶ୍ୟାମଶଷ୍ପ[୧୮]
ଚୁମ୍ବିଥିବ ଅଶ୍ରୁପୂର୍ଣ୍ଣ ନୟନେ,

---

୧୭- ଛଳ ଗାଳି; ୧୮- ସବୁଜ ରଙ୍ଗର ତୃଣ / ନୂଆ କଅଁଳ ଘାସ

କାଳଗ୍ରାସ ନାଶ ଉତ୍କଳ ପୌରୁଷ
କଢ଼ିଥିବ ତହିଁ ଧରା ଶୟନେ ।
ମହତ ନିଧନେ ସେ ମହତ ସ୍ଥାନେ
ପଡ଼ିଥିଲେ କ୍ଷୁଦ୍ର ଧୂଳିକଣିକା,
ଭକତି ଆଦର କରେ ଯେ ତାହାର
ସେ ଦିଏ ମହତ ହୃଦୟ ଶିକ୍ଷା ।

ତହୁଁ ମୁହୂର୍ତ୍ତକେ ଅନ୍ଧାରୀ ମୂଳକେ
ପଶିଥିବ ଚଉଦିଗେ ସଞ୍ଚରି,
ଦାବାନଳ ସହ ପରୁଷ[୧୯] ପ୍ରବାହ
ତାପୁଥିବ ବନ ଶଇଳ ଦରୀ ।

ଯେ ରାଇଜ ପ୍ରଜା ନିତି ବଳି ଭୋଜା
ଦେଇ ଅତି ଭୟେ କାଟନ୍ତି ଦିନ,
କଥା କହିବାର ନାହିଁ ଅଧିକାର
ନୁହେଁ ଧନପ୍ରାଣ ନିଜ ଅଧୀନ ।

ଯହିଁ ରାଜବଂଶେ କ୍ଷୀଣ ପୁଣ୍ୟବଶେ
ଦିଶେ ନାହିଁ କାହିଁ ଭାଗ୍ୟ ଲକ୍ଷଣ,
ତଥାପି ପ୍ରପଞ୍ଚ- ମଦେ[୨୦] ମତ୍ତ ସର୍ବେ
ନ ଦେଖନ୍ତି ଥରେ ଫେଡ଼ି ଈକ୍ଷଣ[୨୧] ।

ନିଦାଘେ ଶଇଳେ ଦାବାନଳ ଜଳେ
ପ୍ରଜାପୁରେ ଜଳେ ବରଷ ସାରା,
ଛାଡ଼ି ପଶୁ ବନ ଯାଏ ଆନ ସ୍ଥାନ
ପ୍ରଜା ବାପୁଡ଼ାର[୨୨] କାହିଁ ସେ ଚାରା ।

ପ୍ରସରେ ସ୍ୱଚ୍ଛନ୍ଦେ ଯହିଁ ଗିରିପଦେ
ନିରନ୍ତର ସ୍ୱଚ୍ଛ ନିର୍ଝର ଧାରା,
ଶୁଭ୍ରତୋୟା ନଦୀ ବହେ ନିରବଧି
ବନକଣ୍ଠେ ଯଥା ହୀରକହାର ।

ପିକ ଚକ୍ରବାକ ହଂସ କାରଣ୍ଡକ[୨୩]
ଶୁକ ସାରୀ ଯହିଁ ଗାଆନ୍ତି ନିତି

୧୯- କର୍କଶ/ଉଦ୍ଧତ; ୨୦- ସଂସାରର ପ୍ରମତ୍ତତା; ୨୧- ଆଖି/ଦୃଷ୍ଟି; ୨୨-ବିଚରାର/ନିରୂପାୟ ଲୋକର; ୨୩- କାରଣ୍ଡବ/ବାଲିହଂସ

ନାନା ଫଳ ଫୁଲ କାନନ ମଞ୍ଜୁଳ
ଜନମାଏ ପ୍ରାଣେ ପବିତ୍ର ପ୍ରୀତି ।
ଶୁଭ୍ର ଶତଦଳ ସରେ ଢଳଢଳ
ମଞ୍ଜୁ ଗୁଞ୍ଜେ ଅଳି ଅସ୍ଫୁଟ ସ୍ୱନେ,
ଯହିଁ କୃଷ୍ଣସାର କରନ୍ତି ବିହାର
ସ୍ୱଚ୍ଛନ୍ଦେ ତଟିନୀ ତୀର କାନନେ ।
ମାଳତୀ ମାଧବୀ ସର୍ବଦା ସାଧବୀ
ଦେବଦାରୁ ଶାଳ ଭୁଜ ଆଶ୍ରୟେ,
ସୁଗୃହିଣୀ ସମ ଦିଅନ୍ତି ଆରାମ
ସ୍ନିଗ୍ଧ ଛାୟାଦାନେ ପାନ୍ଥ ହୃଦୟେ ।
ଶସ୍ୟ ଆଭରଣେ ଯହିଁ ଅନୁକ୍ଷଣେ
ହସେ ସଦା ମହୀ ସ୍ନିଗ୍ଧ ଶ୍ୟାମଳା,
ମାନବ ମାଧୁରୀ ସରଳ ଚାତୁରୀ
ପ୍ରକୃତି ସହଜ ଛାଞ୍ଚରେ ଢଳା ।
ଶୁଭ ଶୋଭାମୟ କମଳା ଆଳୟ
ପ୍ରକୃତି ପ୍ରକାଶ ଅତି ବିଚିତ୍ର,
ଶାସକ ସ୍ୱଭାବ ବିନା ଯହିଁ ସର୍ବ
ସ୍ୱରଗ ସୁନ୍ଦର ଭାବେ ପବିତ୍ର ।
ବନୁ ବନାନ୍ତରେ କନ୍ଦରୁ କନ୍ଦରେ
ଅବାଧେ ବିହରିଥିବ ସେ ଦେଶେ,
କାହିଁ ଗୁଳଗୁଳି କାହିଁ ବା ଶୀତୁଳି
କାହିଁ ରହିଥିବ ହିଙ୍ଗୁଳା ବେଶେ ।
ପତ୍ର କୁଟା କାଠି ଧୂଳି ନାଲି ମାଟି
ଚକ୍ର ଆବର୍ତ୍ତନେ ଉଡ଼ାଇ ନଭେ,
ଉତ୍ତର ମୁଖରେ ଆପଣା ସୁଖରେ
ଚାହିଁଥିବ କାହିଁ କ୍ରୀଡ଼ାଶରଭେ ।
ଅନ୍ଧାରୀ ମୁଲକ ପ୍ରଜା ସୁଖଦୁଃଖ
କି ଦେଖି ଆସିଛ କହ ପବନ,

ସହି ନାନା ଦଣ୍ଡ ଦିଅନ୍ତି କି ତଣ୍ଡ[୨୪]
ଆସିଅଛି କିବା ନବ ଚେତନା ।
ସହି ଖରା ବର୍ଷା ଦୁଃଖେ ପଡ଼ି ଚଷା
ଆପଣା କ୍ଷେତରେ କରେ ଯେ ଚାଷ
ନୋହି ଭୟଭୀତ ଘେନି ଦାରା ସୁତ
ଖାଏ କି ସ୍ୱଚ୍ଛନ୍ଦେ ଅନ୍ନ ଗରାସ ।

କେହି ରାଜା ଜଣେ ବିଚାରେ କି କ୍ଷଣେ,
"ପରଜାଏ ମୋର ପୁଅ ସମାନ,
ପରଜାଙ୍କ ହିତ ମୋ ଜୀବନ-ବ୍ରତ
ପରଜା ସୁଖେ ମୋ ସୁଖ ସମ୍ମାନ ।
ବିନା ପ୍ରଜାଶକ୍ତି ରାଜାର କି ଗତି
ରାଜା ପ୍ରଜା ନୁହେ ଶ୍ୟେନ କପୋତ,
ପ୍ରଜା-ଜଳ-ବିନ୍ଦୁ ମିଳି ରାଜ୍ୟ-ସିନ୍ଧୁ
ରାଜା ସେ ସଲିଳେ କେବଳ ସ୍ରୋତ ।"

ସାନ୍ତାଳ ସୁନ୍ଦରୀ ସଙ୍ଗୀତ ଲହରୀ
ଖେଳି ଯାଇଥିବ ପ୍ରବାହେ ତବ,
ବନବାସୀ ପ୍ରିୟ ସ୍ୱଚ୍ଛ ମଧୁମୟ
ଆଘ୍ରାଣ କଲ କି ପୁଷ୍ପ-ଆସବ[୨୫] ?

କହ ଗନ୍ଧବହ, ଅଛି କି ଉତ୍ସାହ
ଗିରି ବନବାସୀ ସକଳ ପ୍ରାଣେ,
ରୁକ୍ଷ ରମ୍ୟ ମୂର୍ତ୍ତି ଉନ୍ମୁକ୍ତ ପ୍ରକୃତି
ସ୍ୱାଧୀନତା ମନ୍ତ୍ର କହେ କି କାନେ ?

ବୀରତ୍ୱ ସାହସ ସ୍ୱାଧୀନତା ବାସ
ଗିରିଶିଖେ କରିଥିବ ବିହାର,
ଦେଖିଛ କି କାହିଁ ରଖିଛି ଲୁଚାଇ
ସ୍ୱାଧୀନତା ଶିଖା ଦରୀ ଅନ୍ଧାର ।

ଅନ୍ଧାରୀ ମୁଲକେ ପଲକେ ପଲକେ
ମେଲିଥିବ ତବ ତରଙ୍ଗମାଳା,

---

୨୪- ଜରିମାନା/ଅର୍ଥଦଣ୍ଡ; ୨୫- ମହୁଲ ଫୁଲ/ଫୁଲର ମଧୁ

ସେ ତରଙ୍ଗେ ଦୋଳି କୁସୁମ ଅଞ୍ଜଳି
ଢାଳିଥିବ ସ୍ନେହେ କାନନବାଳା ।
ଭ୍ରମି ବହୁ ଦୂର ବିଷମ ବନ୍ଧୁର
ଫୁଟି ପଡ଼ିଥିବ ପଥ ଶରମେ,
ଦାବାନଳ ତାପ ଅସହ୍ୟ ଅମାପ
ଭେଦିଥିବ ଯେବେ ପୁଣି ମରମେ ।
ଆତୁର ଅଧୀରେ ମହାନଦୀ ନୀରେ
ପଶିଥିବ ଯାଇ ସନ୍ତାପ ନାଶେ,
ଗିରି-ନିତମ୍ବିନୀ ତରଙ୍ଗ-ହାସିନୀ
ଅଙ୍ଗ ଫୁଲିଥିବ ନବ ଉଲ୍ଲାସେ ।
କରି ଗତି ବକ୍ର ରଚି ଶତଚକ୍ର
କାହିଁ କେତେ ଗଣ୍ଡେ ଗିରିସଙ୍କଟେ,
ପଶ୍ଚିମ ମୁଖରେ ଯାଇ ଖଣ୍ଡଦୂରେ
ମିଳିଥିବ 'ହୀରାଖଣ୍ଡ' ନିକଟେ ।
ମହାନଦୀ ବକ୍ଷେ ଦ୍ୱୀପ ରମଣୀୟ
ସମ୍ବଲପୁରର ସୁଷମା ଖଣି,
ମଣ୍ଡିଥିଲା ଦିନେ ହୀରକ ଯାହାର
ପୁରାତନ ରୋମରାଜ୍ୟେ ବିପଣୀ ।
ସରିଛି ସମ୍ପଦ ଏବେ ହୀରାକୁଦ
ଉପେକ୍ଷିତ ଧନ ହୀନ ସମ୍ମାନ,
ଧୀବର-କୁମାରୀ ଗଣଇ ଲହରୀ
ଗାଏ କେବେ ପଦେ ବିସ୍ମୃତ ଗାନ ।
ନିଭୃତ ବିଜନ ଶ୍ୟାମ ଶୋଭାବନ
ପ୍ରକୃତି ସହଜ ଶୋଭା ପଟଳ,
ସେ କି ମହାନଦୀ- ପୁଣ୍ୟ-ତପ-ବେଦୀ
ଥିବ ବା ନିମିଷେ ତହିଁ ନିଶ୍ଚଳ ।
ଶୀତଳ ଶୀକର ଘେନି ହେ ସମୀର
କଲ କି ସମ୍ବଲପୁରେ ପ୍ରବେଶ ?
ନିଦାଘ-ବ୍ୟାକୁଳ ପୁରବାସୀ-କୁଳ
ହରିଥିବେ ତବ ପରଶେ କ୍ଲେଶ ।

ଅତି ପ୍ରିୟ ମୋର ସେ ସମ୍ବଲପୁର
ଅଛନ୍ତି ତ ତହିଁ ଭଲେ ସକଳ,
କଳା ଭାଷା ରକ୍ଷା ଧରି ସେ ଯେ କକ୍ଷା
ଗାଇବ ସେ ଚିର ଯଶ ଉତ୍କଳ ।

ଚମ୍ପକବରଣୀ ଚାରୁ ସୁହାସିନୀ
ଯହିଁ ଗୁଣବତୀ ପୁରଅଙ୍ଗନା,
ସ୍ୱଦେଶୀ ବସନେ ସ୍ୱଦେଶୀ ଭୂଷଣେ
ଦିଶେ ସଦା ତୋରା ପ୍ରୀତି-ପ୍ରସନ୍ନା ।

ମହାନଦୀ ନୀର ଶୀତଳ ସମୀର
ସେବନ୍ତି ସ୍ୱଚ୍ଛନ୍ଦେ ତନୟେ ଯାର,
ଅଛି ମୋ ବିଶ୍ୱାସ ହେବ ସେ ଅବଶ୍ୟ
ସ୍ୱାଧୀନତା ରଣେ ଦୃଢ଼ ପ୍ରାକାର ।

ସମ୍ବଲପୁରର ଶୁଭ ସମାଚାର
ଶୁଣାଅ ସଦୟେ ସମୀର ବାରେ,
ଉତ୍କଳ-ଜାହ୍ନବୀ ଚାରୁ ମହାନଦୀ
ପୁଣ୍ୟ ଅମ୍ବୁକଣା ଆଣ ମୋ ଦ୍ୱାରେ ।

ତାପିତ ମୋ ହୃଦ ଦିଅ ଶାନ୍ତି ମୁଦ
ଆତ୍ମୀୟ ସ୍ୱଜନ ବାରତା କହି,
ପରହିତେ ବହ ପୁଣ୍ୟ ଗନ୍ଧବହ
ତେଣୁ ପଥ ଚାହିଁଅଛି ମୁଁ ରହି ।

ମୋ ନେତ୍ର ଆଗରେ ବିହରି ବାହାରେ
ଦୋଳାଉଛ ତରୁ ଶାଖା ପଲ୍ଲବ,
କେଉଁ ଅପରାଧେ ଦୋଷୀ ତବ ପାଦେ
ନ କର ମୋଠାରେ କରୁଣା ଲବ ।

ବନ୍ଦୀ ବୋଲି ମତେ କିବା ଘୃଣା-ନେତ୍ରେ
ଦେଖ କି ହେ ତେଣୁ ପାଶେ ନ ଆସ,
ଭେଦଜ୍ଞାନ ସବୁ ଲାଗେ ଅସମ୍ଭବ
ତୁମ୍ଭେ ଚରାଚର ବିଶ୍ୱ ନିଶ୍ୱାସ ।

ସମାଜ ନିଷ୍ଠୁର କରେ ଯାକୁ ଦୂର
ସେ ନୁହେଁ ପ୍ରକୃତି ପ୍ରେମୁ ବାହାର,

ଗଗନେ ପବନେ ଚନ୍ଦ୍ରମା ତପନେ
ଜଳେ ଫଳେ ଫୁଲେ ତା ଅଧିକାର ।
ନରପ୍ରତି ନର କରେ ଅବିଚାର
ପ୍ରକୃତି ସକଳେ ଦେଖେ ସମାନ,
ହେ ମଳୟାନିଳ ସୁଗନ୍ଧ ଶୀତଳ
ପ୍ରବାହେ ପରଶ ମୋ ଦଗ୍ଧ ପ୍ରାଣ ।
କରୁଛି କୀର୍ତ୍ତନ ସଦା ତବ ଗୁଣ
ନିଖିଳ ଜଗତ ଜୀବ-ଜୀବନ,
ଅବହେଳେ ବେଳେ ଏଥି କାରାବିଳେ
ଛୁଇଁଯାଅ ମତେ ମୁକ୍ତ ପବନ ।
ଆସିଅଛ ଭ୍ରମି କେତେ ପୁଣ୍ୟଧାମେ
ଲଗାଇ ଦିଅ ମୋ ଶିରେ ପ୍ରସାଦ,
ସେ ପୁଣ୍ୟ ପରଶେ ଘୁଞ୍ଚୁ ଅବସାଦ
ଅପସରୁ ହୃଦୁଁ ମୋହ ପ୍ରମାଦ ।

## ୯ । ବନ୍ଦୀର ସନ୍ଧ୍ୟା-ଭାବନା

ଗୋଧୂଳି ଗଗନେ ଏବେ ପ୍ରଦୋଷ ପ୍ରଥମ ତାରା
ଉଇଁ ପ୍ରାଚୀଦିଗ ଭାଲେ ଢାଳେ କ୍ଷୀଣ ଜ୍ୟୋତିଧାରା ।
ଅନାଏ ସେ ମିଟି ମିଟି କେତେ ଦୂରୁଁ କାରାଦ୍ୱାରେ
ଲାଗେ କାନ୍ଥ ଆର ପାଖେ ଲୁଚି ଯଥା ଉଙ୍କିମାରେ ।
ତାର ସଙ୍ଗେ ମନେ ମୋର ଫୁଟେ କେତେ ଦୃଶ୍ୟରାଶି
ଫେନିଳ ତରଙ୍ଗ କେତେ ନୀଳାର୍ଣ୍ଣବେ ଉଠେ ଭାସି ।
ଏକ ପରେ ଆନ ଆସେ, ଲାଗିଛି ଅନନ୍ତ ଖେଳା
ଅବିରତ ପିଟେ ମଥା ସହେ ତାରକିତ ବେଳା ।
ସୁନୀଳ ବିତାନ ଦିଶେ ଚକ୍ରବାଳ ମୂଳଯାଏ
ଶ୍ୟାମଳ ପାଦପପନ୍ତି ତୀରେ ଦୂରେ ଶୋଭାପାଏ ।

ପଡ଼ଉରେ¹ ମାଛ ଘେନି ନୋଳିଆ ଲେଉଟି ଆସେ
କୂଳେ ତା ପିଲାଏ ଚାହିଁ ଗୀତ ଗା'ନ୍ତି ଅଟ୍ଟହାସେ ।
ପାଣିକି ଡିଅଁନ୍ତି କେତେ ଭାଙ୍ଗିବେ ଲହଡ଼ି ସାତ
ପାଛୋଟି ଆଣିବେ କୂଳେ ଧରି ଯେଝା ବାପ ହାତ ।
ଧାଡ଼ି ଧାଡ଼ି କେତେ ପକ୍ଷୀ ସମୁଦ୍ର ଉପର ନଭେ
ନିଜ ନିଜ ବସାମୁଖେ ଉଡ଼ିଯାନ୍ତି କଳରବେ ।
ଦଳ ଛାଡ଼ି ଏ ପକ୍ଷୀଟି ଥିଲା ପରା ପଥ ଢୁଡ଼ି
ବସା ଖୋଜି କେଡ଼େ ବେଗେ ଏକାକି ଯାଉଛି ଉଡ଼ି ।
ହେବ ପରା ଏହା ବସା କିନ୍ନରୀ ପାହାଡ଼ ଚୂଳେ
ବିତାଇବ ତହିଁ ରାତି ସ୍ୱଚ୍ଛନ୍ଦେ ଶାବକ ତୁଲେ ।
ଛାଡ଼ି ଗୁପ୍ତ ବୃନ୍ଦାବନ² ବଉଳ ତମାଳ ଡାଳ
ଯିବେଣି ଚଢ଼େଇ ପାରି ଉଡ଼ି ପକ୍ଷୀ ମାଳ ମାଳ ।
ଗୁପ୍ତ ବୃନ୍ଦାବନ କୁଞ୍ଜେ ଥିବ ନାହିଁ କୋହାହଳ
ସ୍ନିଗ୍ଧ ମରମରେ ଝଡ଼ି ପଡୁଥିବ ଫୁଲଦଳ ।
କିନ୍ନରୀ ଶଇଳ ଶିରେ ଦିଶେ ଦାବାନଳ 'ତେଜ
ଆଣଇ ସେ ମନେ ମୋର ବରୁଣୀ ପାହାଡ଼ ହେଜ ।
ବରୁଣୀ ଜଙ୍ଗଲେ ଏବେ ଲାଗିବଣି ଦାବାନଳ
ଜଳୁଥିବ ଦାଉ ଦାଉ ଶୁଷ୍କ ତରୁ ଶାଖାଦଳ ।
ଶୁଖିଲା ବାଉଁଶ ଗଣ୍ଠି ଫୁଟୁଥିବ ଘନ ଘନ
ହେଙ୍ଗୁଳା ପବନ ବେଗେ ବହୁଥିବ ସନ ସନ ।
ସିନ୍ଦୂରବରଣ ଶିଖା ରକ୍ତ ଜିଭ ଲହ ଲହ
ପରୁଷ ପବନ ଘାତେ ଉଠୁଥିବ ଶହ ଶହ ।
ଲକ୍ଷ ଲକ୍ଷ ଅଗ୍ନିକଣା ନଭେ ଯାଉଥିବ ଉଡ଼ି
କେତେ ଗଛୁ ଶୁଷ୍କ ଶାଖା ଜଳି ପଡୁଥିବ ଛିଡ଼ି ।
ନିଦାରୁଣ ଦିବାଲୋକେ ତୋଫା ଦିଶୁଥିବ ବଣ
ଚକମକେ ଝଲୁଥିବ ଦେବୀପାଦ ପ୍ରସ୍ରବଣ ।
ଶୁଖିଲା ପତର ଘାସ ଧାସେ ଜଳୁଥିବ ତଳେ
କାତରେ ପଳାଉଥିବେ ମୃଗ ଶଶା ଦଳେ ଦଳେ;

୧- ମାଛ ଧରିବାପାଇଁ ବ୍ୟବହୃତ ଛୋଟ ଡଙ୍ଗାରେ; ୨- ସାକ୍ଷିଗୋପାଳ

ଦମ୍ ମାରୁଥିବେ ଯାଇ
ସମତଳ ଭୂମିପରେ
ଗିରି ପଦୁଁ ଖଣ୍ଡ ଦୂରେ
ନଷ୍ଟ ରାଣୀହଂସପୁରେ ।

ପୁରୁଣା ନଅର ଆହା
ନିଷ୍ପ୍ରଭ ଉତ୍କଳେ ଯହିଁ
ସ୍ୱାଧୀନତା ଶେଷବତୀ
ଜଳୁଥିଲା କ୍ଷୀଣେ ଅତି,

ଲିଭିଯାଇଛି ସେ ଦୀପ
ଭିଟାରେ ଉଠିଛି ଏବେ
ଅନ୍ଧାର କରିଛି ଗ୍ରାସ
ବଣବୁଦା ଗଛ ଘାସ ।

ସେ ଅମା-ଅନ୍ଧାର କଥା
କିପାଁ ଭାବେ ? ବୁଡେ ପ୍ରାଣ
ଏ ଅନ୍ଧାର କାରାଗାରେ
ଦୁଃଖ ଶୋକ ଅକୂପାରେ[୩] ।

ଲିଭିଗଲେ ଏକାବେଳେ
ଦେଖି କିଏ ସମ୍ଭାଳିବ
ମହତ୍ତ୍ୱର କ୍ଷୀଣ ଛାୟା
ଧରି ରକ୍ତ ମାଂସ କାୟା ?

ଜୟୀ ରାଜଗୁରୁ ଆତ୍ମା
ବୁଲୁଥିବ ଏବେ ଏକା
ପକାଇ ସୁଦୀର୍ଘ ଶ୍ୱାସ
ପୁଷ୍କରିଣୀ ଚଉପାଶ ।

ନିରାଶା ବିଷାଦଗୀତି
କି ଅବା ନିରେଖି ଶୂନ୍ୟେ
ଗାଉଥିବ କ୍ଷୀଣ ନାଦେ
ବସିଥିବ ଅବସାଦେ ।

ଗୁମୁଟିରେ କାରା ଘଣ୍ଟା
ଯେ ଯାହା ପଞ୍ଜରେ ବନ୍ଦ
ବାଜେ ଠଣ୍ ଠଣ୍ ଠଣ୍
ହେଲେ ସର୍ବେ ବନ୍ଦୀଗଣ ।

ପ୍ରତି ଖୁଆଡ଼ର ସଂଖ୍ୟା
ଲାଗିବ ଏ ରାତିଯାକ
ଡାକେ ଉଚ୍ଚେ ଜଗୁଆଳି
ସଂଖ୍ୟା ସଂକୀର୍ତ୍ତନ ପାଳି ।

ବାଜିବଣି ନୀଳାଚଳେ
ଏ ସନ୍ଧ୍ୟା ଆରତି ବେଳେ
କେତେ ଘଣ୍ଟା ଭେରି ତୁରି
ବେଢ଼ା ଉଠୁଥିବ ପୂରି ।

କେହି କରୁଥିବେ ଜପ
କାହିଁ ନାମ ସଂକୀର୍ତ୍ତନ
ପଢୁଥିବେ କେହି ସ୍ତୁତି
ଲାଗିଥିବ ଦିବ୍ୟସ୍ଫୂର୍ତ୍ତି ।

ଉତ୍କଳର ପଲ୍ଲୀ ଗ୍ରାମେ
ଭାଗବତ ପଦ ଦୁଆ
ଏବେ ଭାଗବତ ଘରେ
ଉଠିବଣି ଉଚ୍ଚସ୍ୱରେ ।

ଏ ବିଜନ ବିଲେ କିମ୍ବା
ଏକାନ୍ତେ ମୁହୂର୍ତ୍ତେ ବସି
କରୁଛି ମୁଁ ସେ ଭାବନା
କରେ ହେଲେ ଉପାସନା ।

ପୂରି ରହିଛନ୍ତି ପ୍ରଭୁ
ପାଇବି ପରାଣେ ଶାନ୍ତି
ସର୍ବ ଭୂତେ ସର୍ବ ସ୍ଥାନେ
ତାଙ୍କ ପାଦପଦ୍ମ ଧ୍ୟାନେ ।

୩- ସମୁଦ୍ରରେ

ବଜାଇବି ହୃଦେ ଘଣ୍ଟା ଅନ୍ତରେ ପ୍ରଦୀପ ଜାଳି
ଆରତି ରଚିବି ଏଥି ପଦେ ପ୍ରେମ ପୁଷ୍ପ ଢାଳି ।
ଜୀବନ ନିବିଡ଼ ତମେ ସେହି ମୋର ଧ୍ରୁବତାରା
ତାଙ୍କ ବଳେ ତୀର୍ଥ ମୋର ବିଷମ ଦୁଃସହ କାରା ।
ସେ ସଖା ସୋଦର ସ୍ୱାମୀ ଅଛନ୍ତି ସଦା ମୋ ସାଥି
ତାଙ୍କରି ଆଶ୍ରୟେ ଏବେ ପୁହାଇବି ଆଜି ରାତି ।

## ୧୦ । କାରାରେ ଜଣେ ବନ୍ଧୁଙ୍କ ବିୟୋଗବାର୍ତ୍ତା ଶୁଣିବା ପରେ *

ତରୁଣ ବୟସେ ଯେବେ ବସି ତବ ପାଶେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର,
ସେହି ଦିନୁ ଏ ଯାଏ ସବୁ ସ୍ମୃତି ମନେ ଆସେ
ଶୁଣି ଆଜି ତବ ମୃତ୍ୟୁ ଶୋକ-ସମାଚାର ।୧।

ଭାଗ୍ୟ ହେଲା ନାହିଁ ତବ ରୁଚି ଅନୁକୂଳ
ଜାଣେ ମୁଁ କାଟିଛ କାଳ ଚିର ହାହାକାରେ
ଜୀବନର କର୍ମକ୍ଷେତ୍ରେ ସତତ ବ୍ୟାକୁଳ,
ପାଇ ନାହଁ ସୁଖଶାନ୍ତି କ୍ଷଣେ ପରିବାରେ ।୨।

ଦେଖିଛି ଅନ୍ତରେ ତବ ଥିଲା ଅଗ୍ନିକଣା,
ଜଳିଥାନ୍ତା ଲାଗିଥିଲେ ଯଥାକାଳେ ବାୟୁ,
କୁହୁଳି କୁହୁଳି ତାହା ଲିଭିଲା ଅଜଣା
ନିରାଶାର ଉଷ୍ଣଶ୍ୱାସେ ତରଳିଲା ଆୟୁ ।୩।

କିପାଇଁ ପ୍ରଗାଢ଼ ସ୍ନେହ ଆଦର ବିଶ୍ୱାସ
ପୋଷିଥିଲ ନିରନ୍ତର ଅନ୍ତରେ ମୋ ପ୍ରତି,
ଅନ୍ତିମ ମୁହୂର୍ତ୍ତେ ମୋର ଦୂର କାରାବାସ
ସୁମରି ମରମେ ବ୍ୟଥା ପାଇଥିବ ଅତି ।୪।

ହେଲା ମୋର କାରାଦଣ୍ଡ ଯେବେ ପଡ଼େ ମନେ
ଛିଡ଼ା ହୋଇଥିଲ ଆସି ଦରବାର ଦ୍ୱାରେ,

ଢଳଢଳ କରି ସ୍ନେହ ଲୋତକ ନୟନେ
ରୁଦ୍ଧକଣ୍ଠେ ଆଶିଷିଲ ମୋର ନମସ୍କାରେ ।୫।

ଫେରି ଏଥୁଁ କରିଥାନ୍ତି ପୁଣି ନମସ୍କାର
କହିଥାନ୍ତି ଫେଡ଼ି ମୋର କାରା ଅନୁଭବ,
କ୍ରୂର କାଳ ଲଗାଇଲା କ୍ଷତେ ମୋର ଖାର
ଘଟାଇଲା ଏ ଦାରୁଣ ଶୋକ ଅଭିନବ ।୬।

ଆସୁ ଆସୁ ଆସିପାରେ ଯେତେ ଯେତେ ଦୁଃଖ
କରିଛି ଏ ଛାତିକି ମୁଁ ପାଷାଣୁଁ କଠିନ,
ଆତ୍ମୀୟସ୍ୱଜନ ଆଡୁ ଫେରାଇଣ ମୁଖ
ଅନ୍ଧକାର କାରାକକ୍ଷେ ପଶିଲି ଯେ ଦିନ ।୭।

ମୋ କାର୍ଯ୍ୟେ ମମତା ସଦା ଥିଲା ତବ ପ୍ରାଣେ
ମୋ ବିପଦେ ଭୋଗୁଥିଲ ସ୍ୱଜନ-ବେଦନା,
ନ ଗଲି ଶ୍ମଶାନ ଯାଏ ଅନ୍ତିମ ପ୍ରୟାଣେ
ଚିରଦିନ ରହିଲା ଏ ଗଭୀର ଶୋଚନା ।୮।

ରହିଚି ଏପରି କେତେ ଶୋଚନା ସଞ୍ଚିତ
ଶୈଶବୁଁ ବିୟୋଗ ଦୁଃଖେ ଗଢ଼ା ଏ ଜୀବନ,
ଜାଗିଲେ ସେ ସ୍ମୃତି ଚିତ୍ତ ହୁଏ ବିଚଳିତ
ଭାସେ ଆଖି ଅଶ୍ରୁନୀରେ ଅଙ୍ଗ ଅବସନ୍ନ ।୯।

ଦେଖି ନାହିଁ ମାତୃମୁଖ ଅଜ୍ଞାନ ଶୈଶବେ
ପିତା ପୁତ୍ର ପତ୍ନୀ ବନ୍ଧୁ ବିୟୋଗ ବିପ୍ଳାତ;
ବାର ବାର ତଡ଼ିନେଇ ଶୋକ-ମହାର୍ଣ୍ଣବେ
ବୁଡ଼ାଇ ଦେଇଛି ବୁକେ ତୀବ୍ର କଷାଘାତ ।୧୦।

ବିରହ ବିଷାଦ ବିଷେ ରସାଣିତ ଧାର
କ୍ରୂର କାଳ ବାର ବାର ତୀକ୍ଷ୍ଣ କରବାଳେ,
କରିଛି ଏ ବକ୍ଷେ ମୋର ଦାରୁଣ ପ୍ରହାର
କୁଞ୍ଚିତ ଚିରାଳ[୧] ଛାପ ମାରିଛି ମୋ ଭାଲେ ।୧୧।

ଅଳପ ବୟସେ ମୋର ବହୁ ଅନୁଭବ
ହୃଦ ନିଷ୍ପେଷିତ ମୋର ବିରହ କଷଣେ,

୧- ପତାକା

ତୁଟିଛି ମୋ କଳ୍ପନାର ବିଳାସ ବୈଭବ
ଦେଖେ ମୁଁ ଜୀବନଗତି ବାସ୍ତବ-ନୟନେ ।୧୨।

ତୃଣ ବେନି ଯଥା ମହାସାଗର ତରଙ୍ଗେ
ଭାସିଆସି କ୍ଷଣେ ମିଳି ହୁଏ ଅନ୍ତରିତ
ପିତା ପୁତ୍ର ପତି ପତ୍ନୀ ମିଳି ଏକ ସଙ୍ଗେ
କାଳ-ସ୍ରୋତେ କାହିଁ ପୁଣି ଚଳନ୍ତି ତ୍ୱରିତ !୧୩।

ଏହି କି ପ୍ରଣୟ ଗତି, ଏହି ପରିଣାମ ?
ଅପାର ଜୀବନ-ସ୍ରୋତେ ମୁହୂର୍ତ୍ତ ମିଳନ ?
ଭେଟ ସ୍ଥାନ ଏକମାତ୍ର କ୍ଷୁଦ୍ର ଧରାଧାମ ?
ତେବେ କିପାଁ ଏ ମମତା, ଏତେ ଆୟୋଜନ ?

ବେନି ତୃଣ ବାରେ ଯେବେ ଭେଟି ପରସ୍ପରେ
ଅନନ୍ତ ଭ୍ରମଣ ପଥେ କରନ୍ତି ଗମନ,
କେ ଜାଣେ ନ ହେବ ବୋଲି ଭେଟ ଆଉ ଥରେ
ତୁଟେ ନାହିଁ କିପାଁ ସ୍ମୃତି ମମତା ବନ୍ଧନ ।୧୪।

ଚିତାନଳେ ଭସ୍ମ ନୁହେ ସେନେହ ବନ୍ଧନ
ଶ୍ମଶାନ ନୁହେ ଏ ଜୀବ ଶେଷ ପରିସୀମା,
କେବେ କାହିଁ ହେବ ନିଶ୍ଚେ ଶୁଭ ସମ୍ମିଳନ
ପ୍ରକାଶିବ ପ୍ରାଣେ ପୂର୍ଣ୍ଣ ପୁଣ୍ୟ-ମାଧୁରିମା ।୧୬।

ସୁଖ ଦୁଃଖ ତେଣୁ ମୋର ସମ ସହଚର
ଜନମେ ମରଣେ ନାହିଁ ହରଷ ବିଷାଦ,
ଆହ୍ଲାଦେ ଆପଦେ ମୋର ସମାନ ଆଦର
ସବୁ ଶୁଭ ବିଧାତାଙ୍କ ଶୁଭ ଆଶୀର୍ବାଦ ।୧୭।

ଏ ବିଶ୍ୱାସେ କାରା ମୋର ପୁଣ୍ୟ ତପୋବନ
ଆତ୍ମୀୟ ବିୟୋଗ ଆଣେ ଅପୂର୍ବ ଉନ୍ମେଷ,
କ୍ରମେ ଯେ ନିକଟେ ମୋର ଆସୁଛି ମରଣ
ରହିଅଛି ବହୁ କାର୍ଯ୍ୟ ଏବେ ଅବଶେଷ ।୧୮।

□□□

* ଗୋପବନ୍ଧୁଙ୍କ ଶିକ୍ଷାଗୁରୁ ପୁରୀବାସୀ ସ୍ୱର୍ଗୀୟ ଦିବ୍ୟସିଂହ ମିଶ୍ରଙ୍କ ପରଲୋକ ସଂକ୍ରାନ୍ତରେ ଲିଖିତ । ଦିବ୍ୟସିଂହ ମିଶ୍ର ବି.ଏ. ପାସ୍ କରି ପୁରୀ ଜିଲ୍ଲା ସ୍କୁଲରେ ସହକାରୀ ଶିକ୍ଷକ ଥିଲେ ।

# ୧୧ । ଦେଖାଦିଅ ବାରେ

ଦଶଦିଗ ମୋତେ ଦିଶେ ଅନ୍ଧକାର
ଲାଗେ ଏ ଜୀବନ ଅତି ଗୁରୁଭାର
ନିରାଶା ନିଶ୍ୱାସ ବହେ ଅଣଚାଶ
କରିବି କି ପ୍ରତିକାର ? ।୧।

କାହିଁ ମୋର ସେହି ପ୍ରାଣ ପ୍ରେମଧାର
କାହିଁ ମୋର ସୁଧାମୟ ହୃଦହାର
ଦିଅ ଦେଖା ବାରେ ଏ ଘୋର ଅନ୍ଧାରେ
ଦେଖ ମୁଁ କି ନାରଖାର ! ।୨।

ଚଳାଅ ମୋ ଅଙ୍ଗେ ଅମିୟ ଅଙ୍ଗୁଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି
ବଜାଅ ସେ ବୀଣା ମୃତ୍ୟୁ-ଭୟଜିଣା
ଉଠୁ ପ୍ରାଣ ମୋ ଉଛୁଳି ।୩।

ବୁଡ଼ି ନାହିଁ ପୂରା ଏବେ ମୋ ଚେତନା
ଲୋଡ଼େ ଏ ପରାଣ ସେନେହ ସାନ୍ତ୍ୱନା
ଅଳପ ଅପାଙ୍ଗେ ଅନାଅ ଏ ଅଙ୍ଗେ
ଆସୁ ଆଶା ଆଶ୍ୱାସନା ।୪।

ମଧୁର ମୁରଲୀ ବିମୋହନ ତାନ
ଶୁଣାଅ, ପୁଲକି ଉଠିବ ପରାଣ,
ଆଶୁ ଉପଚାର କରହେ ବିଚାର
ଥାଉଁ ଥାଉଁ ମୋର ଜ୍ଞାନ ।୫।

ଉଠୁପଛେ ତାନେ ଦୁଃଖମୟ ଗୀତି
ଦୁଃଖଗଢ଼ା ପ୍ରାଣ ପାଉ ଦୁଃଖେ ପ୍ରୀତି
ଦୁଃଖେ ସୁଖେ ମୋର ସମାନ ଆଦର
ବାଅ, ବେଳ ଯାଏ ବିତି ।୬।

□□□

## ୧୨ । ପ୍ରେମର କି ଏହି ପରିଣାମ ?

ତରଳ ତାରୁଣ୍ୟେ ବେନି ହୃଦ ଢଳଢଳ
ମିଶିଲା ସହଜେ ଯଥା ଜଳ ସଙ୍ଗେ ଜଳ ।
କୋମଳ କୈଶୋରେ ପ୍ରୀତି ହେଲା ଗାଢ଼ତର
ସହେ ନାହିଁ ପ୍ରାଣ, ହେଲେ ମୁହୂର୍ତ୍ତେ ଅନ୍ତର ।

ଆହାର ଭୋଜନ ନିଦ୍ରା ସ୍ନାହାନ ଆଳାପ
ଗାନ ଧ୍ୟାନ ଅଧ୍ୟୟନ ସୁହାସ ବିଳାପ ।
ଜୀବନର ପ୍ରତି କାର୍ଯ୍ୟେ ଯଥା ଏକ କଳେ
ଅନୁକ୍ଷଣେ ଏକ ଭାବେ ବେନି ତନୁ ଚଳେ ।

ଏକ ହୃଦେ ଲାଗେ ଯେବେ ଦୁଃଖ ଦାଉ ଘାତ
ସଙ୍ଗେ ସଙ୍ଗେ ଆନ ନେତ୍ରୁ ହୁଏ ଅଶ୍ରୁପାତ ।
ବେନି ପିଣ୍ଡେ ଏକ ଆତ୍ମା ଏକ ମନ ପ୍ରାଣ
ବେନି ହୃଦେ ଏକ ତନ୍ତ୍ରେ ବାଜେ ସମ ତାନ ।

ସେ ମୋହନ ତନ୍ତ୍ରେ ସୂକ୍ଷ୍ମ ଛିଦ୍ର ଥିଲା କାହିଁ
ସ୍ୱପ୍ନେ ହେଲେ କେହି କେବେ ମନେ ଭାବି ନାହିଁ ।
ଚାହୁଁ ଚାହୁଁ ଚାରୁ ବୀଣା ହେଲା ବେନି ଭାଗ
ନାହିଁ ଆଉ ତାନ ଲୟ ନାହିଁ ଗୀତ ରାଗ ।

ଉପୁଜିଲା ଅଲକ୍ଷିତେ କାହୁଁ ଅମ୍ଳବିନ୍ଦୁ
ସ୍ୱାର୍ଥ ତାପେ ଛିଣ୍ଡାଇଲା ପ୍ରୀତି-ପୟ-ସିନ୍ଧୁ ।
ସଂହତ ଶ୍ୟାମଳ ସ୍ନିଗ୍ଧ ଶୈଳଗର୍ଭେ ଲୁଚି,
ଥିଲା ଶିଳାଭେଦକ୍ଷମ ସୂକ୍ଷ୍ମ ବଜ୍ରସୂଚି ।

ଅକସ୍ମାତେ ବିଦାରିଲା ଶଇଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର ।
ମଧ୍ୟେ ବହେ ଭୀମବେଗେ ବିଶାଳ ପ୍ରପାତ
ଘଟିବ କି ଆଉ ସତେ ବେନିଙ୍କ ସାକ୍ଷାତ ?

ନଶ୍ୱର ଭବେ କି ଏହି ଜୀବନର ଗତି,
କ୍ଷଣଭଙ୍ଗୁର କି ନର ପ୍ରଣୟ ପୀରତି ?
କଣ୍ଟକସଙ୍କୁଳ ପଥେ କୁସୁମ ବିତାନ
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଳ ସମାନ ।

ମରପିଣ୍ଡେ ପ୍ରେମ ଏକ ଅମର ସଞ୍ଚାର,
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାକର ।
ପ୍ରେମର ଏ ପ୍ରଶସ୍ତି କି କବି କଳପନା,
ପ୍ରେମ କି କେବଳ ନୀଚ ସ୍ୱାର୍ଥର ଛଳନା ?

କୈଶୋରେ ଉପୁଜେ ପ୍ରେମ ମିଳି ପ୍ରାଣେ ପ୍ରାଣ
ଉତ୍ତର ବୟସେ ତାର ଏହି ପରିଣାମ ?
ଯୌବନ ସରସ ଭାବ ହୃଦୟ ପ୍ରସାର
ପ୍ରବୀଣ ଦୃଷ୍ଟିରେ ଘୋର ମସ୍ତିଷ୍କ ବିକାର ?

ଜୀବନର ପଦେ ପଦେ କାହିଁ ତେବେ ମେଳ
ନୁହେଁ ପରା ଏ ଜୀବନ ବୃଥା ଶିଶୁ ଖେଳ ?
ଧିକ୍ ଧିକ୍ ଶତ ଧିକ୍ ପ୍ରୌଢ଼ ପ୍ରବୀଣତା,
ନାଶେ ଯେ ମାନବ ହୃଦ ସ୍ନେହ ସରଳତା ।

ଗର୍ବ ଅହଙ୍କାରେ ଯାର ପୀରତି ପିହିତ
ଆବିଳ ପ୍ରାଣେ ଯେ ଗାଏ ପୁଣ୍ୟ ପ୍ରେମ-ଗୀତ,
ବହିଯାଏ ଦୂରେ ଯାର ବିଶ୍ୱପ୍ରେମିକତା
ଈର୍ଷାନଳେ ଜଳେ ଆଦ୍ୟ ନିକଟ ମମତା,

ଶୈଶବ ଉଦ୍ଦେଶ୍ୟହୀନ ସ୍ୱଚ୍ଛନ୍ଦ ସରଳ
ତରୁଣ ଉନ୍ମୁକ୍ତ ରମ୍ୟ କୋମଳ ତରଳ ।
ପ୍ରେମ-ପୁଲକିତ ନବ ମଧୁର ଯୌବନ,
ସରିଥାନ୍ତା ଏଥି ହେଲେ ମାନବ ଜୀବନ ।
ରହିବ କି ଚିରଦିନ ଯୋଜନ ଅନ୍ତର ?
ବହିବ କି ଚିରଦିନ ଅତଳ ସାଗର ?
ଶୁଖିବ ନାହିଁ କି ସିନ୍ଧୁ ନିଦାଘ କିରଣେ ?
ଘନିବ ନାହିଁ କି ଶୀତ ହିମ ଆବରଣେ ?

ନିର୍ମଳ ଶରଦ ଶଶୀ ଶୀତଳ କିରଣ
ମଧୁର ବସନ୍ତ ମୃଦୁ ମନ୍ଦ ସମୀରଣ,
ହରିବ ନାହିଁ କି କେବେ ପରାଣ ବେଦନା ?
ଘଟିବ ନାହିଁ କି ଆଉ ଯୁଗଳ ଯୋଜନା ?

ତୁଟିବ ନାହିଁ କି କେବେ ହୃଦୟରୁ ଦାଗ,
ଫୁଟିବ ନାହିଁ କି ପୁଣି ପୂର୍ବ ଅନୁରାଗ ?

ଲିହି ଯେ ବୁକୁରେ ଶିର ଚାହିଁ ଆନ ମୁଖେ
ଶୋଇଥିଲା କୁତୂହଳେ ଏକ ମନ ସୁଖେ ।

ଯେତେଯେତେ କଥା ଅଛି ସେ ବୁକୁ ଭିତରେ
ଫିଟିବ ନାହିଁ କି ତାହା କେବେ ଏକାନ୍ତରେ ?
ଏକକୁ ଅନାଇ ଆନ ନେତ୍ରୁ ଅଶ୍ରୁଧାର
ବହିବ ନାହିଁ କି ଭେଦି ହୃଦୟ-ଦୁଆର ?

"ତୁ ଛାଡ଼ିଲେ ମୁଁ ତ ତତେ ନ ଛାଡ଼ିବି କ୍ଷଣେ"
କହିବ କି ଏକ ଆନେ ଇଙ୍ଗିତ ଈକ୍ଷଣେ ?
ନୀରବ ଆଳାପେ କହି ମରମ ଭାଷଣ
କରିବ ନାହିଁ କି ଏକ ଆନେ ଆଲିଙ୍ଗନ ?

ବିଭାସିବ ପ୍ରେମ ତେବେ ଅଭିନବ ରାଗେ
ଯୁଗଳ କମଳ କଳି ଫୁଟିବ ସରାଗେ ।
ବିଚ୍ଛେଦେ ବିକାଶ ପ୍ରେମ ଅତି ମଧୁମୟ
ଶୀତ ଅନ୍ତେ ଶୋଭେ ସିନା ନବ କିଶଳୟ ।

## ୧୩ । ବିଶ୍ୱର ମିଳନ ଚିତ୍ର

କାହିଁ ତପନ କେତେ ଦୂର ଅମ୍ବରେ
କାହିଁ ନଳିନୀ ତଳେ ଫୁଟଇ ସରେ,
ଉଇଁବା ମାତ୍ରେ ରବି କର ବଢ଼ାଇ
ନଳିନୀ ଅଙ୍ଗେ ଦିଏ ଅଙ୍ଗ ଲଗାଇ ।୧।

କାହିଁ ସୁନୀଳ ନଭେ ବିରାଜେ ଇନ୍ଦୁ
କାହିଁ ଧରଣୀ ତଳେ ସୁନୀଳ ସିନ୍ଧୁ,
ପ୍ରେମେ ଲହରୀ-ବାଳା ଖେଳେ ଉଲ୍ଲାସେ
ସୁଧାଂଶୁ ସୁଧାମୟ କର ପରଶେ ।୨।

ସଞ୍ଚରେ ବାୟୁ କାହିଁ ଅନନ୍ତ ପଥେ
ନ ଭୁଲେ ପ୍ରୀତି ଗିରିଗୁହା ସଙ୍ଗତେ,
ନ କରି ଦିନ ବାର ଋତୁ ବାରଣ
ଦରୀ ସୁନ୍ଦରୀ ମୁଖ ଚୁମ୍ବେ ପବନ ।୩।

ନୀରଦ ଆଲିଙ୍ଗନେ ସଦା ସ୍ନେହରେ
ଚାପଇ ଚପଳାକୁ ନିଜ ଦେହରେ,
କଳା ହେଲେହେଁ ମେଘେ ପ୍ରେମ ପୁଲକେ
ଚାରୁ ଚପଳା ଚୁମ୍ବେ ନେତ୍ର ପଲକେ ।୪।

ବିସ୍ତାରି ଶାଖା-ଭୁଜ ତରୁ ସୁବେଶେ
ଲଳିତ ଲତା ତନୁ ପ୍ରେମେ ଆଶ୍ଳେଷେ,
ନ ଛାଡ଼େ ତରୁ ସଙ୍ଗ କେବେ ବ୍ରତତୀ
ସର୍ବାଙ୍ଗ ଶତମୁଖେ ଚୁମ୍ବଇ ସତୀ ।୫।

କଠିନ ଗିରିବକ୍ଷେ ଚୁମ୍ବେ ଝରଣା
ଅଙ୍ଗରେ ଅଙ୍ଗ ଛନ୍ଦି ଶୁଭବରଣା,
ସହେ ଶଇଳ ତାର ପ୍ରପାତ ଭାର
ସାଦରେ ସଦା ଯେହ୍ନେ ଗଳାର ହାର ।୬।

ଲଙ୍ଘି ସରିତ ବହୁ ପଥ ଦୁର୍ଗମ
ପ୍ରେମେ ଉଚ୍ଛୁଳେ ଲଭି ସିନ୍ଧୁ ସଙ୍ଗମ,
ଚୁମ୍ବିଲେ ସିନ୍ଧୁନୀର ବିଶାଳ ବାହୁ
ଗାଢ଼ ଆଶ୍ଳେଷେ ଦୃଶ୍ୟ ନ ହୁଏ ଆଉ ।୭।

ଭୁଲି ସାଗର ନିଜ ମହତପଣ,
ପ୍ରେମେ ଉନ୍ମାଦେ ଚୁମ୍ବେ ବେଳା ଚରଣ,
ମର୍ଯ୍ୟାଦା ଜଗି ମନା କରଇ ବେଳା
ଲାଗିଛି ଅନୁକ୍ଷଣ ଏ ପ୍ରୀତିଖେଳା ।୮।

ଚୁମ୍ବେ କଠିନ ଲୌହ କଠିନ ଶିଳା
ଜଗତେ କି ବିଚିତ୍ର ଏ ପ୍ରେମ ଲୀଳା,
ଚୁମ୍ବନ ଆଲିଙ୍ଗନ ପୀରତି କ୍ରିୟା
କ୍ଷଣକେ ତରଳାଏ ପାଷାଣ ହିଆ ।୯।

ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
ଚୁମ୍ବନ ଆଲିଙ୍ଗନ ମତେ ସ୍ୱପନ,
କିଏ ବା ଦେବ ନେବ ପ୍ରେମ-ପୀୟୂଷ
ନୀରବ ହାହାକାରେ ଯିବ ଆୟୁଷ ? ।୧୦।

ମିଳିବ ନାହିଁ କି ସେ ପୀରତି ସୁଧା
ମୋ ଲାଗି ଶୁଷ୍କ କି ଏ ବିଶ୍ୱ-ବସୁଧା ?

ଆଦର ଆଲିଙ୍ଗନ ଚାରୁ ଚୁମ୍ବନ
ଦେବ ନାହିଁ କି ପ୍ରାଣେ ପୁଣ୍ୟ ପ୍ରେରଣ ?

ଜାଣେ ଅଛନ୍ତି ମୋର ପରାଣପତି
ସୁନ୍ଦର ସତ୍ୟ ଶିବ ଅଗତିଗତି,
ରହିଛି ନିତି ତାଙ୍କ ବାଟ ଅନାଇ
ହୃଦ-ପଲଙ୍କେ ଫୁଲଶେଯ ସଜାଇ ।୧୨।

ଦେଖିବି ଥରେ ଯେବେ ପରାଣନାହା
ଛାଡ଼ିବି ନାହିଁ ଭିଡ଼ି ଧରିବି ବାହା,
ବିହିବି ମନ ଭରି ଚୁମ୍ବ ଆଶ୍ଳେଷ
ପୂରିବ ପ୍ରାଣ ପ୍ରାସ ହରିବ କ୍ଳେଶ ।୧୩।

ମିଶେ ସରିତ ଯଥା ମହାସାଗରେ
ଜଡ଼େ ବଲ୍ଲରୀ ଯଥା ତରୁ ଅଙ୍ଗରେ,
ନୀଳ ନୀରଦେ ଯଥା ଖେଳେ ଚପଳା
ନିର୍ଝର ଧାରା ଯଥା ଗିରି ମେଖଳା ।୧୪।

ନାଚେ ଲହରୀ ଯଥା ଶଶୀ ପରଶେ
ନଳିନୀ ଯଥା ରବିକରେ ହରଷେ,
ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମେ ପରମାନନ୍ଦେ ।୧୫।

ଗିରି ସାଗର ନଦୀ ତପନ ଶଶୀ
ସର୍ବେ ଚୁମ୍ବିବେ ମୋତେ ପ୍ରେମେ ପରଶି,
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ-ପସରା ।୧୬।

□□□

# ପ୍ରାକ୍-ସୂଚନା

ହଜାରିବାଗ ଜେଲରେ ଅଶ୍ରମ ବନ୍ଦୀଜୀବନ ଅତିବାହିତ କରୁଥିଲାବେଳେ ସଂସ୍କୃତଚର୍ଚ୍ଚାର ଅବସର ଗୋପବନ୍ଧୁ ପାଇଥିଲେ । ଉପନିଷଦ, ଶ୍ରୀମଦ୍‌ଭାଗବତ ଓ ମହାଭାରତକୁ ମୂଳ ସଂସ୍କୃତ ଭାଷାରେ ଜେଲ୍ ଭୋଗୁଥିବା ଜଣେ ସହକର୍ମୀଙ୍କ ସେ ସହଯୋଗ ଫଳରେ ଅଧ୍ୟୟନ କରିଥିଲେ । ଏହି ଅଧ୍ୟୟନରେ ଫଳଶ୍ରୁତି ହେଉଛି 'ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ' ଭଳି ଅନୁବାଦ-ଗ୍ରନ୍ଥ । କଠୋପନିଷଦରୁ ଅନୂଦିତ ଏହି ପୁସ୍ତକ ୧୯୨୩-୨୪ ମସିହା ମଧ୍ୟରେ ରଚନା କରାଯାଇଥିଲେ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ତାହା ପ୍ରକାଶିତ ହୋଇପାରିନଥିଲା । ଏହା କେବେ ପ୍ରକାଶିତ ହୋଇଥିଲା, ପୁସ୍ତକଟିର ପ୍ରଥମ ସଂସ୍କରଣ ଦେଖିବାର ସୁଯୋଗ ପାଇ ନଥିବା ହେତୁ ଏହି ସଂପାଦକ ପକ୍ଷରେ କହିବା ସମ୍ଭବ ନୁହେଁ । ୧୯୪୨ ମସିହାରେ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା ପ୍ରକାଶିତ 'ଅବକାଶ ଚିନ୍ତା'ର ପଛ ମଲାଟରେ 'ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନର' ଏକ ବିଜ୍ଞାପନ ରହିଛି । ସେଥିରେ ଅଛି :

> ପଣ୍ଡିତ ଗୋପବନ୍ଧୁଙ୍କ ସର୍ବଶେଷ ଲେଖା ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ କଠୋପନିଷଦ-ବର୍ଣ୍ଣିତ ବିଶ୍ୱବିଖ୍ୟାତ ଋଷିପୁତ୍ର ନଚିକେତାଙ୍କର ପିତୃସତ୍ୟ ପାଳି ଯମପୁରକୁ ଗମନ, ଯମଙ୍କଠାରୁ ବ୍ରହ୍ମତତ୍ତ୍ୱପ୍ରାପ୍ତି ଓ ପୁନର୍ବାର ମର୍ତ୍ତ୍ୟକୁ ଆଗମନ ଇତ୍ୟାଦି ବିଷୟ ପଣ୍ଡିତ ଗୋପବନ୍ଧୁଙ୍କ ସ୍ୱଭାବସୁଲଭ ସରଳ ସୁନ୍ଦର ଓ ସରସ ଭାଷାରେ କବିତାକାରରେ ଲିଖିତ ।

ତେଣୁ ଆଲୋଚ୍ୟ ପୁସ୍ତକଟି ୧୯୩୫ ମସିହାପରେ ('କାରାକବିତା' ପ୍ରକାଶପରେ) ଓ ୧୯୪୨ ମସିହାପୂର୍ବରୁ ପ୍ରକାଶିତ ।

ସଂପାଦକ

# ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ

## ପ୍ରଥମ ଅଧ୍ୟାୟ

### ପ୍ରଥମ ବଲ୍ଲୀ

ଥିଲେ ଋଷି ଉଦ୍ଦାଳକ ପୁରାଣ-ପ୍ରଧାନ
ବାଜସ୍ରବା ତାଙ୍କ ବଂଶେ ସୁଯୋଗ୍ୟ ସନ୍ତାନ ।
ସ୍ୱର୍ଗଲାଭ ଆଶେ କଲେ ବିଶ୍ୱଜିତ ଯାଗ
ଧନ ଦାନେ ସର୍ବସ୍ୱାନ୍ତ ହେଲେ ମହାଭାଗ ।
ବିଚକ୍ଷଣ ନଚିକେତା ଥିଲେ ତାଙ୍କ ସୁତ
ବାଳକାଳୁଁ ତାଙ୍କ ମନ ସଦା ଶୁଦ୍ଧପୂତ ।
ଦେଉଥିଲେ ପିତା ଯେବେ ବୃଦ୍ଧା ଗାଭୀ ଦାନ
ଦେଖି ଦୁଃଖ ଅବସନ୍ନ ନଚିକେତା-ପ୍ରାଣ ।
ମର୍ମେ ବ୍ୟଥା ପାଇ ମନେ କଲେ ସେ ବିଚାର,
"ଏଭଳି ଗୋଦାନେ ଅଛି କିବା ଉପକାର ?
ଏ ସକଳ ଗୋରୁ ଆହା ଜୀର୍ଣ୍ଣ କ୍ଷୀଣ ଅତି
ପାଇଛି ଇନ୍ଦ୍ରିୟ ଲୋପ, ଯାଇଛି ଶକତି ।
ପିଇଛନ୍ତି ଶେଷ ଢୋକ ଚିରଦିନ ପାଇଁ
ଖାଇଛନ୍ତି ଶେଷ ଘାସପୁଲା ଏହୁ ଗାଈ ।
ଦୁଧ ଦେବା ଲାଗି ଆଉ ନାହିଁ ଦେହେ ବଳ
ଏ ଗୋଦାନେ ଦୁଃଖମୟ ଲୋକ ସିନା ଫଳ !"
ପିତାଙ୍କୁ ସେ ନଚିକେତା ପୁଚ୍ଛନ୍ତି ବଚନ,
"କାହା ଦାନ ଲାଗି ମୋତେ କଳ୍ପିଛ ଆପଣ ?"
ବାରମ୍ବାର ପଚାରନ୍ତେ ପିତା ବିରକତେ
କହିଲେ, "ଯମକୁ ଦେବି ଏହି ଲାଗେ ତତେ ।"

ଶୁଣି ଏ ବଚନ ପୁତ୍ର ଭାବନ୍ତି ହୃଦୟେ
"କିପାଇଁ ପେଷିବେ ପିତା ମୋତେ ଯମାଳୟେ ?
ଛନ୍ତି ପିତାଙ୍କର ପୁତ୍ର ଶିଷ୍ୟ ଯେତେ ଜଣ
ସେବାଧର୍ମେ ମୁଁ ତ ନୁହେଁ ଅତି ଅକିଞ୍ଚନ ।
ନ ହେବି ଉତ୍ତମ ମଧ୍ୟେ ଯେବେ ଶ୍ରେଷ୍ଠତମ
ମଧ୍ୟମ କୋଟିରେ କେବେ ନୁହେଁ ମୁଁ ଅଧମ ।
ଯାହାହେଉ କ୍ରୋଧେ ପିତା କହିଲେ ଯେ କଥା
ପାଳିବି ତା, ନ କରିବି କେବେ ହେଁ ଅନ୍ୟଥା ।"
କ୍ଷଣେ ଅନ୍ତେ ପିତାଙ୍କର କ୍ରୋଧ ଉପଶମେ,
'କି କହିଲି' ବୋଲି ବ୍ୟଥା ପାଇଲେ ମରମେ ।
ତହୁଁ ନଚିକେତା ସ୍ନିଗ୍ଧ କୋମଳ ବଚନେ
କହନ୍ତି, "ହେ ପିତା, କିପାଁ ଦୁଃଖ କର ମନେ ?
ଆମ୍ଭ ପିତୃ ପିତାମହ ପୂର୍ବ ଆଚରଣ
ଯେ ବିଧାନେ ଚଳୁଛନ୍ତି ଏବେ ସାଧୁଗଣ ।
ଶୁଦ୍ଧ ବୁଦ୍ଧ[୧] ଚିତ୍ତେ ତାହା କର ହେ ବିଚାର
କର ନାହିଁ କେବେ ନିଜ ଉକ୍ତି ପ୍ରତ୍ୟାହାର ।
ବ୍ରୀହି[୨] ଯବ ଶସ୍ୟ ସମ ମରଇ ମାନବ
ଶସ୍ୟସମ ହୁଏ ପୁଣି ତାହାର ଉଦ୍ଭବ ।
ଜନମ-ମରଣ-ବଶ ଅନୁକ୍ଷଣ ଲୋକ
ପେଷ ମୋତେ ଯମପୁରେ କର ନାହିଁ ଶୋକ ।"
ପିତୃସତ୍ୟ ରକ୍ଷା ଲାଗି ସେ ଯୋଗ୍ୟ ତନୟ
ଆଜ୍ଞା ଶିରେ ବହି ବେଗେ ଗଲେ ଯମାଳୟ ।
ନଚିକେତା ପ୍ରବେଶିଲେ ଯେବେ ଯମପୁରେ
ଥିଲେ ଯମ ପରବାସେ କାହିଁ ବହୁ ଦୂରେ ।
ବାହୁଡ଼ନ୍ତେ ତିନି ଦିନ ଅନ୍ତେ ନିଜ ବାସେ
ଭୃତ୍ୟଗଣ ଜଣାଇଲେ ଶମନ ସକାଶେ ।
"ଅଗ୍ନି ସମ ପ୍ରଭାଦୀପ୍ତି ରୂପ କାନ୍ତିମନ୍ତ
ବ୍ରାହ୍ମଣ ଅତିଥି ତବ ଗୃହେ ଉପଗତ ।
ତିନି ଦିନ ହେଲା ବିପ୍ର ଛନ୍ତି ନିରାଧାରେ[୩]
ପୂଜ ତାଙ୍କୁ ଜନ୍ତୁରାଣ ଉଚିତ ବେଭାରେ ।

୧ - ଜାଗ୍ରତ/ଜ୍ଞାନାଲୋକରେ ଆଲୋକିତ; ୨ - ବିରି; ୩ - ନିରାଶ୍ରୟରେ/ଉପବାସରେ;

ବ୍ରାହ୍ମଣ ଅତିଥି ଗୃହେ ହେଲେ ଅନାଦୃତ
ନାଶନ୍ତି ଅନଳ ପ୍ରାୟେ ସକଳ ସୁକୃତ ।
ଗୃହସ୍ଥର ଗୃହେ ଯେବେ ଅତିଥି ବ୍ରାହ୍ମଣ
ରହନ୍ତି ନ ପାଇ ଯଥାବିହିତ ଭୋଜନ ।
ସେ ମନ୍ଦମତିର ଯାଏ ସର୍ବ ଧର୍ମ ନାଶ
ନ ରହେ ତାହାର କେବେ ପଶୁ ପୁତ୍ର ଆଶ ।
ବାଞ୍ଛା ସିଦ୍ଧି ନୁହେ, ଆଶା ନ ହୁଏ ପୂରଣ
ପ୍ରିୟ ସତ୍ୟ ସମ୍ଭାଷଣ ତାର ଅକାରଣ ।
ଯଜ୍ଞ କଲେ ଯଜ୍ଞଫଳ ନ ହୁଏ ପ୍ରାପତ
ତଡ଼ାଗ ଉଦ୍ୟାନ ଦାନେ ନୁହେ ପୁଣ୍ୟବନ୍ତ ।
ନ ଲଭେ ଜୀବନେ କେବେ ସାଧୁସଙ୍ଗ ଫଳ
ବିଫଳ ହୁଅଇ ତାର ସୁକୃତ ସକଳ ।''
ବିଷମ ବାରତା ଶୁଣି ଭୃତ୍ୟଗଣ ମୁଖେ
ନଚିକେତା ସନ୍ନିଧାନେ ଯମରାଜା ଦୁଃଖେ
କହନ୍ତି କାତର ଚିତ୍ତେ ବିନୟ ବଚନ,
''ତିନି ଦିନ ନିରାହାର ମୋ ଗୃହେ ଆପଣ !
ଆପଣ ଅତିଥି ପୁଣି ବିଶେଷେ ବ୍ରାହ୍ମଣ
ତେଣୁ ମୋର ନିତ୍ୟ ପୂଜା ଅର୍ଚ୍ଚନା ଭଜନ ।
କ୍ଷମ ଅପରାଧ ବିପ୍ର, ନମେ ତବ ପଦ
ହେଉ ମୋର ସର୍ବ ଶୁଭ ନ ଘଟୁ ବିପଦ ।
ତିନି ରାତ୍ର ଲାଗି ଯାହା ଇଚ୍ଛା ତିନି ବାର
ମାଗ ହେ ଅତିଥି ଦେବି ସତ୍ୟ ଏ ମୋହର ।''
ଯମ ବାକ୍ୟେ ନଚିକେତା ଭାଷନ୍ତି ଏସନ,
''ମୋଠାରେ ଆପଣ ଯେବେ ହେଲେ ସୁପ୍ରସନ୍ନ,
ପିତା ମୋର ବାଜସ୍ରବା ଗୌତମ ତାପସ
ମୋ ବିରହ-ଭାବନାରେ ନୁହନ୍ତୁ ଅବଶ ।
ନ ଜନମୁଁ ତାଙ୍କ ହୃଦେ କୋପ ମୋହ ପ୍ରତି
ରହନ୍ତୁ ସଦା ସେ ଶାନ୍ତି ସୁପ୍ରସନ୍ନ ମତି
ତବ ପୁରୁ ଫେରିଗଲେ ଦେଖି ମୋ ବଦନ
ଚିହ୍ନନ୍ତୁ କରନ୍ତୁ ପୁଣି ପ୍ରିୟ ସମ୍ଭାଷଣ ।

ମୋ ପ୍ରତି ସୁଦୟା ଯେବେ ତବ ଦଣ୍ଡଧର
ହେଉ ଆଜ୍ଞା ଦିଅ ମତେ ଏ ପ୍ରଥମ ବର ।''
କହେ ଯମ, ''ନଚିକେତା ଦେଲି ମୁଁ ଏ ବର
ତବ ବିରହରେ ପିତା ନ ହେବେ କାତର ।
ସୁଖେ ପୁହାଇବେ ନିଶି ନିଶ୍ଚିନ୍ତ ଶୟନେ
ତୁମ୍ଭ ପ୍ରତି ପୂର୍ବ ପ୍ରୀତି ରଖିଥିବେ ମନେ ।
ମୃତ୍ୟୁମୁଖୁଁ ଲେଉଟିବା ଦେଖି ନିଜ ଘରେ
ନ କରି ସେ କୋପ, ନେବେ ତୁମ୍ଭଙ୍କୁ ସାଦରେ ।''
କହେ ପୁଣି ନଚିକେତା, ''ସ୍ୱର୍ଗେ ନାହିଁ କ୍ଷୟ,
ନାହିଁ ମୃତ୍ୟୁ, ନାହିଁ ଜରା, ନାହିଁ କିଛି ଭୟ ।
ନ ଜାଣନ୍ତି ସ୍ୱର୍ଗଲୋକେ କ୍ଷୁଧା ତୃଷା ତ୍ରାସ
ଅତିକ୍ରମି ଶୋକ ସଦା କରନ୍ତି ଉଲ୍ଲାସ ।
ଯେ ଅଗ୍ନି ପ୍ରସାଦେ ଲଭି ଅକ୍ଷୟ ଅମୃତ
ସ୍ୱର୍ଗଲୋକ ନିରନ୍ତର ହୁଏ କୃତକୃତ୍ୟ ।
ସେ ଅଗ୍ନି ଗଭୀର ତତ୍ତ୍ୱ ତୁମ୍ଭର ଗୋଚର
କହ ଏ ବିଶ୍ୱାସୀ ଜନେ – ଏ ଦ୍ୱିତୀୟ ବର ।''
''ସ୍ୱର୍ଗ-ସିଦ୍ଧିଦାତା ଅଗ୍ନି ନିଗୂଢ଼ ବୃତ୍ତାନ୍ତ
ଜାଣଇ ମୁଁ ନଚିକେତା'' କହନ୍ତି କୃତାନ୍ତ ।
''ଲଭଇ ଅନନ୍ତ ସୁଖ ସ୍ୱର୍ଗଧାମେ ନର
ପ୍ରସନ୍ନ ହେଲେ ସେ ଦିବ୍ୟ ଅଗ୍ନି ବୈଶ୍ୱାନର[୪] ।
ସର୍ବ ଲୋକ ସ୍ଥିତି ହେତୁ ସେ ପୁଣ୍ୟ ପାବକ
ସର୍ବ ଅନ୍ତର୍ଯ୍ୟାମୀ ସର୍ବ ବୁଦ୍ଧି-ନିୟାମକ ।
କହୁଛି ଏହି ଯେ ତତ୍ତ୍ୱ ହେତୁ କରି ଜାଣ''
ଆବର ବୁଝାନ୍ତି ବିପ୍ରେ ଦେବ ଜନ୍ତୁରାଣ ।
ସର୍ବଲୋକ ଆଦି ହେତୁ ଅନଳ ବିଜ୍ଞାନ
ଯଜ୍ଞ ଇଷ୍ଟକର ସଂଖ୍ୟା ପ୍ରକାର ପ୍ରମାଣ ।
ଯଜ୍ଞ ଆମନ୍ତ୍ରିତ ଅଗ୍ନି ଅର୍ଚ୍ଚନ ବିଧାନ
ଯମ ମୁଖୁଁ ଶୁଣି ସବୁ ଗୂଢ଼ ତତ୍ତ୍ୱ ଜ୍ଞାନ ।

---

୪ - ଜଠରାଗ୍ନି/ଅଗ୍ନିର ଅଧିଦେବତା;

ସ୍ଥିର ଚିତ୍ତେ ନଚିକେତା କରନ୍ତି ଆବୃତ୍ତି
ତୁଷ୍ଟ ହେଲେ ଯମରାଜା ଦେଖି ତାଙ୍କ କୃତି ।
ଯୋଗ୍ୟ ଶିଷ୍ୟ ନଚିକେତା ବୁଝିଲେ ଅନ୍ତରେ
କହିଲେ ମହାତ୍ମା ତାଙ୍କୁ ଅତି ପ୍ରୀତିଭରେ–
''ତୁମ୍ଭଙ୍କୁ ଦେବି ମୁଁ ଆଜି ଅନ୍ୟ ଏକ ବର
ତବ ନାମ ବୋଲାଇବେ ସ୍ୱର୍ଗ-ବୈଶ୍ୱାନର ।
ନଚିକେତା ଅଗ୍ନି ବୋଲି ହେବ ସେ ବିଦିତ
ଲଭ କର୍ମମୟ ସ୍ୱର୍ଗ ଅତି ଆନନ୍ଦିତ ।
ପିତାମାତା ଗୁରୁଜନ ଆଜ୍ଞା ଘେନି ଶିରେ–
ପୂଜେ ଯେ ତ୍ରିସନ୍ଧ୍ୟା ଅଗ୍ନି ନିୟତ ବିଧିରେ
ଯଜ୍ଞ ଦାନ ଅଧ୍ୟୟନେ ରତ ଅନୁକ୍ଷଣ
ତରଇ ସେ ଜନ୍ମ-ମୃତ୍ୟୁ ଦୁସ୍ତର ବନ୍ଧନ ।
ହିରଣ୍ୟଗରଭୁଁ[୫] ଜାତ ବିଶ୍ୱପ୍ରକାଶକ
ବିଶ୍ୱବନ୍ଦ୍ୟ ସର୍ବଜ୍ଞାତା ସେ ଦେବ ପାବକ ।
ଆତ୍ମା ରୂପେ ପ୍ରାଣୀହୃଦେ ରାଜନ୍ତି ସତତ
ବୁଝି ଯେହୁ ଅନୁଭବେ ଆଣଇ ଏ ତତ୍ତ୍ୱ ।
ଲଭଇ ସେ ଅନୁପମ ଅଖଣ୍ଡ ସନ୍ତୋଷ
ଚିରଦିନ ଲାଗି ତୁଟେ ଭବଭ୍ରାନ୍ତି ଦୋଷ ।
ବିହିତ ଇଷ୍ଟକେ ବେଦୀ କରି ଯେ ରଚନା
ସାଧେ ନଚିକେତା ଅଗ୍ନି ତ୍ରିବାର ଅର୍ଚ୍ଚନା ।
ଆତ୍ମଭାବେ ଧ୍ୟାୟେ ଚିତ୍ତ କରି ଏକ ଲୟ
ମୃତ୍ୟୁ-ପାଶ[୬] କାଟେ ସେହୁ ନୋହୁ ତନୁ କ୍ଷୟ;
ରାଗ ଦ୍ୱେଷ ଆଦି ଯେତେ ଦୁଃଖର ନିଦାନ
ମାନବ ଜନମେ ତାର ପାଏ ଅବସାନ ।
ଶୋକେ ଦୁଃଖେ କେବେ ସେହୁ ନ ହୁଏ ବିହ୍ୱଳ
ଭୁଞ୍ଜେ ମର୍ତ୍ତ୍ୟେ ମହାମୋଦ ସ୍ୱର୍ଗଲୋକ ଫଳ ।
କହିଲି ନଚିକେତା ଏ ଅଗ୍ନି ବିବରଣ,
ଲୋଡ଼ିଲ ଦ୍ୱିତୀୟ ବରେ ଯେ ତତ୍ତ୍ୱ ଆପଣ ।

୫ - ଶାଳଗ୍ରାମ ଶିଳାବିଶେଷଠାରୁ/ବ୍ରହ୍ମାଙ୍କଠାରୁ; ୬ - ମୃତ୍ୟୁର ବନ୍ଧନ;

ତବ ନାମେ ହେବେ ଏହୁ ଅଗ୍ନି ଲୋକେ ଖ୍ୟାତ
କି ତୃତୀୟ ବର ମାଗ କହ ଏବେ ତାତ !''
କହେ ନଚିକେତା, ''ମନେ ଲାଗେ ମୋ ସନ୍ଦେହ
କି ହୁଏ ମାନବ ? ଯେବେ ତେଜେ ମରଦେହ ।
କହନ୍ତି କେତେକ ଆତ୍ମା ଯାଏ ପରଲୋକେ
ବିଶ୍ୱାସ କରନ୍ତି ନାହିଁ ପରଲୋକେ ଥୋକେ ।
ଚିରକାଳ ରହିଛି ଏ ସଂଶୟ ଜଗତେ
ଦିଅ ଉପଦେଶ ଯେହ୍ନେ ଯିବି ମୁଁ ପରତେ ।
ପରଲୋକ ତତ୍ତ୍ୱ ପ୍ରଭୁ ହେଉ ମୋ ଗୋଚର
ଦୟାକରି ଦିଅ ମୋତେ ଏ ତୃତୀୟ ବର ।''
କହେ ଯମ, ''ପଚାରିଲ ଯେ ତତ୍ତ୍ୱ ଆପଣ
ସଂଶୟ-ଜଡ଼ିତ ତହିଁ ପୂର୍ବେ ଦେବଗଣ ।
ଆତ୍ମଧର୍ମ ତତ୍ତ୍ୱ ଏହୁ ସୂକ୍ଷ୍ମ ସୁଗହନ
ବୁଝିବେ ସହଜେ କାହିଁ ଜନସାଧାରଣ ?
ଏ ବର ନିମନ୍ତେ ଆଉ କଟାଳ[୭] ନ କର
ଛାଡ଼ ଏହା ନଚିକେତା, ମାଗ ଅନ୍ୟ ବର ।''
ବୋଲେ ନଚିକେତା, ''ଯାହା କହିଲ ଆପଣ
ଏ ତତ୍ତ୍ୱ ସଂଶୟ ପୂର୍ବେ କଲେ ଦେବଗଣ ।
ଇତର ଜନର ଏହା ନୁହଇ ସୁଗମ
ସତ୍ୟ, ମାତ୍ର ତୁମ୍ଭ ପରି କାହିଁ ଅନ୍ୟତମ;
ଏ ତତ୍ତ୍ୱର ଉପଯୁକ୍ତ ବକ୍ତା ଦଣ୍ଡଧର
ଏହା ବିନୁ ନାହିଁ ମୋର ଲୋଡ଼ା ଅନ୍ୟ ବର ।''
ବିଡ଼ିବାକୁ[୮] ନଚିକେତା ହୃଦୟ-ଦୃଢ଼ତା
କହିଲେ ଦେଖାଇ ଲୋଭ ସେ ଯମ ଦେବତା—
''ଶତ ବର୍ଷ ଦୀର୍ଘଜୀବୀ ପୁତ୍ରପୌତ୍ରଚୟ
ମାଗ ଅଗଣିତ ଧେନୁ ସ୍ୱର୍ଣ୍ଣ ହସ୍ତୀ ହୟ,
ମାଗ ହେ ଧରଣୀ ତଳେ ମହା ଆୟତନ
ଯେତେ କାଳ ଇଚ୍ଛା ରହ ଧରିଣ ଜୀବନ ।

୭ - ଜିଦ୍‌ଯୁକ୍ତ ଅଳି; ୮ - ପରୀକ୍ଷା କରିବାକୁ;

ଅବା ଏହିପରି ଅନ୍ୟ ଯାହା ବାଞ୍ଛା ତବ
ମାଗ ଚିରାୟୁଷ, ମାଗ ଅତୁଳ ବିଭବ ।
ବିଶାଳ ମଣ୍ଡଳେ ତୁମ୍ଭେ ହୁଅ ଅଧୀଶ୍ୱର
ପୂର୍ଣ୍ଣ କରିବି ମୁଁ ଯେତେ କାମନା ତୁମ୍ଭର ।
ଯେ ସୁଖ ସୌଭାଗ୍ୟ ନିତି ଲୋଡ଼ଇ ମାନବ
ମର୍ତ୍ତ୍ୟବାସୀ ନରେ ଯାହା ଅତ୍ୟନ୍ତ ଦୁର୍ଲ୍ଲଭ ।
ସ୍ୱଚ୍ଛନ୍ଦେ ମାଗ ସେ ସର୍ବ ବର ଯା କାମନା
ଦେଖୁଅଛ ଏଥି ଯେତେ ଅମର-ଅଙ୍ଗନା ।
ଚାରୁରତ୍ନ ସୁଖଚିତ ସୁନ୍ଦର ସ୍ୟନ୍ଦନ
ଶୁଣୁଛ ଯେ ତୁରୀ ଭେରୀ ବାଦିତ୍ର ନିଃସ୍ୱନ ।
ମନୁଷ୍ୟଦୁର୍ଲ୍ଲଭ ଏହୁ ଅଶେଷ ସମ୍ପଦ
ଖଟନ୍ତୁ ଏ ସର୍ବେ ବିପ୍ର ସଦା ତୁମ୍ଭ ପଦ ।
କିନ୍ତୁ ନଚିକେତା, ଘେନ ମୋର ନିବେଦନ
ନ ପଚାର ମୃତ୍ୟୁତତ୍ତ୍ୱ କଦାପି ଆପଣ ।''
କହେ ନଚିକେତା, ''ଯେ ଯେ ସମ୍ପଦ ସମ୍ଭୋଗ
କହିଲ ଅନ୍ତକ[୯], ନୁହେ ମୋର ଉପଯୋଗ ।
ମାନବ ଇନ୍ଦ୍ରିୟ ତେଜ, ଇନ୍ଦ୍ରିୟ ବିଳାସ
ବିଳାସ-ସାମଗ୍ରୀ, ସବୁ ଯାଏ କ୍ଷଣେ ନାଶ ।
ସଂସାର-ସମ୍ପଦରାଶି କ୍ଷଣକାଳସ୍ଥାୟୀ
ଆଜି ଅଛି ଯାହା ପୁଣି କାଲିକି ତା ନାହିଁ ।
ଯାଚୁଛ ପରମ ଆୟୁ ଆପଣ ଯେ ମତେ
କେତେ କାଳ ସ୍ଥାୟୀ ତାହା କହ ହେ ଜଗତେ ?
ବ୍ରହ୍ମାୟୁଷ[୧୦] ହେଲେ ସୁଦ୍ଧା ପାଏ ଦିନେ କ୍ଷୟ
ନାହିଁ ମୋର ଲୋଡ଼ା ଆୟୁ ରଥ ହସ୍ତୀ ହୟ
ବାହନ ବନିତା ନୃତ୍ୟ ଗୀତେ ପ୍ରୟୋଜନ
ନାହିଁ, ସେ ସକଳ ଥାଉ ତୁମ୍ଭର ଶମନ !
ବିପୁଳ ବିଭବେ ନର ନ ପାଏ ତୃପତି
ବିଶେଷେ ସାକ୍ଷାତ ତବ ଯେବେ ଜନ୍ତୁପତି !

---

୯ - ଯମଦେବ; ୧୦ - ବ୍ରହ୍ମାଙ୍କର ପରମାୟୁ (ମଣିଷମାନଙ୍କର ଗୋଟିଏ କଳ୍ପ ବ୍ରହ୍ମାଙ୍କର ଏକ ଦିନ ମାତ୍ର ଓ ବ୍ରହ୍ମାଙ୍କର ପରମାୟୁ ଏକ ଶହ ବ୍ରହ୍ମବର୍ଷ);

ଘଟିଛି ମୋ ଭାଗ୍ୟେ, ବିତ୍ତ ମିଳିବ ନିଶ୍ଚୟ
ତବ ଯମପଣେ ମୋର ନାହିଁ ମୃତ୍ୟୁଭୟ !
ତେଣୁ ମୋର ଅନ୍ୟ ବାଞ୍ଛା ନାହିଁ ଯମରାଜ !
ଦିଅ ଆଦ୍ୟେ ବର କହ ମୃତ୍ୟୁତତ୍ତ୍ୱ ଆଜ ।
ଅଜର ଅମରଗଣ ସନ୍ନିଧାନେ ଆସି
ଜରାମୃତ୍ୟୁ ଗ୍ରସ୍ତ କିଏ ଧରାତଳବାସୀ,
ଜାଣି କ୍ଷଣସ୍ଥାୟୀ ସୁଖ ସୌଭାଗ୍ୟ ସମ୍ପତ୍ତି
ଧନଜନ ରୂପ ରାଜ୍ୟ ବାରାଙ୍ଗନା ରତି,
ବିବେକୀ ଲୋଡ଼ିବ କିପାଁ ସୁଦୀର୍ଘ ଜୀବନ
ବୁଝି ନିଜ ଲଭ୍ୟ ମହାମୁଖ୍ୟ ପ୍ରୟୋଜନ ?
ପରମ ଅଭୀଷ୍ଟ ସିଦ୍ଧି ହେବ ଯେ ଉପାୟେ
ପରଲୋକେ, ବତାଅ ସେ ତତ୍ତ୍ୱ ଯମରାୟେ !
ମରଣ ଅନ୍ତରେ ଆତ୍ମା ଥାଏ କି ନ ଥାଏ
ମର୍ତ୍ତ୍ୟେ ଲୟ ପାଏ କିବା ପରଲୋକେ ଯାଏ ?
ଚିରଦିନ ମାନବର ରହିଛି ସଂଶୟ
ଅତି ଗୁରୁ ଗହନ ଏ ନିଗୂଢ଼ ବିଷୟ ।
ଦିଅ ଉପଦେଶ, କର ସଂଶୟ ମୋଚନ
ନାହିଁ ମୃତ୍ୟୁ, ମୋର ଅନ୍ୟ ବରେ ପ୍ରୟୋଜନ ।''

ପ୍ରଥମ ବଲ୍ଲୀ ସମାପ୍ତ

## ଦ୍ୱିତୀୟ ବଲ୍ଲୀ

ଜାଣିଲେ ପରୀକ୍ଷା କରି ଏବେ ଦେବ ଯମ
ନଚିକେତା ହୃଦ-ନିଷ୍ଠା ବୈରାଗ୍ୟ ସଂଯମ ।
ଉପଯୁକ୍ତ ଶିଷ୍ୟ ବୋଲି ବୁଝି ଦଣ୍ଡଧାରୀ
ବିଦ୍ୟା ଅବିଦ୍ୟାର ତତ୍ତ୍ୱ କହିଲେ ବିସ୍ତାରି ।
''ବ୍ରହ୍ମବିଦ୍ୟା କହେ ତେବେ ଶୁଣ ନଚିକେତ,
ଯେ ନିଗମ[୧୧] ତତ୍ତ୍ୱଜ୍ଞାନ ତବ ଅଭିପ୍ରେତ ।

ଶ୍ରେୟ ତାହା ମାନବର ମୋକ୍ଷ ବିଧାୟକ
ପ୍ରେୟ ଯାହା ଲୋଡ଼େ ନର, ତହିଁରୁ ପୃଥକ ।
ଶ୍ରେୟ ପ୍ରେୟ ବେନି ଭାବେ ଆବଦ୍ଧ ମାନବ
ପ୍ରେୟ ପଥେ ଲଭଇ ସେ ସଂସାର-ବିଭବ ।
ଶ୍ରେୟ ପଥ ଅନୁସରି କାଟେ ଭବପାଶ[୧୨]
ପାଏ ପୁରୁଷାର୍ଥ ଯା'ର ନାହିଁ କେବେ ନାଶ ।
ଲୋଡ଼ଇ ଯେ ପ୍ରେୟ ପଥ ଧନ-ଦାରା-ଲୋଭେ
ହରାଇ ପରମପଦ ପଡ଼େ ଚିରକ୍ଷୋଭେ ।
ମାନବ-ସମ୍ମୁଖେ ଅଛି ଶ୍ରେୟ ପ୍ରେୟ ବେନି
ବିବେକୀ ବିଚାର କରେ ଗୁଣ ଦୋଷ ଘେନି ।
ଗୁଣ ଦୋଷ ବୁଝି କରେ କର୍ତ୍ତବ୍ୟ ନିଶ୍ଚୟ
ହଂସ ଯଥା ପିଇ କ୍ଷୀର ଛାଡ଼ିଯାଏ ପୟ ।
ପ୍ରେୟ ତେଜି ଘେନେ ଧୀର ଶ୍ରେୟକୁ ସାଦରେ
କାମବଶେ ମୂଢ଼ଜନ ପ୍ରେୟ ଅନୁସରେ ।
ଲୋଡ଼େ ମୂଢ଼ ଧନ ଜନ ଅଙ୍ଗ ଉପଚୟ[୧୩]
ଧୀର ବାଞ୍ଛେ ମୋକ୍ଷପଦ ଅନନ୍ତ ଅକ୍ଷୟ ।
ଗୃହ ଧନ ରାଜ୍ୟ ଆଦି ରମ୍ୟ ବସ୍ତୁଚୟ
ରୂପସୀ ରମଣୀ ଅବା ସୁଯୋଗ୍ୟ ତନୟ ।
ରମ୍ୟ ଲୋଭନୀୟ ଯାହା ଦେଖଇ ମାନବ
ବୁଝିଅଛ ଚିରସ୍ଥାୟୀ ନୁହେ ସେ ସରବ ।
ତେଣୁ ମୁଁ ଯାଚିଲେ ସୁଦ୍ଧା ନ କଲ ଗ୍ରହଣ
ଧନ୍ୟ ତୁମ୍ଭେ ନଚିକେତା ବଡ଼ ବିଚକ୍ଷଣ !
ଲୋଭାଇ ଯେ ମଣିମୟ ଚାରୁ ରତ୍ନହାରେ
ବହୁ ମୂଢ଼ଜନ ବୁଡ଼ିମରନ୍ତି ସଂସାରେ ।
ଦେଲେ ହେଁ ସେ ଭବପାଶ ଅତି ମନୋରମ
ନ ନେଲ, ନ ହେଲା ତହିଁ ତବ ମତିଭ୍ରମ ।
ବିଦ୍ୟା ଅବିଦ୍ୟାର ତତ୍ତ୍ୱ କଲି ଯେ ବିବୃତି
ବିପରୀତ ଅଟଇ ସେ ଉଭୟ ପ୍ରକୃତି ।

---

୧୨ - ସଂସାର ବନ୍ଧନ; ୧୩ - ବୃଦ୍ଧି/ସଂଗ୍ରହ;

ଉଜ୍ଜ୍ୱଳ ଆଲୋକ ଏକ, ଅନ୍ୟ ଘୋର ତମ,
ମୁକତି ଏକର ଫଳ, ଅନ୍ୟର ବନ୍ଧନ ।
ଜାଣିଲି ତୁମ୍ଭଙ୍କୁ ବିପ୍ର ବିଦ୍ୟା-ଅଭିଳାଷୀ
ନୁହ ନଚିକେତା, କାମସମ୍ଭୋଗ-ପ୍ରୟାସୀ ।
ବହୁ କାମ ପ୍ରଲୋଭନେ ନ ଟଳିଲା ମନ
ନ ଛାଡ଼ିଲ ଶ୍ରେୟପଥ ଧନ୍ୟ ବିଚକ୍ଷଣ !
ପରିବୃତ ହୋଇ ଘୋର ଅଜ୍ଞାନ-ଅନ୍ଧାରେ
କାମଭୋଗେ ବିମୋହିତ ସଦା ଯେ ସଂସାରେ;
ମଣନ୍ତି ନିଜକୁ ଧୀର ପଣ୍ଡିତ ପ୍ରବୀଣ
ଆଧି ବ୍ୟାଧି ଜରା ମୃତ୍ୟୁ ଦୁଃଖ ଚିରଦିନ ।
ଭୋଗନ୍ତି ସେ ଅବିବେକୀ ବହୁ ବକ୍ରଗତି
ଏକ ଅନ୍ଧ ଆନ ଅନ୍ଧେ ଚଳାଏ ଯେମତି ।
ବାଳକ ସ୍ୱଭାବ ଯେହୁ, ନୁହେ ବୁଦ୍ଧିମନ୍ତ
ମନ ଯାର ବିତ୍ତ ମୋହେ ମୋହିତ ସତତ ।
ପ୍ରମାଦଜଡ଼ିତ ମତି ଯେ ମୂଢ଼ ପାମର
ନ ବୁଝେ ମରଣ ଅନ୍ତେ ଅଛି ଲୋକାନ୍ତର ।
ଏ ସଂସାର ସବୁ, ନାହିଁ ଆନ ଏହା ପରେ
ଏ ମୂଢ଼ ବିଶ୍ୱାସ ଯେହୁ ଘୋଷଇ ଅନ୍ତରେ ।
ବାରମ୍ବାର ମୋର ବଶେ ଆସଇ ସେ ଜନ
ନ ତୁଟେ ତା ଜନ୍ମ-ଜରା-ମରଣ-ବନ୍ଧନ ।
ଆଶ୍ଚର୍ଯ୍ୟ ଏ ଆତ୍ମତତ୍ତ୍ୱ କେତେ ଲୋକେ ଜଣେ
କେବେ ବା ସୁଯୋଗ ପାଏ ଏ ତତ୍ତ୍ୱ ଶ୍ରବଣେ ।
ଶୁଣି ସୁଦ୍ଧା ଅତି ଅଳ୍ପ ବୁଝନ୍ତି ଏ ତତ୍ତ୍ୱ
ଆତ୍ମାର ଯଥାର୍ଥ ତତ୍ତ୍ୱ ପ୍ରକୃତ ମହତ୍ତ୍ୱ ।
ଆତ୍ମତତ୍ତ୍ୱ ପ୍ରକାଶକ ବକ୍ତା ବିଚକ୍ଷଣ
ଅତ୍ୟନ୍ତ ବିରଳ, ମିଳେ କାହିଁ କଦାଚନ ।
ସୁଯୋଗ୍ୟ କୁଶଳ ଶ୍ରୋତା ଜଗତେ ଦୁର୍ଲ୍ଲଭ
ଲଭି ଉପଦେଶ ପୁଣି ଆତ୍ମ ଅନୁଭବ ।
କୋଟିକେ ଗୋଟିଏ କରେ ବହୁତ ପ୍ରୟାସେ
ଯେ ତତ୍ତ୍ୱ ରହସ୍ୟ ବିପ୍ର ପୁଚ୍ଛିଲ ମୋ ପାଶେ ।

ଇତର ପ୍ରାକୃତ ବୁଦ୍ଧି ଗୁରୁ ଉପଦେଶେ
ଆତ୍ମତତ୍ତ୍ୱ ପରକାଶ ନ ହୁଏ ବିଶେଷେ ।
ଆତ୍ମତତ୍ତ୍ୱ ନାନା ଭାବେ କରି ଯେହୁ ଧ୍ୟାନ
ବ୍ରହ୍ମରୁ ଆତ୍ମାକୁ କେବେ ନ ଦେଖନ୍ତି ଆନ ।
ସେହି ବିଚକ୍ଷଣ ଗୁରୁ ଦେଲେ ଉପଦେଶ
ସଂଶୟ ହୃଦୟେ ଆଉ ନ ରହଇ ଲେଶ ।
ଜଗତର ଭେଦବୁଦ୍ଧି ପାଏ ଅବସାନ
ସର୍ବତ୍ର ପ୍ରକଟ ଏକ-ବ୍ରହ୍ମ ଆତ୍ମ-ଜ୍ଞାନ ।
ଗୁରୁ ଉପଦେଶ ବିନା ତର୍କ ଅନୁମାନେ
ଅଥବା ଇନ୍ଦ୍ରିୟଗ୍ରାହ୍ୟ ପ୍ରତ୍ୟକ୍ଷ ପ୍ରମାଣେ ।
ନୁହଇ ଏ ଆତ୍ମତତ୍ତ୍ୱ ମାନବ-ଗୋଚର
ତର୍କେ ବହୁ ଦୂର ଆତ୍ମା ସୂକ୍ଷ୍ମୁଁ ସୂକ୍ଷ୍ମତର ।
ଆତ୍ମତତ୍ତ୍ୱ ଲାଭେ ତବ ବଳିଛି ଯେ ମତି
ନୁହଇ କେବଳ ତର୍କେ ଏହାର ଉତ୍ପତି ।
ବ୍ରହ୍ମ ଆତ୍ମା ବେନି ମଧ୍ୟେ ନାହିଁ ଭେଦାଭେଦ
ଯେ ଆଚାର୍ଯ୍ୟ ଜାଣନ୍ତି ଏ ଗୂଢ଼ ସାର ବେଦ ।
ତାଙ୍କ ଉପଦେଶେ ପୂରେ ଏହି ଅଭିଳାଷ
ପୂର୍ଣ୍ଣ ଆତ୍ମଜ୍ଞାନ ଯେବେ ଅନ୍ତରେ ପ୍ରକାଶ ।
ପ୍ରିୟତମ ଧନ୍ୟ ତୁମ୍ଭେ, ଧନ୍ୟ ସତ୍ୟ ଧୃତି,
ନାନାଲୋଭେ ନ ଟଳିଲ, ତୁମ୍ଭେ ଏକା କୃତୀ ।
ନଚିକେତ ! ତୁମ୍ଭ ପରି ତତ୍ତ୍ୱ ଅଭିଳାଷେ
ଶ୍ରଦ୍ଧାବନ୍ତ ଶିଷ୍ୟ ବହୁ ଆସନ୍ତୁ ମୋ ପାଶେ ।
ସ୍ୱର୍ଗଭୋଗ ନୁହେ ନିତ୍ୟ, ଜାଣଇ ମୁଁ ଭଲେ
ଲଭଇ ମାନବ ଯାହା ନିଜ କର୍ମଫଳେ ।
ବ୍ରହ୍ମପଦ ନିତ୍ୟ ସତ୍ୟ ସୁଧ୍ରୁବ ଶାଶ୍ୱତ
ନୁହେ ସେ ଅଧ୍ରୁବ କର୍ମ ସାଧନେ ପ୍ରାପତ ।
ନଚିକେତା ଅଗ୍ନି ଯେ ମୁଁ କଲି ଆରାଧନା
ଇଷ୍ଟକବେଦୀରେ କରି ସାଦରେ ସ୍ଥାପନା ।
ବହୁତ ଅନିତ୍ୟ ଦ୍ରବ୍ୟ ଦେଇ ଉପହାର
ମିଳିଛି ସେ ଫଳେ ମତେ ଯମ ଅଧିକାର ।

ମର୍ତ୍ତ୍ୟଭୋଗ ତୁଳନାରେ ଚିର ଯମପଦ,
ଯଥାର୍ଥ ନୁହେ ଏ ନିତ୍ୟ ଶାଶ୍ୱତ ସମ୍ପଦ ।
ନଚିକେତ, ଧୈର୍ଯ୍ୟଗୁଣେ ଦୃଢ଼ କରି ମନ
ବୁଝିଅଛ ଆତ୍ମତତ୍ତ୍ୱ ତୁମ୍ଭେ ବିଚକ୍ଷଣ ।
ସମାପତ ଯହିଁ ନର କାମନାନିଚୟ
ନିଖିଳ ବିଶ୍ୱର ଯାହା ପରମ ଆଶ୍ରୟ,
ଲଭେ ନର ଆତ୍ମା ଯହିଁ ପରମ ସଂସ୍ଥିତି
ପରାହତ ଯହିଁ ଜନ୍ମ ଜରା ମୃତ୍ୟୁ ଭୀତି,
ଅଣିମାଦି ଯୁକ୍ତ ମହାବନ୍ଦନୀୟ ପଦ
ଯଜ୍ଞର ଅନନ୍ତ ଫଳେ ମିଳେ ଯେ ସମ୍ପଦ,
ଧୀର ଚିତ୍ତେ ଏ ସବୁର କରି ସୁବିଚାର
ସଂସାର ସଂଭୋଗରାଶି ଦୂରେ ପରିହର
କରିଅଛ ନଚିକେତା, ଧନ୍ୟ ମହାମନା
ଧନ୍ୟ ତୁମ୍ଭ ସ୍ଥିର ମତି, ଧୀର ଆଲୋଚନା ।
ଯେ ଆତ୍ମା ସାକ୍ଷାତ ଲାଗି ତବ ଅଭିଳାଷ
ଅତି ସୂକ୍ଷ୍ମ ସୁମହତ ସେ ଆତ୍ମା ପ୍ରକାଶ ।
ପୂରି ରହିଅଛି ଆତ୍ମା ବିଶ୍ୱ ଅଭ୍ୟନ୍ତରେ
ବିଦ୍ୟମାନ ମାନବର ହୃଦୟ-କନ୍ଦରେ ।
ବୁଦ୍ଧି ଉପଲବ୍ଧ ତେଣୁ ବୁଦ୍ଧି ଅଧିଗତ
ଅନାଦି ଆଦି କାରଣ ପୁରାଣ ଶାଶ୍ୱତ ।
ଦୁଃସାଧ କଠିନ ଅତି ଆତ୍ମଦରଶନ
ଦେଖନ୍ତି ଅଧ୍ୟାତ୍ମ ଯୋଗେ ସିଦ୍ଧ ସାଧୁଜନ ।
ଲଭି ଆତ୍ମଦରଶନ ପ୍ରତ୍ୟକ୍ଷ ପ୍ରତୀତ
ହର୍ଷ ଶୋକ ତେଜି ଧୀର ହୁଏ ଦ୍ୱନ୍ଦ୍ୱାତୀତ ।
ଗୁରୁ ମୁଖୁଁ ଉପଦେଶ ଶୁଣି ମର୍ତ୍ତ୍ୟ ନର
କରଇ ଆତ୍ମାର ସୂକ୍ଷ୍ମ ସ୍ୱରୂପ ଗୋଚର ।
ଶରୀରାଦି ଜଡ଼ବସ୍ତୁଁ ଆତ୍ମା ବିଲକ୍ଷଣ
ମହାମୋଦଦାୟୀ ବିଶ୍ୱଜଗତ ଧାରଣ ।
ଆତ୍ମାର ସ୍ୱରୂପ ତତ୍ତ୍ୱ ବୁଝି ଜ୍ଞାନବନ୍ତ
ଲଭଇ ପରମ ସୁଖ ଅମୃତ ଅନନ୍ତ ।

ନଚିକେତ,ପରିହରି କାମନାନିଚୟ
ବ୍ରହ୍ମଜ୍ଞାନେ ଅଧିକାରୀ ତୁମ୍ଭେ ନିଃସଂଶୟ ।
ଫିଟିଅଛି ତୁମ୍ଭ ଲାଗି ବ୍ରହ୍ମପୁର ଦ୍ୱାର
ମୋକ୍ଷ ଅଭିମୁଖୀ ତୁମ୍ଭେ କରେ ମୁଁ ବିଚାର ।''
ଶୁଣି ଯମରାଜା ବାଣୀ ବୋଲେ ବିପ୍ରବର,
''କରିଛ ଅନ୍ତକ, ମୋର ପ୍ରଶଂସା ବିସ୍ତର ।
ଯଥାର୍ଥରେ ଯୋଗ୍ୟ ବୋଲି ମତେ ଯେବେ ମଣ
ଯଥାର୍ଥ ମୋ ପ୍ରତି ଦେବ ଯେବେ ସୁପ୍ରସନ୍ନ,
କହ ତେବେ ମତେ ଆତ୍ମତତ୍ତ୍ୱ ବିବରଣ
ସର୍ବୋପର ବୋଲି ଯାହା ଜାଣନ୍ତି ଆପଣ ।
ଧର୍ମାଧର୍ମ ବୋଲି ଯାହା ଶାସ୍ତ୍ରେ ନିରୂପିତ
ଅଟଇ ଯେ ଆତ୍ମତତ୍ତ୍ୱ ତହିଁରୁ ଅତୀତ,
କାର୍ଯ୍ୟ-କାରଣରୁ ଯେହୁ ତତ୍ତ୍ୱ ବିଲକ୍ଷଣ[୧୪]
ଭୂତ ଭବ୍ୟ ବର୍ତ୍ତମାନୁଁ ଯେହୁ, ପୁଣି ଅନ୍ୟ,
ଯହିଁ ଅତିକ୍ରାନ୍ତ ଦେଶ କାଳ ବ୍ୟବହାର
କହ ମୃତ୍ୟୁଦେବ, ସେହି ଆତ୍ମତତ୍ତ୍ୱ ସାର ।''
ବୋଇଲେ ଗମ୍ଭୀରେ ଯମ ଏସନ ଉତ୍ତରେ,
''ଚାରି ବେଦ ଗାଏ ଉଚ୍ଚେ ଦୃଢ଼ ସମସ୍ୱରେ ।
ଯେ ପଦ ଗରିମା, ଜାଣ ଏକାନ୍ତ ପ୍ରାପତି,
ବେଦମତେ ମାନବର ମୁଖ୍ୟତମ ଗତି ।
ତପ ବ୍ରହ୍ମଚର୍ଯ୍ୟ ଆଦି ବିବିଧ ସାଧନ
ଯେ ପଦ ପ୍ରାପତି ଆଶେ ଆଚରନ୍ତି ଜନ ।
ସଂକ୍ଷେପେ କହୁଛି ଶୁଣ – ସେ ପଦ 'ଓଁ' କାର,
ଓଁକାର ସାକ୍ଷାତେ ବ୍ରହ୍ମ, ବ୍ରହ୍ମ ପ୍ରତ୍ୟାକାର[୧୫] ।
ଯେ ଉତ୍ତମ ଅଧିକାରୀ ଓଁକାର ସ୍ମରଣେ
ବ୍ରହ୍ମର ପ୍ରତ୍ୟକ୍ଷ ରୂପ ଆପଣାକୁ ମଣେ ।
ଓଁକାରରେ ବ୍ରହ୍ମରୂପ କରି ଆରୋପଣ
ଅଳ୍ପ ଅଧିକାରୀ ଜନ କରିବ ଭଜନ ।
ଓଁକାର ପରମ ବ୍ରହ୍ମ, ଓଁକାର ଅପର,
ବୁଝିଣ ଏ ତତ୍ତ୍ୱ ଯେହୁ ପୂଜେ ଏ ଅକ୍ଷର,

୧୪ - ସ୍ୱତନ୍ତ୍ର/ଅସାଧାରଣ; ୧୫ - ପ୍ରତିରୂପ;

ପୂରଣ ହୁଅଇ ତାର କାମନାନିଚୟ
ଥାଏ ନାହିଁ ପୁଣି ଜନ୍ମ-ଜରା-ମୃତ୍ୟୁଭୟ ।
ଅପର ପୂଜନେ ନର ଯାଏ ବ୍ରହ୍ମଲୋକେ
ପଡ଼େ ନାହିଁ ଆଉ କେବେ ଭବ-ଦୁଃଖଶୋକେ ।
ପର ଉପାସନେ ହୁଏ ସ୍ୱୟଂ ବ୍ରହ୍ମରୂପ
ଛିଣ୍ଡେ ଯେବେ ମୋହଜାଲ, ତୁଟେ ତମସ୍ତୂପ ।
ବ୍ରହ୍ମପ୍ରାପ୍ତି ସାଧନାର ମୁଖ୍ୟ ଆଲମ୍ବନ
ଓଁକାରେ ଗଣଇ ମନ ସତତ ଯେ ଜନ ।
ହୁଏ ବ୍ରହ୍ମରୂପ ଲଭି ପୂର୍ଣ୍ଣ ବ୍ରହ୍ମଜ୍ଞାନ
କିବା ବ୍ରହ୍ମଲୋକ ପାଏ ସମ ପୂଜ୍ୟସ୍ଥାନ ।
ଆତ୍ମଜ୍ଞାନ ଲଭେ ଯେବେ ବିଶ୍ୱ ବ୍ରହ୍ମମୟ,
ନାହିଁ ଜନ୍ମ, ନାହିଁ ମୃତ୍ୟୁ, ନାହିଁ ବୃଦ୍ଧି-କ୍ଷୟ ।
ନାହିଁ ଅନ୍ୟ ହେତୁ ଯହୁଁ ଆତ୍ମାର ସମ୍ଭବ
ନୁହଇ ଆତ୍ମାରୁ ଅନ୍ୟ ବସ୍ତୁ ସମୁଦ୍ଭବ ।
ଜନ୍ମବିରହିତ ଆତ୍ମା ନିତ୍ୟ ସନାତନ
ନିର୍ବିକାର ଶାଶ୍ୱତ ସେ ସର୍ବଦା ନୂତନ ।
ବିଶ୍ୱ ବସ୍ତୁ ରନ୍ଧ୍ରେ ରନ୍ଧ୍ରେ ଆତ୍ମା ସୁପ୍ରକାଶ
ଶରୀର ବିନାଶେ ଆତ୍ମା ଯାଏ ନାହିଁ ନାଶ ।
ଆତ୍ମଜ୍ଞାନହୀନ ଆତ୍ମା ସ୍ୱରୂପ ନ ଜାଣେ
ଜଡ଼ ଶରୀରକୁ ଆତ୍ମାରୂପେ ପରମାଣେ,
ଏ ସମ ବିମୂଢ଼ ଯେବେ ଆନ ମୂଢ଼େ ହାଣେ
ଏକ 'ହତ୍ୟା କଲି' ଆନ 'ହତ ହେଲି' ଜାଣେ ।
ଆପଣାକୁ ନ ଚିହ୍ନନ୍ତି ସେ ବେନି ଅଜ୍ଞାନେ,
ହୁଏ ନାହିଁ ଆତ୍ମା ହତ କିବା ନାହିଁ ହାଣେ ।
ସୂକ୍ଷ୍ମତମ ପରମାଣୁ ତହିଁ ସୂକ୍ଷ୍ମାକାର
ବୃହତ୍ତମୁଁ ବୃହତ୍ତମ ଆତ୍ମାର ବିସ୍ତାର ।
ପ୍ରାଣିଗଣ ହୃଦେ ଆତ୍ମା ନିହିତ ନିୟତ
ଗିରି ଦରି[୧୬] ଅଭ୍ୟନ୍ତରେ ହର୍ଯ୍ୟକ୍ଷ[୧୭] ଯେମନ୍ତ ।

---

୧୬ - ଗୁମ୍ଫା/ଗୁହା; ୧୭ - ସିଂହ;

କାମ ତ୍ୟାଗେ ପରିପୂତ ଯାହାର ଅନ୍ତର
ଦୁଃଖ ଶୋକ ଅତିକ୍ରମ କରିଛି ଯେ ନର,
ଆତ୍ମାର ମହିମା ସେହୁ ଦେଖେ, ଉପଭୋଗେ
ପ୍ରସନ୍ନ ଇନ୍ଦ୍ରିୟ ମନ ଶୁଦ୍ଧ ବୁଦ୍ଧିଯୋଗେ ।
ଅଚଳ ଅସ୍ଥିର ଆତ୍ମା କିନ୍ତୁ ଭ୍ରମେ ଦୂରେ
କାର୍ଯ୍ୟହୀନ ଗତିହୀନ ଯାଏ ତିନି ପୁରେ ।
ସ୍ଥିତି ଗତି ଆଦି ନାନା ଭାବ ବିପରୀତ
ଏକାଧାରେ ଏକାବେଳେ ଯହିଁ ସମନ୍ୱିତ ।
ସେ ଆତ୍ମାର ତତ୍ତ୍ୱ ଅତି ଅଭେଦ୍ୟ ଦୁସ୍ତର
ମୋ ବିନା ନୁହଇ ଅନ୍ୟ କାହାର ଗୋଚର ।
ଅନିତ୍ୟ ନଶ୍ୱର ପ୍ରାଣୀ ଦେହେ ବିରାଜିତ
ନାହିଁ ରୂପ ନାହିଁ ତନୁ ବିକାର ବର୍ଜିତ ।
ଦେଶକାଳ ଗୁଣେ ନୁହେ ଆତ୍ମା ପରିଚ୍ଛିନ୍ନ[୧୮]
ସର୍ବବ୍ୟାପୀ ସର୍ବେଶ୍ୱର ସର୍ବାପର ଭିନ୍ନ ।
ବୁଝେ ଏହୁ ଆତ୍ମତତ୍ତ୍ୱ ସୁଧୀର ସୁଜ୍ଞାନୀ
ତରେ ଶୋକ, ଆପଣାକୁ ଆତ୍ମା ବୋଲି ଜାଣି ।
ମିଳେ ନାହିଁ ଆତ୍ମଲାଭ ଶାସ୍ତ୍ର ଅଧ୍ୟୟନେ
ଶାସ୍ତ୍ରାର୍ଥ ଶ୍ରବଣେ ଅବା କେବଳ ଧାରଣେ ।
ଆତ୍ମାର ସ୍ୱରୂପ ଜ୍ଞାନେ କରେ ଯେ ସାଧନା
ଦୂରେ ପରିହରି ହୃଦୁଁ ସକଳ କାମନା;
ନିଜ ପରମାର୍ଥ ରୂପ ସେ ସାଧକ ପାଶେ
ମୋହ ଅନ୍ଧକାର ନାଶି ଆତ୍ମା ପରକାଶେ;
ହୁଏ ତାର ଆତ୍ମା ଲାଭ, ଆପଣାକୁ ଆପେ
ଦେଖାଇ ସେ ଆତ୍ମାରାମ, ନ ପଡ଼େ ତ୍ରିତାପେ ।
ଦୁଶ୍ଚରିତ୍ର ପାପପଥୁଁ ନୁହେ ଯେ ବିରତ
ଶିକ୍ଷାବଳେ ନୁହେ ଯାର ଇନ୍ଦ୍ରିୟ ସଂଯତ ।
ନୁହେ ଯାର ଚିତ୍ତ ଦୃଢ଼ ଏକାଗ୍ର ନିଶ୍ଚଳ
ତେଜି ନାହିଁ ମନ ଯାର ବିଷୟ ପଟଳ,

---
୧୮ - ବିଭକ୍ତ/ସୀମାବଦ୍ଧ;

ବୈରାଗ୍ୟ ନିର୍ମଳ ଶାନ୍ତ ହୋଇ ନାହିଁ ମତି
ହୁଏ ନାହିଁ ତାର କେବେ ଆତ୍ମା ପରାପତି ।
ନିତ୍ୟ ସମାହିତ ଶାନ୍ତ ସୁକୃତ ସଂଯତ
ଲଭେ ବ୍ରହ୍ମଜ୍ଞାନ ବଳେ ଗୂଢ଼ ଆତ୍ମତତ୍ତ୍ୱ ।
ବ୍ରାହ୍ମଣ କ୍ଷତ୍ରିୟ ଆଦି ଉତ୍ତମ ମଧମ
ଅଛନ୍ତି ଜଗତେ ଯେତେ ସ୍ଥାବର ଜଙ୍ଗମ ।
ଆତ୍ମାର ଆହାର ସର୍ବେ ଆତ୍ମାର ଅଧୀନ
ଆତ୍ମା ଅଭ୍ୟନ୍ତରେ ଜାତ ଆତ୍ମାରେ ବିଲୀନ ।
ନିଜେ ମୃତ୍ୟୁ ଭଜେ ଯେହୁ ସକଳ ବିନାଶେ
ଭଜେ ମୃତ୍ୟୁ ପଡ଼େ ଯେବେ ଆତ୍ମାର ଗରାସେ ।
ଆତ୍ମା ଅନ୍ତର୍ଭୂତ ସୃଷ୍ଟି ସଂସ୍ଥିତି ପ୍ରଳୟ
ଲୋକେ ଯାହା ବିପର୍ଯ୍ୟୟ ନୁହେ ତା ବିଲୟ ।
ଏସନ ସ୍ୱରୂପ ଆତ୍ମା ଯହିଁ ବିଦ୍ୟମାନ
ଦୁଃସାଧ୍ୟ ସାଧନେ ଲଭ୍ୟ ସେ ନିଗୂଢ଼ ସ୍ଥାନ ।
ଇତର ଜନର ନୁହେ ସହଜ ଗୋଚର
ନଚିକେତ, ଜାଣି ଏହା ମନେ ହେତୁ କର ।''

ଦ୍ୱିତୀୟ ବଲ୍ଲୀ ସମାପ୍ତ ।

## ତୃତୀୟ ବଲ୍ଲୀ

''ଶୁଣ ନଚିକେତ, ଜୀବ ପରମ ପ୍ରଭେଦ
ଭେଦିଲେ ଯେ ତତ୍ତ୍ୱ ଆଉ ନ ରହିବ ଖେଦ ।
ପରମାତ୍ମା ଜୀବଆତ୍ମା ଏକତ୍ର ଉଭୟେ
ପ୍ରବିଷ୍ଟ ମାନବ ବୁଦ୍ଧି-ଗୂଢ଼-ଗୁହାଶୟେ ।
ଉନ୍ମୁକ୍ତ ହୃଦୟାକାଶେ ବେନିଙ୍କ ପ୍ରକାଶ
ଏକ ଭୁଞ୍ଜେ, ଆନ କରେ ଚିର ଉପବାସ ।
ସୁକୃତ ଦୁଷ୍କୃତ ଆଦି କର୍ମ ଫଳାଫଳ
ଦେହେ ଜୀବ ଭୋଗେ ଦେଖେ ପରମ କେବଳ ।
ଅନ୍ଧକାର ଜୀବ; କିନ୍ତୁ ଆଲୋକ ପରମ
ବ୍ରହ୍ମଜ୍ଞାନୀ ନୁହନ୍ତି ଏ ଭେଦାଭେଦ ମର୍ମ ।

ଆବର ଯେ ପଞ୍ଚଅଗ୍ନି[୧୯] କରନ୍ତି ଅର୍ଚ୍ଚନା
କରନ୍ତି ଯେ ନଚିକେତା ଅଗ୍ନି ଆରାଧନା,
ସେ ସକଳ ଉପାସକ କର୍ମନିଷ୍ଠ ଜନ
ବଖାଣନ୍ତି ପରାପର ପ୍ରଭେଦ ଏସନ ।
ପରାପର ବ୍ରହ୍ମଜ୍ଞାନ ଦୁଃସାଧ୍ୟ ନିଶ୍ଚିତ
ନୁହେ କିନ୍ତୁ ମାନବର ସାଧନା ଅତୀତ ।
ଆରାଧି ଯେ ନଚିକେତା ଅଗ୍ନି ଯଜମାନ
ଦୁଃଖ-ସିନ୍ଧୁପାରେ ଲଭେ ମହାପୁଣ୍ୟ ସ୍ଥାନ ।
ସେ ଅଗ୍ନିର ତତ୍ତ୍ୱ ବୁଝି ବିହିତ ଚୟନେ
ସମର୍ଥ ସକଳେ ଆମ୍ଭେ ରଖ ଏହା ମନେ ।
ଭବାର୍ଣ୍ଣବ ଆର ପାରେ ନାହିଁ ଯହିଁ ଭୟ
ଯାଏ ଜ୍ଞାନୀଜନ ଲଭି ଯେ ବ୍ରହ୍ମ ଆଶ୍ରୟ ।
ସେ ପର ଅକ୍ଷର ବ୍ରହ୍ମତତ୍ତ୍ୱ ଅଭିଜ୍ଞାନେ[୨୦]
ସକ୍ଷମ ହେ ନଚିକେତ, ସର୍ବେ ଆମ୍ଭେମାନେ ।
ଜୀବାତ୍ମା ଅପର ବ୍ରହ୍ମେ ମିଳେ କର୍ମଫଳେ
ଲଭଇ ପରମବ୍ରହ୍ମ ଜ୍ଞାନୀ ଜ୍ଞାନବଳେ ।
ଏ ନର ଶରୀର ଏକ ଅପୂର୍ବ ସ୍ୟନ୍ଦନ
ଚକ୍ଷୁ ଆଦି ପଞ୍ଚ ଅଶ୍ୱ ଏଥିରେ ବାହନ ।
ଜୀବ ରଥୀ, ପୁଣି ବୁଦ୍ଧି ସାରଥି ଏ ରଥେ
ଦଉଡ଼ନ୍ତି ଅଶ୍ୱେ ରୂପ ରସ ଆଦି ପଥେ ।
ମନ-ଲଗାମକୁ ଟାଣି ସନ୍ତତ ସାରଥି
ନିରୋଧେ ଚଞ୍ଚଳ ଅଶ୍ୱ ବିଶୃଙ୍ଖଳ ଗତି ।
ଦେହ ମନ ଇନ୍ଦ୍ରିୟାଦି ଉପାଧିଜଡ଼ିତ
ଜୀବ ଭୋଗେ ସୁଖ ଦୁଃଖ କହନ୍ତି ପଣ୍ଡିତ ।
ସାରଥି ଲଗାମ ସଦା ନ ଧଇଲେ କସି
ଅଳପେ କୋହଳ ଯେବେ ହୁଏ ମନ-ରସି,
ଦୁର୍ଦ୍ଦାନ୍ତ ତୁରଙ୍ଗ ସମ ଇନ୍ଦ୍ରିୟ ସକଳ
ନ ରହି ସାରଥି ବଶେ ହୁଏ ଉଚ୍ଛୃଙ୍ଖଳ ।

---

୧୯- ବେଦରେ କୁହାଯାଇଥିବା ପାଞ୍ଚଗୋଟି ଯଜ୍ଞ-ଅଗ୍ନି : ଅନ୍ୱାହାର୍ଯ୍ୟ, ଗାର୍ହପତ୍ୟ ବା ପଚନ, ଆହବନୀୟ, ସଭ୍ୟ ଓ ଅବସଥ୍ୟ; ୨୦ - ଜ୍ଞାନରେ/ପ୍ରମାଣର ଉପାଦାନ ଭାବରେ/ସନ୍ତକ ହେବାରେ;

ହିତାହିତ ଜ୍ଞାନ ହଜେ ଘଟିଲେ ଏ ଗତି
ଅଶ୍ୱ ସଂଚାଳନେ ମୂଢ଼ ଯେସନ ସାରଥି ।
ସେହି ଜ୍ଞାନବନ୍ତ ଯାର ସୁସଂଯତ ମତି
ବୁଝଇ ସେହି ତା ହିତ ସୁଗତି ଦୁର୍ଗତି ।
ଇନ୍ଦ୍ରିୟ ସକଳ ତାର ସଦା ନିଜ ବଶ
ପ୍ରବୀଣ ସାରଥି ବଶେ ଯଥା ଶିଷ୍ଟ ଅଶ୍ୱ ।
ନୁହେ ଯେହୁ ସୁବିବେକ ଶୁଚି ଜ୍ଞାନବନ୍ତ
ନୁହେ ମନ ଯାର ସଦା ବୁଦ୍ଧି ଅଧିଗତ,
ସେ ପରମ ପଦ ପ୍ରାପ୍ତି ନ ହୁଏ ତାହାର
ଜନ୍ମ-ମୃତ୍ୟୁମୟ ଭବେ ଆସେ ବାରବାର ।
ଜ୍ଞାନବନ୍ତ ଶୁଚିବନ୍ତ ସଂଯତ ମାନସ
ଅନ୍ତରୁ ତୁଟିଛି ଯାର ଅଜ୍ଞାନ-କଲ୍ମଷ,
ସେ ପରମପଦ ଏକା ପାଏ ସେହି ରଥୀ
ନାହିଁ ଯହୁଁ ଜନ୍ମାନ୍ତର ଅବା ପ୍ରତ୍ୟାଗତି ।
ସୁବିବେକ ବୁଦ୍ଧି ଯାର ସାରଥି ନିରତ
ମାନସ ପ୍ରଗ୍ରହ[୨୧] ଯାର ଆପଣା ଆୟତ୍ତ,
ସେହି ଏକା ଭବ-ପଥ ସୀମା ପାରେ ଯାଏ
ପରମାତ୍ମା ବିଷ୍ଣୁପଦ[୨୨] ସେହି ଏକା ପାଏ ।
ରୂପ ରସ ଆଦି ଯେତେ ସମ୍ଭୋଗ୍ୟ ବିଷୟ
ପ୍ରକାଶ ହୁଅନ୍ତି ଲଭି ଇନ୍ଦ୍ରିୟ ଆଶ୍ରୟ ।
ଇନ୍ଦ୍ରିୟର ଅର୍ଥ ଯେଣୁ ବିଷୟ ନିଚୟ
ସେ ସର୍ବେ ଇନ୍ଦ୍ରିୟୁଁ ବଳି ଶ୍ରେଷ୍ଠ ଅତିଶୟ ।
ଇନ୍ଦ୍ରିୟ ବିଷୟ ରାଶି ମାନସ ଗୋଚର
ଇନ୍ଦ୍ରିୟାର୍ଥୁଁ ବଳି ତେଣୁ ମନ ଶ୍ରେଷ୍ଠତର ।
ଇନ୍ଦ୍ରିୟ ସାହାଯ୍ୟେ ମନ ଘେନଇ ବିଷୟ
ବିଷୟ ସମ୍ଭୋଗେ କିନ୍ତୁ ନାହିଁ ତା ନିଶ୍ଚୟ ।
ବୁଦ୍ଧିପାଶେ ମନ କରେ ବିଷୟ ବହନ
ଭଲ ମନ୍ଦ ବୁଝି ବୁଦ୍ଧି କରେ ତା ଗ୍ରହଣ ।

---

୨୧ - ଲଗାମ; ୨୨ - ଆକାଶ / ଶୂନ୍ୟ / ପଦ୍ମ

ମନ ତହୁଁ ବୁଦ୍ଧି ତେଣୁ ଅଧିକ ପ୍ରଧାନ
ବୁଦ୍ଧି ପରେ ଦେହସ୍ୱାମୀ ଜୀବ ବିଦ୍ୟମାନ ।
ଜୀବାତ୍ମା ଇନ୍ଦ୍ରିୟ ଆଦି ସର୍ବୋପରି ସାର
ମନ ବୁଦ୍ଧି ଇନ୍ଦ୍ରିୟାଦି ଯାର ପରିବାର ।
ହିରଣ୍ୟଗର୍ଭ ସେ ସର୍ବ ବୁଦ୍ଧି ମୂଳୀଭୂତ
ମହତ ଜୀବାତ୍ମା ଆଦ୍ୟ ପ୍ରକୃତି ସମ୍ଭୂତ ।
ମହତ ଜୀବାତ୍ମା ତହୁଁ ବଳି ମହତ୍ତର
ପ୍ରକୃତି ଯାହାର ନାମ ରୂପ ଅଗୋଚର ।
ଅବ୍ୟକ୍ତ ପ୍ରକୃତି ନିତ୍ୟ ରହିଛି ଜଡ଼ିତ
ଓତପ୍ରୋତ ଭାବେ ପୂର୍ଣ୍ଣ ପରାତ୍ମା ସହିତ ।
ସୂକ୍ଷ୍ମ ବଟବୀଜ ଦେହେ ପ୍ରଚ୍ଛନ୍ନେ ଯେ ମତି
ନିହିତ ବିଶାଳ ଦ୍ରୁମ ଅଦ୍ଭୁତ ଶକତି ।
ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ପ୍ରଧାନ
ପରାତ୍ମା ଚିନ୍ମୟ ରୂପ ଅନାଦି ନିଦାନ ।
ପୁରୁଷ ଉପରେ ଆଉ ନାହିଁ ପରସ୍ଥାନ
ସୂକ୍ଷ୍ମତ୍ୱ ମହତ୍ତ୍ୱ ଆତ୍ମଭାବ ଅବସାନ ।
ଏହାହିଁ ସଂସାରୀ ଜୀବ ପରମ ଆଶ୍ରୟ
ନାହିଁ ଯହୁଁ କେବେ ଆଉ ପ୍ରତ୍ୟାଗମ ଭୟ ।
ପରମାତ୍ମା ସର୍ବଭୂତେ ଛନ୍ତି ବିଦ୍ୟମାନ
ଭୂଗର୍ଭେ ଉଜ୍ଜ୍ୱଳ-ରତ୍ନ ସମ୍ପଦ ସମାନ ।
ମୃତ୍ତିକାର ଆବରଣେ ଥିଲେ ରତ୍ନରାଶି-
ନ ଦିଶଇ ଜନନେତ୍ରେ ଯେସନେ ଉଭାସି,
ଇନ୍ଦ୍ରିୟ ବିଷୟ ମୋହେ ଆବୃତ ତେସନ
ନ ଦେଖନ୍ତି ପରମାତ୍ମା ରୂପ ସର୍ବଜନ ।
ସୂକ୍ଷ୍ମୁଁ ସୂକ୍ଷ୍ମତର, ତହୁଁ କ୍ରମେ ସୂକ୍ଷ୍ମତମ
ଇନ୍ଦ୍ରିୟରୁ କ୍ରମେ ଯେହୁ ଭେଦନ୍ତି ପରମ ।
ସେହି ଯୋଗସିଦ୍ଧ ଧୀର ସୂକ୍ଷ୍ମଦର୍ଶୀ ଜନ
ସୂକ୍ଷ୍ମ ବୁଦ୍ଧି ବଳେ ଆତ୍ମା କରନ୍ତି ଦର୍ଶନ ।
ଇନ୍ଦ୍ରିୟ, ଇନ୍ଦ୍ରିୟ-ଅର୍ଥ, ମନ, ବୁଦ୍ଧି, ଜୀବ
ଅବ୍ୟକ୍ତ ପୁରୁଷ କ୍ରମେ ସୂକ୍ଷ୍ମତ୍ୱ ବୁଝିବ ।

ଏକୁଁ ଏକ ସୂକ୍ଷ୍ମତର ଶେଷେ ସୂକ୍ଷ୍ମତମ
ପୁରୁଷ ଅନ୍ତିମ ନିଷ୍ଠା ପ୍ରଧାନ ପରମ ।
ସ୍ଥୂଳର କାରଣ ସୂକ୍ଷ୍ମ ସୂକ୍ଷ୍ମୁଁ ସ୍ଥୂଳ ଜାତ
ଏ ନିୟମେ ହୁଏ ସୃଷ୍ଟିତତ୍ତ୍ୱ ପ୍ରତିଭାତ ।
ବୁଝି ପ୍ରାଜ୍ଞଜନ ଏହି ସୃଷ୍ଟି ତତ୍ତ୍ୱଗତି
ସାଧିଲେ ସଂଯମ ହୁଏ ପରମ ପ୍ରାପତି ।
ଇନ୍ଦ୍ରିୟ ସକଳ କର ମନ ଅଧିଗତ
ବୁଦ୍ଧି ସୁଶାସନେ ମନ ରଖିବ ସଂଯତ ।
ମହତ ହିରଣ୍ୟଗର୍ଭ ଜୀବାତ୍ମା ଶାସନେ
ନିବେଶିବ ବୁଦ୍ଧି ଯଥା ବିହିତ ନିୟମେ ।
ନିବେଶିବ ଅନ୍ତେ ପୁଣି ଶୁଦ୍ଧ ଆତ୍ମଜ୍ଞାନେ
ଶାନ୍ତ ପରମାତ୍ମା, ତହିଁ ଯତି ଯୋଗଧ୍ୟାନେ ।
ପ୍ରକାଶିବ ତେବେ ଶୁଦ୍ଧ ଜ୍ଞାନ ସୁନିର୍ମଳ
ପବିତ୍ର ଦିଶିବ ଏକ ଆତ୍ମା ଜଳଜଳ ।
ତୁଟିବ ଅଶେଷ ମୋହ ଫୁଟିବ ସଦ୍‌ଜ୍ଞାନ
ହେବ ନାମରୂପ କ୍ରିୟା ଚିର ତିରୋଧାନ ।
ଉଠ ହେ ମୁମୁକ୍ଷୁ[୨୩] ତେବେ ଜାଗ ହେ ସତ୍ୱର
ଚିର ଘୋର ମୋହନିଦ୍ରା ଦୂରେ ପରିହର ।
ବରେଣ୍ୟ ବ୍ରହ୍ମଜ୍ଞ ଗୁରୁ ପଦାଶ୍ରୟେ ଆସି
ପ୍ରବୁଦ୍ଧ ଜାଗ୍ରତ ହୁଅ ହେ ମୋକ୍ଷପ୍ରୟାସି !
କହନ୍ତି ତ୍ରିକାଳଦର୍ଶୀ କ୍ଷୁରଧାର ସମ
ବ୍ରହ୍ମତତ୍ତ୍ୱ ମାର୍ଗ ଏହୁ ଶାଣିତ ଦୁର୍ଗମ ।
ସୁଦୃଢ଼ ସାଧନା ବିନା ଅସାଧ ଅତ୍ୟୟ[୨୪]
ଉଠ ନର ଜାଗ ଲାଗ ସିଦ୍ଧି ସୁନିଶ୍ଚୟ ।
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ବିବର୍ଜିତ
ଇନ୍ଦ୍ରିୟ ଅଜ୍ଞେୟ ନିତ୍ୟ ଆଦ୍ୟନ୍ତ ରହିତ,
ନାହିଁ ଯାର ଜନ୍ମ ନାଶ, ଚିର ନିରାମୟ
ନାହିଁ ରୂପାନ୍ତର, ଧ୍ରୁବ ଅବ୍ୟୟ ଅକ୍ଷୟ ।

---

୨୩ - ମୋକ୍ଷ ପାଇଁ ଇଚ୍ଛା କରୁଥିବା ବ୍ୟକ୍ତି/ମୋକ୍ଷ-ପ୍ରୟାସୀ; ୨୪ - ମୃତ୍ୟୁ/ବିପଦ;

ମହତ ବୁଦ୍ଧିରୁ ଯେହୁ ଭିନ୍ନ ମହତ୍ତର
ଉଭାସେ ଯେ ସାକ୍ଷୀରୂପେ ନିଖିଳ ଅନ୍ତର ।
ଶ୍ରବଣ ମନନ ଧ୍ୟାନେ କରି ସୁନିଶ୍ଚୟ
ଦେଖିଲେ ଥରେ ସେ ବ୍ରହ୍ମସ୍ୱରୂପ ଚିନ୍ମୟ ।
ମୃତ୍ୟୁ ମୁଖୁଁ ଲଭେ ଜୀବ ଚିର ଅବ୍ୟାହତି
ଅବିଦ୍ୟା ପଟଳ ତୁଟେ ମିଳେ ମୋକ୍ଷଗତି ।''
ଋଷିପୁତ୍ର ନଚିକେତେ ଅନ୍ତକ କଥିତ
ସୁପବିତ୍ର ସନାତନ ଏ ଚାରୁ ଚରିତ ।
ଯେ ମେଧାବୀ ଶ୍ରଦ୍ଧାଯୁକ୍ତେ ଶୁଣେ ବା ଶୁଣାଏ
ବ୍ରହ୍ମରୂପେ ବ୍ରହ୍ମଲୋକେ ନିତ୍ୟ ପୂଜା ପାଏ ।
ପରମ ନିଗୂଢ଼ ଏହୁ ତତ୍ତ୍ୱ ସୁମହତ
ଶ୍ରଦ୍ଧାରେ ଯେ ଜନ ମନ କରି ସୁସଂଯତ,
ବ୍ରାହ୍ମଣ ସମାଜେ ପଢ଼ି କରାଏ ବ୍ୟାଖ୍ୟାନ
ଶ୍ରାଦ୍ଧକାଳେ କହେ ବା ଏ ପୁଣ୍ୟ ଉପାଖ୍ୟାନ,
ସେ ସୁକୃତେ ସୁବିସ୍ତର ଫଳ ହୁଏ ପ୍ରାପ୍ତ
କଠୋପନିଷଦ ଆଦ୍ୟ ଅଧ୍ୟାୟ ସମାପ୍ତ ।

ପ୍ରଥମ ଅଧ୍ୟାୟ ତୃତୀୟ ବଲ୍ଲୀ ସମାପ୍ତ ।

## ଦ୍ୱିତୀୟ ଅଧ୍ୟାୟ

### ପ୍ରଥମ ବଲ୍ଲୀ

ସ୍ୱୟମ୍ଭୁ[୨୫] ଯେକାଳେ କଲେ ଜଗତ କଳ୍ପନା
ବାହ୍ୟ ଅଭିମୁଖେ କଲେ ଇନ୍ଦ୍ରିୟ ରଚନା ।
ହୋଇଛି ଇନ୍ଦ୍ରିୟଗଣ ପ୍ରଥମୁ ଆହତ
ତେଣୁ ବାହ୍ୟ ବସ୍ତୁମୁଖେ ଧାଏଁ ଅବିରତ ।
ବାହ୍ୟ ବିଷୟକୁ ଜୀବ ଦେଖେ ଅନୁକ୍ଷଣ
ନ ଦେଖଇ ଅନ୍ତରାତ୍ମା ଫିଟାଇ ନୟନ ।
ଅମୃତତ୍ୱ ଅଭିଳାଷୀ କେହି ଅବା ଧୀର
ବିଷୟୁ ଫେରାଇ ନେତ୍ର କରି ମନ ସ୍ଥିର,

୨୫ - ବ୍ରହ୍ମା

ନିରୋଧି ଇନ୍ଦ୍ରିୟଗଣେ ହୋଇ ଏକ ଲୟ
ଦେଖନ୍ତି ଅନ୍ତରେ ଆତ୍ମା ଚିଦାନନ୍ଦମୟ ।
ଚପଳ ବାଳକମତି ଅବିବେକୀ ନରେ
ଅନୁରାଗ ପ୍ରକାଶନ୍ତି ବାହ୍ୟ ବିଷୟରେ ।
ସୁଖଶଯ୍ୟା ଧନ ମାନ ବନିତା ବିଳାସ
ଏ ଆଦି ଅନିତ୍ୟ କାମେ କରନ୍ତି ପ୍ରୟାସ ।
ସୁବିସ୍ତୀର୍ଣ୍ଣ ମୃତ୍ୟୁପାଶେ ହୁଅନ୍ତି ସେ ବନ୍ଦୀ
ଅବିଦ୍ୟା-ଅନ୍ଧାରେ ବୃଥା କାମକର୍ମେ ଛନ୍ଦି ।
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଯନ୍ତ୍ରଣା ଅପାର
ଲଭନ୍ତି ଏ ମର୍ତ୍ତ୍ୟଧାମେ ଆସି ବାରମ୍ବାର ।
ବିବେକୀ ପୁରୁଷ ତେଣୁ ତେଜି ଭୋଗରାଶି
ଅମୃତତ୍ୱ ଲାଗି ହୁଏ ଏକାନ୍ତ ପ୍ରୟାସୀ ।
ଜାଣନ୍ତି ସେ ସ୍ୱର୍ଗେ ନାହିଁ ପ୍ରକୃତ ଅମୃତ
ପୁଣ୍ୟକ୍ଷୟେ ସ୍ୱର୍ଗୁ ଜୀବ ହୁଏ ପ୍ରତ୍ୟାବୃତ୍ତ ।
ଆତ୍ମଲାଭେ ମିଳେ ଏକା ଚିର ଅମୃତତ୍ୱ
ବୁଝି ଜ୍ଞାନୀଜନ ଏହି ସତ୍ୟ ସାରତତ୍ତ୍ୱ ।
ଆତ୍ମା ଧ୍ରୁବ ଅନ୍ୟ ସବୁ ଅଧ୍ରୁବ ଜଗତେ
ନିର୍ଦ୍ଧାର୍ଯ୍ୟ ଜାଣି ଏ ତଥ୍ୟ ନିଜ ହୃଦଗତେ
ଅନିତ୍ୟ ବିଷୟେ କେବେ ନ କରେ କାମନା
ଲୋଡ଼େ ନାହିଁ ପୁତ୍ର ବିତ୍ତ ଲୋକ ସମ୍ଭାବନା ।
ବିଜ୍ଞାନ ସ୍ୱରୂପ ଆତ୍ମା, ଆତ୍ମାର ପ୍ରେରଣେ
ଜାଣନ୍ତି ବିଷୟରାଶି ଅନୁଭବେ ଜନେ ।
ମୈଥୁନ ସମ୍ଭୂତ ଅଙ୍ଗ ପୁଲକ ପରଶ
ଜିହ୍ୱା ଅନୁଭୂତ ସ୍ନିଗ୍ଧ ସୁମଧୁର ରସ ।
ଚାରୁ ପ୍ରିୟ ରୂପରାଶି ନୟନମୋହନ
ସୂକ୍ଷ୍ମ ସୁଲଳିତ ଶବ୍ଦ କର୍ଣ୍ଣ ରସାୟନ ।
ସୁରଭି ନାସିକା ମୋଦ ସୁଗନ୍ଧ ସମ୍ଭାର
ଇନ୍ଦ୍ରିୟ ବିଷୟ ଏ ଯେ ବିବିଧ ପ୍ରକାର ।
ଆତ୍ମାର ପ୍ରଭାବେ ଲୋକ ହୁଏ ଅବଗତ
ଆତ୍ମଜ୍ଞାନେ ପ୍ରକାଶେ ଏ ନିଖିଳ ଜଗତ ।
ଆତ୍ମା ଅଧିଗମେ ମୋକ୍ଷ ଲଭିଲେ ମାନବ
ସକଳ ଜ୍ଞାତବ୍ୟ ତାର ହୁଏ ଅନୁଭବ ।

ଏହି ସେ ସର୍ବଜ୍ଞ ଆତ୍ମା ପରମ ଆଶ୍ରୟ
ଜାଣି ନଚିକେତା ମନୁଁ ତୁଟାଅ ସଂଶୟ ।
ହୁଏ ଯେତେ ଅନୁଭୂତି ସ୍ୱପ୍ନ ଜାଗରଣେ
ଜାଣେ ସେ ସମସ୍ତ ଲୋକ ଆତ୍ମାର ପ୍ରେରଣେ ।
ମହତ ମହେଶ ଆତ୍ମା ସର୍ବ ମୂଳାଧାର,
ଜାଣି ଏହା ତରେ ଧୀର ଶୋକ-ପାରାବାର ।
ଜୀବାତ୍ମା ସକଳ ଘଟେ ଛନ୍ତି ବିଦ୍ୟମାନ
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ[୨୬] ।
ଭୋଗନ୍ତି ସେ ସୁଖ ଦୁଃଖ କର୍ମଫଳ ନିତି
ଜାଣି ଏହା ଦେଖେ ଯେହୁ ହୃଦେ ତାଙ୍କ ସ୍ଥିତି,
ବ୍ରହ୍ମଜ୍ଞାନ ଫଳେ ତାର ତୁଟେ ସର୍ବ ଭୟ
ବିଶ୍ୱେ ସର୍ବଭୂତ ସେହୁ ଦେଖେ ବ୍ରହ୍ମମୟ ।
ଦ୍ୱୈତଜ୍ଞାନେ ଭୟ ପାଏ ଏକ ତହୁଁ ଆନ,
ଭାଙ୍ଗେ ଭୟ ଉପୁଜିଲେ ବ୍ରହ୍ମାତ୍ମୈକ୍ୟ-ଜ୍ଞାନ[୨୭] ।
ଏହି ସେହି ଆତ୍ମତତ୍ତ୍ୱ ଦେବେ ଅଗୋଚର
ବୁଝି ନଚିକେତ, ଏହା ଦୃଢ଼େ ହୃଦେ ଧର ।
ଏ ବିଚିତ୍ର ସୃଷ୍ଟି ଯେବେ ନ ଥିଲା ପ୍ରକାଶ
ଥିଲା ନାହିଁ ଜଳ ସ୍ଥଳ ପବନ ଆକାଶ,
ଯୋଗମଗ୍ନ ଯେବେ ଏକା ବ୍ରହ୍ମ ଜ୍ଞାନମୟ
ପର୍ବତହୁଁ ହେଲା ଯାର ପ୍ରଥମେ ଉଦୟ ।
ହିରଣ୍ୟଗର୍ଭ ସେ ଆଦ୍ୟ ସ୍ୱୟମ୍ଭୁସମ୍ଭୂତ
ଯାର ପରେ ସୃଷ୍ଟି ହୁଏ ପଞ୍ଚ ମହାଭୂତ ।
ହିରଣ୍ୟଗର୍ଭାଖ୍ୟ ସେହି ପୁରୁଷ ପ୍ରଧାନ
ସର୍ବ ପ୍ରାଣୀ ହୃଦେ ପଶି କଲେ ଅଧିଷ୍ଠାନ ।
ଲଭି ପଞ୍ଚଭୂତମୟ ଦେହାଦି ସଂଯୋଗ
କରନ୍ତି ସେ ଶବ୍ଦ ଆଦି ବିଷୟ ସମ୍ଭୋଗ ।
ଦେଖେ ଯେହୁ ଏ ପୁରୁଷେ ନିତ୍ୟ ହୃଦାକାଶେ
ତା ନେତ୍ରେ ପରମବ୍ରହ୍ମ ସର୍ବତ୍ର ଉଭାସେ ।
ହିରଣ୍ୟଗର୍ଭ ସେ ବ୍ରହ୍ମୁ ସମ୍ଭବ ପ୍ରଥମ
ତହୁଁ ଦେବାସୁର ନର ସ୍ଥାବର ଜଙ୍ଗମ ।

୨୬ - ସ୍ୱାମୀ/ମହେଶ୍ୱର; ୨୭ - ବ୍ରହ୍ମ ଓ ଆତ୍ମାର ଐକ୍ୟ ସମ୍ପର୍କିତ ଜ୍ଞାନ;

ଶବ୍ଦାଦି ଅଦିନୁଁ ଖ୍ୟାତ ଅଦିତି ନାମରେ
ପ୍ରାଣ ରୂପେ ପ୍ରକାଶିଲେ ସକଳ ଅନ୍ତରେ ।
ପଞ୍ଚ ମହାଭୂତ ସଙ୍ଗେ ମିଳି ସେ ଅଦିତି
ପ୍ରାଣୀ ହୃଦ-ଗୁହାଶୟେ କଲେ ଅବସ୍ଥିତି ।
ସେ ଆଦ୍ୟ ଦେବତା ରୂପ ଦେଖେ ଯେଉଁ ଜନ
ସେହି ଏକା କରେ ଆତ୍ମା ସ୍ୱରୂପ ଦର୍ଶନ ।
ଗର୍ଭବତୀ ନାରୀ ଯଥା ସୁପକ୍ୱ ଭୋଜନେ
ଗର୍ଭସ୍ଥ ତନୟ ପାଳେ ନିତି ସୁଯତନେ,
ନାନା ହବନୀୟ ଦ୍ରବ୍ୟ ଆହୁତି ପ୍ରଦାନେ
ସଦାଚାର ଶୁଚିବନ୍ତ ହୋଇ ସାବଧାନେ,
ପୋଷନ୍ତି ଯାଜ୍ଞିକେ ତଥା ଯଜ୍ଞେ ହୁତାଶନ
ଅରଣି[୨୮] ଉଦରୁ କରି ମନ୍ତ୍ରେ ଆବାହନ ।
ସାଧୁ ଜ୍ଞାନୀ ଜନେ ପୁଣି ସଦା ଏକ ଲୟେ
ବିରାଟ ପୁରୁଷେ ତଥା ପୂଜନ୍ତି ହୃଦୟେ ।
କରନ୍ତି ଏ ରୂପେ ଯାର ଅର୍ଚ୍ଚନା ସତତ
କର୍ମୀ ଜ୍ଞାନୀଗଣେ ବ୍ରତ ଧ୍ୟାନ ସୁସଂଯତ ।
ଅନ୍ତରେ ଅଧିରେ ଯାର ନିତ୍ୟ ଅଧିଷ୍ଠାନ
ଜାତବେଦା[୨୯] ଆତ୍ମା ସେହି ନଚିକେତ ଜାଣ ।
ପ୍ରାଣୁ ସୂର୍ଯ୍ୟ ପ୍ରତିଦିନ ହୁଅନ୍ତି ଉଦିତ
ପ୍ରାଣେ ପୁଣି ପ୍ରତିଦିନ ଯାନ୍ତି ଅସ୍ତମିତ ।
ଦିବା ନିଶି ସମସୃଷ୍ଟି ପ୍ରଳୟ ବିଧାନ
ପ୍ରାଣୁଁ ସୂର୍ଯ୍ୟ ସୃଷ୍ଟ ପୁଣି ପ୍ରାଣେ ତିରୋଧାନ ।
ଇନ୍ଦ୍ର ଅଗ୍ନି ବରୁଣାଦି ଦେବତା ଜଗତେ
ପ୍ରକାଶ ଇନ୍ଦ୍ରିୟ ଯେତେ ପ୍ରାଣୀ ଦେହଗତେ ।
ବର୍ତ୍ତି ରହିଛନ୍ତି ସର୍ବେ ପ୍ରାଣେ ଆଶ୍ରା କରି
ତୁମ୍ବ[୩୦] ଅବଲମ୍ବେ ଯଥା ଚକ୍ରେ ଅରାବଳି[୩୧] ।
ପ୍ରାଣ ସର୍ବବ୍ୟାପୀ ବ୍ରହ୍ମ ସକଳ ଆଶ୍ରୟ
ଯହିଁ ସର୍ବ ବିଶ୍ୱ ସୃଷ୍ଟି ସଂସ୍ଥିତି ପ୍ରଳୟ ।

---

୨୮ - ଚକମକିପଥର/ଅଗ୍ନି-ଉତ୍ପାଦକ ମନ୍ଥନଦଣ୍ଡ; ୨୯ - ଅଗ୍ନିର (ଜାତବେଦ – ଅଗ୍ନି);
୩୦ - ଶଗଡ଼ ଚକର ମଧ୍ୟସ୍ଥଳ; ୩୧ - ଚକର ଅରକାଠ ସମୂହ ।

ପ୍ରାଣେ ବଳି ହୋଇପାରେ କିଏ ଅତିଗାମୀ
ସେ ଯେ ସର୍ବାତ୍ମକ ବ୍ରହ୍ମ ସର୍ବ ଅନ୍ତର୍ଯ୍ୟାମୀ ।
ବ୍ରହ୍ମରୁ ସ୍ଥାବରଯାଏ ସର୍ବତ୍ର ସମାନ
ଏକ ଅଦ୍ୱିତୀୟ ଆତ୍ମା ସର୍ବଭୂତ ପ୍ରାଣ ।
ଯେ ଆତ୍ମା ଚୈତନ୍ୟ ରୂପ ହୃଦେ ପ୍ରତିଫଳେ
ଚନ୍ଦ୍ରବିମ୍ବ ଝଳେ ଯଥା ସରୋବର ଜଳେ ।
ଈଶ୍ୱର-ଚୈତନ୍ୟ ତହୁଁ ନୁହଇ ସେ ଭିନ୍ନ
ମାୟାବଶେ ଦିଶେ ଜୀବ କେବଳ ବିଚ୍ଛିନ୍ନ ।
ଜୀବ କାର୍ଯ୍ୟ, ପରମାତ୍ମା ଚୈତନ୍ୟ କାରଣ
ନାହିଁ ସେ ଉଭୟେ ଭେଦ ନାହିଁ ତହିଁ ଅନ୍ୟ ।
ଅଜ୍ଞାନେ ପ୍ରଭେଦ ତହିଁ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।
ବ୍ରହ୍ମ ତହୁଁ ଆପଣାକୁ ନ ମଣେ ଯେ ଆନ
ଦେଖେ ନିଜ ହୃଦେ ପୂର୍ଣ୍ଣ ବ୍ରହ୍ମ ବିଦ୍ୟମାନ ।
ସର୍ବ ହୃଦେ ଦେଖେ ପୁଣି ପୂର୍ଣ୍ଣ ବ୍ରହ୍ମରୂପ
ଅତିକ୍ରମେ ସେହି ଏକା ଭବ-ଅନ୍ଧକୂପ ।
ଗୁରୁ ଉପଦେଶେ ଶାସ୍ତ୍ରବିହିତ ବିଧାନେ
ମାନସ ସଂଯତ ଶୁଦ୍ଧ କରି ଏକଧାନେ,
ବ୍ରହ୍ମଜ୍ଞାନ ଲାଭେ ସୁଧୀ ହୁଅନ୍ତି ସକ୍ଷମ
ତିରୋହିତ ହୁଏ ତେବେ ହୃଦୁଁ ଭେଦ ଭ୍ରମ ।
ଅପସୃତ ହେଲେ ଘୋର ଅଜ୍ଞାନ-ଅନ୍ଧାର
ସର୍ବତ୍ର ପ୍ରକାଶେ ବ୍ରହ୍ମ ଅଖଣ୍ଡ ଆକାର ।
ଅଜ୍ଞାନ ପ୍ରଭାବେ ଭେଦ ଦେଖେ ଯେଉଁ ଜନ
ମରଣାନ୍ତେ ବାରବାର ଭେଟେ ସେ ମରଣ ।
ଦେହ ଅଭ୍ୟନ୍ତରେ ହୃଦପଦ୍ମ ବିଦ୍ୟମାନ
ଜୀବାତ୍ମା ପୁରୁଷ ତହିଁ ଅଙ୍ଗୁଷ୍ଠ ପ୍ରମାଣ ।
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶାନ
ତୁଟେ ଭୟ ହେଲେ ଜୀବ-ବ୍ରହ୍ମ ଏକ ଜ୍ଞାନ ।
ଜୀବାତ୍ମା ପୁରୁଷ ସେହି ଅଙ୍ଗୁଷ୍ଠ ପ୍ରମାଣ
ନିର୍ଧୂମ ଉଜ୍ଜ୍ୱଳ ଜ୍ୟୋତି ପ୍ରାଏ ତେଜୀୟାନ ।
ଭୂତ ଭବ୍ୟ ବର୍ତ୍ତମାନ ତ୍ରିକାଳ ଈଶ୍ୱର
ଆଜି ସେହି କାଲି ସେହି ନିତ୍ୟ ଅନଶ୍ୱର ।

ନାହିଁ ଆତ୍ମା ସମ କିବା ଆତ୍ମା ଭିନ୍ନ ଆନ
ସର୍ବତ୍ର ସର୍ବଦା ଏକ ଆତ୍ମା ବର୍ତ୍ତମାନ ।
ପର୍ବତ ଦୁର୍ଗମ ଶିଖେ ବରଷିଲେ ବାରି
ନାନା ଧାରେ ବହେ ସ୍ରୋତ ନାନା ଦିଗଚାରୀ,
ଗିରିପଦେ ନିମ୍ନ ଦେଶେ ଧାଏଁ ଛିନ୍ନ ଭିନ୍ନ
ନାଶଯାଏ ଅବଶେଷେ ହୁଏ ନାହିଁ ଲୀନ ।
ତେସନ ଅସଂଖ୍ୟ ଦେହେ ନାନା ଅଭିମୁଖେ
ଭ୍ରମଇ ସେ ନର ଚିର ଜନ୍ମ-ମୃତ୍ୟୁ-ଦୁଃଖେ ।
ଦେଖେ ଯେ ବିଭିନ୍ନ ଦେହେ ବ୍ରହ୍ମ ଭେଦାଭେଦ
ଲଭେ ନାନା ଯୋନି, ସହେ ଅସରନ୍ତି ଖେଦ ।
ସର୍ବଭୂତେ ଦେଖେ ଯେହୁ ଆତ୍ମା ନିତ୍ୟ ଏକ
ସେହି ନଚିକେତ, ମୁନି ଜ୍ଞାନୀ ସୁବିବେକ ।
ଶୁଦ୍ଧୋଦକେ[୩୨] ମିଶିଗଲେ ଯଥା ଶୁଦ୍ଧୋଦକ
ହୁଏ ଏକ ରୂପ ଆଉ ନ ରହେ ପୃଥକ,
ଏକୀଭୂତ ହୁଏ ତଥା ବ୍ରହ୍ମେ ସେହି ଜନ
ସର୍ବତ୍ର ଦେଖେ ଯେ ଏକ ଆତ୍ମା-ସନାତନ ।

ପ୍ରଥମ ବଲ୍ଲୀ ସମାପ୍ତ ।

## ଦ୍ୱିତୀୟ ବଲ୍ଲୀ

କି ବିଚିତ୍ର ପୁର ଏହି ନର କଳେବର
ପ୍ରାସାଦ ପ୍ରାକାର[୩୩] ଦ୍ୱାରେ ସଜ୍ଜିତ ସୁନ୍ଦର ।
ସଂଯୋଜିତ ଯଥା ସ୍ଥାନେ ଏକାଦଶ ଦ୍ୱାର
ଘେରି ରହିଅଛି ପୁଣି ସପତ ପ୍ରାକାର ।
ଯଥାସ୍ଥାନେ ସୁଶୋଭିତ ଗଭୀର ପରିଖା
ମଣିପୁର[୩୪] ଆଦି ନାମେ କେତେ ଅଟ୍ଟାଳିକା ।
କେତେ କନ୍ଦି, କେତେ ଯନ୍ତ୍ର, କେତେ ଗୁପ୍ତ ସ୍ଥାନ
ତରୁ ଲତା ଆଚ୍ଛାଦିତ ସୁଚାରୁ ଉଦ୍ୟାନ ।
ରହିଛନ୍ତି ପ୍ରତି ଦ୍ୱାରେ ସୁଚତୁର ଦ୍ୱାରୀ
ଜାଣ କି କିଏ ଏ ଦେହ-ପୁର ଅଧିକାରୀ ?

---

୩୨ - ବିଶୁଦ୍ଧ ଜଳରେ; ୩୩ - ବାଡ/ପ୍ରାଚୀର, ୩୪ - ନାଭିଚକ୍ର/ନାଭିପଦ୍ମ

ସେ ଚୈତନ୍ୟମୟ ଆତ୍ମା ଏଥି ଅଧିପତି
ନାହିଁ ଯାର କ୍ଷୟ ବୃଦ୍ଧି ବିନାଶ ଉତ୍ପତ୍ତି ।
ଦେହ ଅଭ୍ୟନ୍ତରେ ଯାର ହେଲେ ହେଁ ନିବାସ
ଆଦିତ୍ୟ ପରାଏ ନିତ୍ୟ ପ୍ରତ୍ୟକ୍ଷ ପ୍ରକାଶ ।
ସର୍ବଭୂତେ ଏକ ଆତ୍ମା ଦୃଢ଼ ମନେ ଧରି
ବ୍ରହ୍ମଧ୍ୟାନ କରେ ଯେହୁ ମୋହ ପରିହରି,
ଏ ଜୀବନେ ମୁକ୍ତ, ସେହୁ ପଡ଼େ ନାହିଁ ଶୋକେ
ଅକ୍ଷୟ କୈବଲ୍ୟ ଭୁଞ୍ଜେ ଗଲେ ପରଲୋକେ ।
ଭବେ କଦାଚିତେ ଆଉ ନ ଲଭେ ଉତ୍ପତ୍ତି
ପରମବ୍ରହ୍ମରେ ମିଳେ; ପାଏ ମୋକ୍ଷ ଗତି ।
ନର ଦେହ ନୁହେଁ ଏକା ଆତ୍ମାର ନିବାସ
ସର୍ବତ୍ର ସମାନ ଆତ୍ମା ବିଶ୍ୱେ ପରକାଶ ।
ସର୍ବବ୍ୟାପୀ ସର୍ବଗାମୀ ସର୍ବ ଅଧିଷ୍ଠାନ
ଉଜ୍ଜ୍ୱଳ ଦ୍ୟୁଲୋକେ ଆତ୍ମା-ରବି ଅଂଶୁମାନ ।
ଅନ୍ତରୀକ୍ଷେ ସମୀରଣ ଅନଳ ଅଧ୍ୱରେ
ସେହି ଏକା ପ୍ରତିଷ୍ଠିତ ବିଶ୍ୱବେଦୀ ପରେ ।
ଉଜ୍ଜ୍ୱଳ ପବିତ୍ର ସୋମଯାଗେ ଶୁଦ୍ଧାଧାରେ
ନରଦେହେ ବରଦେହେ ପ୍ରକାଶ ସଂସାରେ ।
ସତ୍ୟେ ଆତ୍ମା ଅବସ୍ଥିତି ଆକାଶେ ସଞ୍ଚାର
ବିଶ୍ୱ ମହାମୁଖେ ଆତ୍ମା ଯଦି ଉପଚାର,
ଜଳେ ସ୍ଥଳେ ଧରାଧାରେ ହୁଏ ଯେ ଉଦ୍ଭବ
ସରିତ ନିର୍ଝର ମୀନ ମୁକ୍ତା ବ୍ରୀହି ଯବ,
ସ୍ଥାବର ଜଙ୍ଗମ ଆଦି ଯେତେ ବସ୍ତୁଚୟ
ସେ ସକଳେ ଏକମାତ୍ର ଆତ୍ମାର ଉଦୟ ।
ସର୍ବଭୂତମୟ କିନ୍ତୁ ସତ୍ୟ ସନାତନ
ଏକ ଅଦ୍ୱିତୀୟ ନିତ୍ୟ ଅପରିବର୍ତ୍ତନ ।
ସର୍ବ ମୂଳାଧାର ସେହି ସକଳ ନିଦାନ
ତବ ଜିଜ୍ଞାସିତ ବସ୍ତୁ ବ୍ରହ୍ମ ସୁମହାନ ।
ନିଗୂଢ଼ ଏ ବ୍ରହ୍ମତତ୍ତ୍ୱ ସ୍ଥିର କରି ମନ
କର ନଚିକେତ, ଏହା ହୃଦୟେ ଧାରଣ ।

ଜୀବାତ୍ମା ପୁରୁଷ ରହି ହୃଦୟ-କମଳେ
ପେଷେ ପ୍ରାଣବାୟୁ ଉର୍ଦ୍ଧ୍ୱେ ଅପାନକୁଁ[୩୫] ତଳେ ।
ମୁମୁକ୍ଷୁବରେଣ୍ୟ ନିଜେ ମଧ୍ୟେ ସମାସୀନ
ଦେବରୂପୀ ଇନ୍ଦ୍ରିୟାଦି ଯାହାର ଅଧୀନ ।
ଲାଗିଥାନ୍ତି ନିରନ୍ତର ଆପଣା ବ୍ୟାପାରେ
ଭୃତ୍ୟଗଣ ଖଟେ ଯଥା ପ୍ରଭୁ ଉପଚାରେ ।
ଦେହେନ୍ଦ୍ରିୟ ପ୍ରାଣ ଆଦି ଆତ୍ମାରୁ ବିଭିନ୍ନ
ସର୍ବ ପରେ ଆତ୍ମାସ୍ୱାମୀ ସ୍ୱତନ୍ତ୍ର ସ୍ୱାଧୀନ ।
ଗୃହ ତେଜି ଗୃହସ୍ୱାମୀ ହୋଇଲେ ଅନ୍ତର
ପଳାନ୍ତି ସେବକେ କିଏ କାହିଁ ଛାଡ଼ି ଘର ।
ସୁନା ଘର ହୋଇଯାଏ ଚୂନା ସେହିକ୍ଷଣେ
ମୋର ବୋଲି କହିବାକୁ ରହେ ନାହିଁ ଜଣେ ।
ଛାଡ଼ିଗଲେ ଦେହ ତଥା ଦେହ ଅଧୀଶ୍ୱର
କିଏ ଏଥି ରହେ ବାକି ଜଗିବାକୁ ଘର ?
ସ୍ୱାମୀ ଥିଲାବେଳେ ଯେହୁ ଥାଆନ୍ତି ଗରବେ
ସ୍ୱାମୀ ଗଲେ ପଛେ ପଛେ ଯାନ୍ତି ସେ ସରବେ ।
ମନ ପ୍ରାଣ ଇନ୍ଦ୍ରିୟାଦି ନ ରହନ୍ତି କେହି
ଗଲେ ଯେହୁ, ସେହି ଆତ୍ମା ସେହି ଏକା ଦେହୀ ।
ପ୍ରାଣାପାନ ବାୟୁ ବଳେ ବଞ୍ଚି ନାହିଁ ନର
ଜୀଇଁଛି ଯା ଯୋଗେ ପ୍ରାଣାପାନୁ ସେ ଇତର ।
ନରଦେହେ ପରମାତ୍ମା ଜୀବନ ନିଦାନ
ଯାହାର ଆଶ୍ରୟେ ପିଣ୍ଡେ ରହେ ପ୍ରାଣାପାନ ।
ବହୁ ଉପାଦାନେ ଗଢ଼ା ପଦାର୍ଥନିଚୟ
ଆହାର ଉଦ୍ୟାନ ଶଯ୍ୟା ବସନ ଆଳୟ,
ଲାଗେ ନାହିଁ କେବେ ଯଥା ନିଜ ପ୍ରୟୋଜନେ
ଲୋଡ଼ା ହୁଏ ସଦା ଅନ୍ୟ ସଂଭୋଗସାଧନେ ।
ପ୍ରାଣାପାନ ଇନ୍ଦ୍ରିୟାଦି ତଥା ସହଯୋଗେ
ଅବିରତ କାର୍ଯ୍ୟେ ରତ ଆତ୍ମ ଉପଭୋଗେ ।
ଏ ସକଳୁଁ ଆତ୍ମା ଭିନ୍ନ ନିତ୍ୟ ଅସଂହତ
ପ୍ରାଣାପାନ ଆଦି ସର୍ବେ ଆତ୍ମାର ଆୟତ୍ତ ।

---

୩୫ - ଅଧୋବାୟୁ/ମଳଦ୍ୱାର ଦେଇ ନିର୍ଗତ ହେଉଥିବା ବାୟୁ

ଗୁହ୍ୟ ସନାତନ ବ୍ରହ୍ମତତ୍ତ୍ୱ ଗଉତମ
କହେ ଏବେ ଶୁଣ ଯେଣେ ଯିବ ମନୁ ଭ୍ରମ ।
ଲଭିଲେ ଯେ ଜ୍ଞାନ ମିଳେ ଚିର ମୋକ୍ଷପଦ
ପାର ହୁଏ ଜୀବ ଜନ୍ମ-ମରଣ-ବିପଦ ।
ବ୍ରହ୍ମଜ୍ଞାନ ବିନା ଦେହୀ ମରି ପୁଣ ପୁଣ
ଭଜେ ଯେ ଦୁର୍ଗତି କହେ ନଚିକେତ, ଶୁଣ ।
ଆପଣା ଆପଣା ଜ୍ଞାନ କର୍ମ ଅନୁସାରେ
ବାର ବାର ଲଭେ ଜୀବ ଜନ୍ମ ଯୋନିଦ୍ୱାରେ ।
ଆଉ ଥୋକେ ଜୀବ ପୁଣି ଜ୍ଞାନ-କର୍ମ-ଫଳେ
ଉଦ୍ଭିଦ ସ୍ଥାବର ରୂପେ ଉପୁଜେ ଭୂତଳେ ।
ନୁହେଁ ଯେତେ ଦିନ ଯାଏ ସର୍ବ କର୍ମ କ୍ଷୟ
ନୁହେଁ ଯେତେ ଦିନ ବ୍ରହ୍ମଜ୍ଞାନ ସମୁଦୟ,
ଭ୍ରମେ ଜୀବ ଏହିପରି ଯୋନି ଶତ ଶତ
ପୂର୍ଣ୍ଣଜ୍ଞାନେ ହୁଏ ଶେଷେ ବନ୍ଧନ ମୁକତ ।
ନିଦ୍ରାର ଉତ୍ସଙ୍ଗେ[୩୬] ନର ଲଭିଲେ ଆରାମ
ପ୍ରାଣ ଇନ୍ଦ୍ରିୟାଦି ଭଜେ କାର୍ଯ୍ୟରୁ ବିରାମ ।
ପ୍ରାଣେନ୍ଦ୍ରିୟଗଣ ଯେବେ ନିଦ୍ରା ଅଭିଭୂତ
ସ୍ୱପନେ ଯେ ସୃଜେ ଭୋଗ୍ୟ ବିଷୟ ଅଦ୍ଭୁତ ।
ଭୋଗେ ଇଚ୍ଛାମତେ ଯେହୁ ଇଷ୍ଟ ସୁଖରାଶି
ସେହି ଶୁଦ୍ଧ ସମୁଜ୍ଜ୍ୱଳ ବ୍ରହ୍ମ ଅବିନାଶୀ ।
ଭୂଲୋକ ଦ୍ୟୁଲୋକ[୩୭] ଆଦି ସର୍ବେ ବ୍ରହ୍ମାଶ୍ରିତ
ନୁହେ ନଚିକେତ କିଛି ବ୍ରହ୍ମରୁ ଅତୀତ ।
ଶରୀର ବିଭେଦେ ଆତ୍ମା ନୁହେ ଭିନ୍ନ ଭିନ୍ନ
ସକଳ ଅନ୍ତରେ ଆତ୍ମା ଏକ ଅବିଚ୍ଛିନ୍ନ ।
ଜଗତର ଅନ୍ତର୍ଗତ ଅଗ୍ନି ଯଥା ଏକ
ରୂପଭେଦେ କାଷ୍ଠାଦିରେ ପ୍ରକାଶେ ଅନେକ ।
ତଥା ଏକ ଆତ୍ମା ସର୍ବଭୂତ ଅଭ୍ୟନ୍ତରେ
ଶରୀର ବିଭେଦେ ଦିଶେ ବିଭିନ୍ନ ରୂପରେ ।

---

୩୬ - କୋଳରେ; ୩୭ - ସ୍ୱର୍ଗପୁର

ଶରୀର ଆକାର ବର୍ଣ୍ଣେ ଆତ୍ମା ଅବାଧିତ
ଆକାଶ ପରାଏ ମୁକ୍ତ ବିକାର ରହିତ ।
ଏକା ବାୟୁ ରହିଛି ଯେ ସାରା ବିଶ୍ୱ ଭରି
ବସ୍ତୁଭେଦେ ଭିନ୍ନ ରୂପେ ପ୍ରକାଶେ ଯେପରି,
ସେହିପରି ଆତ୍ମା ଏକ ସର୍ବ ଭୂତାନ୍ତରେ
ଶରୀର ବିଭେ ଯେ ଦିଶେ ବିଭିନ୍ନ ରୂପରେ ।
ଆତ୍ମାକୁ ପରଶେ ନାହିଁ ଦେହ ରୂପ ଗୁଣ
ଆକାଶ ପରାଏ ଆତ୍ମା ଉନ୍ମୁକ୍ତ ଅକ୍ଷୁଣ୍ଣ ।
ସୂର୍ଯ୍ୟାଲୋକେ ଦୃଷ୍ଟିଶକ୍ତି ପ୍ରକାଶେ ନୟନ
ପ୍ରତି ପ୍ରାଣୀ ନେତ୍ରେ ନିତି ବିଭାସେ ତପନ ।
ଦୃଷ୍ଟିଦୋଷେ ମନ-ନେତ୍ର ହୁଏ ବିଚଳିତ
ସହସ୍ରାଂଶୁ କେବେ କିନ୍ତୁ ନ ହୁଏ ଦୂଷିତ ।
ଏକ ଆତ୍ମା ସର୍ବଭୂତେ ବିରାଜିତ ତଥା
କର୍ମ ଫଳାଫଳେ ତାକୁ ନ ଲାଗଇ ବ୍ୟଥା ।
ଲୋକ ସୁଖଦୁଃଖେ ଆତ୍ମା ନ ହୁଏ କ୍ଷୋଭିତ
ଆକାଶ ସମାନ ଆତ୍ମା ସଙ୍ଗବିରହିତ ।
ଜଳାଶୟ କକ୍ଷେ ନର ସିକତା ପ୍ରାନ୍ତରେ
ନୀଳାକାଶ ଦେଖେ ଦୂର ମଳିନ ପଥରେ ।
ରଜ୍ଜୁ ଦେଖି ସର୍ପ ବୋଲି ପାଏ ମନେ ଭୟ
ଶୌକ୍ତିକେ ରଜତ ବୋଲି କରେ ସୁନିଶ୍ଚୟ ।
ବୁଦ୍ଧିଦୋଷେ ଘଟଇ ଏ ଦୃଷ୍ଟି ବିପର୍ଯ୍ୟୟ
ରଜ୍ଜୁ ଆଦି ଦିଶେ ଯେବେ ଯାଏ ଭ୍ରମ କ୍ଷୟ ।
ବିପରୀତ ବୁଦ୍ଧି ଯୋଗେ ଦୃଷ୍ଟି ବିପରୀତ
ବୁଦ୍ଧିଦୋଷେ ରଜ୍ଜୁ ଆଦି ନ ହୁଏ ଦୂଷିତ ।
ନଚିକେତ, ଏହିପରି ଆତ୍ମଗତି ଜାଣ
ସୁଖ ଦୁଃଖ ଆଦି ସବୁ ଅବିଦ୍ୟା ଭିଆଣ ।
ସୁଖ ଦୁଃଖେ ଲିପ୍ତ ନୁହେ ଆତ୍ମା ନିର୍ବିକାର
ପ୍ରକାଶେ ଏ ସତ୍ୟ ଗଲେ ଅବିଦ୍ୟା-ଅନ୍ଧାର ।
ସର୍ବଭୂତ ଅନ୍ତରାତ୍ମା ସର୍ବ ମୂଳାଧାର
ଯାର ବଶେ ଆତଯାତ ନିଖିଳ ସଂସାର ।

ବିଶୁଦ୍ଧ ବିଜ୍ଞାନ ରୂପେ ବିଜେ ସତ୍ୟ ଏକ
ନାମ ରୂପ ଆଦି ଭେଦେ ହୁଅନ୍ତି ଅନେକ ।
କରେ ସେ ଅଖଣ୍ଡ ବ୍ରହ୍ମ ସ୍ୱରୂପ ଦର୍ଶନ,
ନିଜ ହୃଦ ମୁକ୍ତାକାଶେ ଯେ ବିବେକୀ ଜନ ।
ସ୍ୱଚ୍ଛ ଦରପଣେ ଦେଖେ ଯଥା ନିଜ ମୁଖ
ଲଭେ ସେ ଶାଶ୍ୱତ ଶାନ୍ତି ଆତ୍ମାନନ୍ଦ ସୁଖ ।
ବିଷୟେ ଆସକ୍ତ ଅନ୍ୟ ଅବିବେକୀ ନରେ
ନ ଦେଖନ୍ତି ଆତ୍ମରୂପ ଆପଣା ଅନ୍ତରେ ।
ପାଇବେ ଶାଶ୍ୱତ ସୁଖ କାହୁଁ ସେ ଅଧମ
ନ ଚିହ୍ନି ନିଜକୁ ନିଜେ ଅଜ୍ଞାନ-ବିଭ୍ରମ ।
ସୁରାସୁର ନର ଅବା ଜଙ୍ଗମ ସ୍ଥାବର
ଚରାଚର ବିଶ୍ୱଲୋକେ ସକଳ ନଶ୍ୱର ।
ଆତ୍ମା ଏକା ଅନଶ୍ୱର ସମସ୍ତ ନଶ୍ୱରେ
ଆତ୍ମା ଏକା ନିତ୍ୟ ସର୍ବ ଅନିତ୍ୟ ଅନ୍ତରେ,
ସମସ୍ତ ଚେତନେ ଆତ୍ମା କେବଳ ଚେତନା,
ଏକ ଆତ୍ମା ପୂର୍ଣ୍ଣ କରେ ଅସଂଖ୍ୟ କାମନା ।
ଆତ୍ମଦର୍ଶୀ ଜ୍ଞାନୀ ଜନେ ମିଳେ ନିତ୍ୟ ସୁଖ
ଆତ୍ମଜ୍ଞାନମୂଢ଼ ତହୁଁ ସତତ ବିମୁଖ ।
ସେ ଶାଶ୍ୱତ ଆତ୍ମାନନ୍ଦ ସେ ସୁଖ ଅଶେଷ
ଇତର ଜନ ବା କିଏ କରିବ ନିର୍ଦ୍ଦେଶ ?
ବିତକାମ ଜିତେନ୍ଦ୍ରିୟ ଆତ୍ମଦର୍ଶୀ ଜ୍ଞାନୀ
ଏହି ସେହି ସୁଖ ବୋଲି କହନ୍ତି ପ୍ରମାଣି ।
ଯତିଗଣ ଅନୁଭୂତ ସେ ସୁଖ ଶାଶ୍ୱତ
କି ଉପାୟେ କି ରୂପେ ମୁଁ ହେବି ଅବଗତ ?
ସେ ପରମ ସୁଖ ନିଜେ ପାଏ କି ପ୍ରକାଶ ?
ନରଲଭ୍ୟ କି ସେ ? ସତେ କରିବି ବିଶ୍ୱାସ ?
'ମୁଁ' ବୋଲି ମାନବେ ଯେବେ ଆତ୍ମ-ବୁଦ୍ଧି ଫୁଟେ
ଆସେ କି ସେ ସୁଖ ? ସତେ ଚିର ଦୁଃଖ ତୁଟେ ?
ନ ହୁଅ ଅଧୀର ନର ନ ତେଜି ବିଶ୍ୱାସ
ଆନନ୍ଦମୟ ସେ ଆତ୍ମା ନିତ୍ୟ ସ୍ୱ-ପ୍ରକାଶ ।

ଆପଣେ ଉଭାସେ ଆତ୍ମା ଆପଣା ଆଲୋକେ
ସୂର୍ଯ୍ୟ ଚନ୍ଦ୍ର ତାରା ଆଦି ନାହିଁ ଆତ୍ମା-ଲୋକେ ।
ନ ଭାସେ ତପନ ତହିଁ ଚନ୍ଦ୍ରମା ନ ଝଳେ
ରତ୍ନଦୀପାବଳି ସମ ତାରକା ନ ଜଳେ ।
ନାହିଁ ତହିଁ କ୍ଷଣପ୍ରଭା ଚଞ୍ଚଳ ଝଟକ
ଉଜ୍ଜ୍ୱଳେ ଜଳିବ କାହିଁ ଅବା ଏ ପାବକ ?
ଆତ୍ମରୂପୀ ପ୍ରଭାମୟ ପରମ ଈଶ୍ୱରେ
ରବି ଶଶୀ ଆଦି ସର୍ବ ସଦା ଅନୁସରେ ।
ଆଲୋକିତ ହୁଏ ସର୍ବ ସେ ବ୍ରହ୍ମ ଆଲୋକେ
ଦୀପ୍ତିମନ୍ତ ଦିଶେ ଯାହା ଦ୍ୟୁଲୋକେ ଭୂଲୋକେ ।

ଦ୍ୱିତୀୟ ବଲ୍ଲୀ ସମାପ୍ତ ।

## ତୃତୀୟ ବଲ୍ଲୀ

ସଂସାର ଅଶ୍ୱତ୍ଥ ତରୁ ଅନିତ୍ୟ ଅସ୍ଥିର
ଉର୍ଦ୍ଧ୍ୱେ ମୂଳ ମେଲିଅଛି ନିମ୍ନେ ଶାଖା ଶିର ।
ଅବ୍ୟକ୍ତୁ ସ୍ଥାବର ଯାଏ ନିଖିଳ ସଂସାର
ସେ ପରମପଦ ବିଷ୍ଣୁ ଏହା ମୂଳାଧାର ।
ସଜୀବ ନିର୍ଜୀବ ଦେବ ଅସୁର ମାନବ
ପଶୁପକ୍ଷୀ ତରୁ ତୃଣ ଯାବତ ସମ୍ଭବ ।
ସଂସାର ଅଶ୍ୱତ୍ଥେ ସର୍ବେ ଶାଖା ଅଗଣନ
ଅନାଦି ପ୍ରବାହ ଏ ଯେ ବୃକ୍ଷ ସନାତନ ।
ଏ ବୃକ୍ଷର ମୂଳ ବୀଜ ଉଜ୍ଜ୍ୱଳ ଭାସ୍ୱର
ସର୍ବଲୋକାଶ୍ରୟ ବ୍ରହ୍ମ ନିତ୍ୟ ଅନଶ୍ୱର ।
ଅତୀତ ନୁହଇ ତହୁଁ କିଛି ଏ ଜଗତେ
ଏ ସେ ଆତ୍ମା ନଚିକେତ, ପୁଛିଲ ଯା ମତେ ।
ନିଃସୃତ ପରମବ୍ରହ୍ମୁଁ ବିଶ୍ୱ ବସ୍ତୁଗଣ
ସେ ବ୍ରହ୍ମ ପ୍ରେରଣେ ସ୍ପନ୍ଦେ ବିଶ୍ୱ ଅନୁକ୍ଷଣ ।
ମହା ଭୟଙ୍କର ସେହି ପ୍ରଭୁ ବିଶ୍ୱେଶ୍ୱର
ପ୍ରଚଣ୍ଡ ଉଦାତ୍ତ ସଦା ତୀବ୍ର ବଜ୍ରଧର ।

ଯାର ଡରେ ରହି ଶଶୀ ଗ୍ରହ ତାରାପନ୍ତି
ଅବିଶ୍ରାନ୍ତ ନିଜ ନିଜ ମାର୍ଗେ ବିଚରନ୍ତି,
ଅନ୍ତରର ସାକ୍ଷୀ ସେହି ପ୍ରଭୁ ଅନ୍ତର୍ଯ୍ୟାମୀ,
ଜାଣି ଯେହୁ ସଦା ତାଙ୍କ ଆଜ୍ଞା ଅନୁଗାମୀ ।
ଅମରତ୍ୱ ଲଭେ ସେହୁ ଯାଏ ଭବପାରେ
ଫେରେ ନାହିଁ କେବେ ଆଉ ଏ ଘୋର ସଂସାରେ ।
ସେ ବିଶ୍ୱନିୟନ୍ତୁ ଭୟେ ପ୍ରତପେ ତପନ,
ପ୍ରତାପେ ପାବକ, ବହେ ସନ୍ତତ ପବନ ।
ଯଥାକାଳେ ବର୍ଷେ ଇନ୍ଦ୍ର ପ୍ରଶାସେ ଶମନ,
ନିଜ ନିଜ କାର୍ଯ୍ୟେ ରତ ଦିଗପାଳଗଣ ।
ସ୍ୱାମୀରୋଷେ ଭୟଭୀତ ପରିକର ପ୍ରାଏ
ପ୍ରତ୍ୟେକ ଆପଣା ପଥେ ଅବିଶ୍ରାନ୍ତ ଧାଏଁ ।
ସେ ବିଶ୍ୱକାରଣ ପ୍ରଭୁ ବିଶ୍ୱମୂଳାଧାରେ
ଜାଣିବାକୁ ସମର୍ଥ ଯେ ହୁଏ ଏ ସଂସାରେ,
ସ୍ୱରୂପ ତାଙ୍କର ହୃଦେ କରେ ଅନୁଭୂତି
ଦେଖେ ଏ ଅନନ୍ତ ବିଶ୍ୱ ତାଙ୍କରି ବିସ୍ତୃତି ।
ମରଣ ପୂର୍ବରୁ ଏହି ମର୍ତ୍ତ୍ୟ-କଳେବରେ
ପାଏ ସେ ବିଦେହ ମୁକ୍ତି, ଭବସିନ୍ଧୁ ତରେ ।
ଲଭେ ନାହିଁ ଏଥୁ ଯେହୁ ବ୍ରହ୍ମ ଅବଗତି
ମରଣାନ୍ତେ ହେଲେ ତାର ନାହିଁ ମୋକ୍ଷଗତି ।
ଏ ଦେହ ଛାଡ଼ି ସେ ପୁଣି ଆନ ଦେହ ପାଏ
କର୍ମ ଅନୁଯାୟୀ ଦେହୁଁ ଦେହାନ୍ତର ଯାଏ ।
ଅସଂଖ୍ୟ ଯୋନିରେ ଜନ୍ମେ ଭ୍ରମେ ନାନା ଲୋକେ
ଉଠେ ପଡ଼େ ସୁଖେ ଦୁଃଖେ ସଢ଼େ ଭବ-ଶୋକେ ।
ନିଜ ମୁଖ ପ୍ରତିବିମ୍ବ ସ୍ୱଚ୍ଛ ଦରପଣେ
ଦେଖେ ନର ଅବିକଳ ବିଶଦ ଯେସନେ ।
ସୁନିର୍ମଳ ସମୁଜ୍ଜ୍ୱଳ ବୁଦ୍ଧି ଆଦରଶେ
ତେସନେ ଆତ୍ମାର ରୂପ ଦେଖେ ଜ୍ଞାନବଶେ ।
ଅସ୍ପଷ୍ଟ ସ୍ୱପନେ ଯଥା ରୂପ ଅବୟବ
ପିତୃଲୋକେ ଦିଶେ ତଥା ଆତ୍ମା ଅସୌଷ୍ଠବ ।
ରୂପରେଖ ଅଙ୍ଗହୀନ ସଲିଳେ ଆକୃତି
ଆତ୍ମାର ଗନ୍ଧର୍ବଲୋକେ ତଥା ଅନୁଭୂତି ।

ବ୍ରହ୍ମଲୋକେ ଦିଶେ ଏକା ଆତ୍ମା ପରିଷ୍କାର
ସ୍ପଷ୍ଟ ବିଲକ୍ଷଣ ଯଥା ଆଲୋକ ଅନ୍ଧାର ।
ବ୍ରହ୍ମଲୋକ ପ୍ରାପ୍ତି ଅତି ଦୁଃସାଧ ଦୁର୍ଲ୍ଲଭ
ବହୁ ଯାଗ ଯୋଗ ଜ୍ଞାନେ ଲଭେ ତା ମାନବ ।
ହେ ଚତୁର ନର, ତେଣୁ ହୁଅ ସାବଧାନ
ଆପଣା ଅନ୍ତରେ ସଦା କର ବ୍ରହ୍ମ ଧ୍ୟାନ ।
ସ୍ୱଚ୍ଛ ଶୁଦ୍ଧ କର ନିଜ ବୁଦ୍ଧି-ଦରପଣ
ଇଚ୍ଛା ଯଦି ପାଇବାକୁ ବ୍ରହ୍ମ ଦରଶନ ।
କ୍ଷିତି ଅପ ତେଜ ବାୟୁ ବ୍ୟୋମ ମହାଭୂତ
ପଞ୍ଚେନ୍ଦ୍ରିୟୁଁ ଏ ପଞ୍ଚର ସତ୍ୟାଂଶୁ ସଂଭୂତ ।
ରାଜସ ଅଂଶରୁ ପାଣି ପାଦ ଆଦି ହୁଏ
ଜ୍ଞାନକର୍ମେନ୍ଦ୍ରିୟେ କିନ୍ତୁ ଆତ୍ମା ଯୁକ୍ତ ନୁହେ ।
ସ୍ୱପ୍ନ ଜାଗରଣେ ଦେହେ ଇନ୍ଦ୍ରିୟନିଚୟ
ଦିବସେ ଦିବସେ ଯାଏ ପ୍ରଳୟ ଉଦୟ ।
ଇନ୍ଦ୍ରିୟ ଉଦୟ ଅସ୍ତେ ଆତ୍ମା ଅବାଧିତ
ବୁଝନ୍ତି ଏ ଆତ୍ମତତ୍ତ୍ୱ କେବଳ ପଣ୍ଡିତ ।
ଆତ୍ମାର ନ ଘଟେ କେବେ ପ୍ରଳୟ ଉଦୟ
ସତତ ଜାଗ୍ରତ ଆତ୍ମା ଅକ୍ଷୟ ଅବ୍ୟୟ ।
ଆତ୍ମା ଇନ୍ଦ୍ରିୟର ବୁଝି ଏହି ଭେଦାଭେଦ
ତରନ୍ତି ବିବେକୀ ଜନେ ସର୍ବ ଶୋକ ଖେଦ ।
ଇନ୍ଦ୍ରିୟ ଶରୀରେ ସାର ପ୍ରାଣୀ ଦେହ ଦ୍ୱାର
ସକଳ ଇନ୍ଦ୍ରିୟ ପରେ ମନ ଅଧିକାର ।
ଇନ୍ଦ୍ରିୟରୁ ବଳି ତେଣୁ ମନ ଶ୍ରେଷ୍ଠତର
ମନ ପରେ ବୁଦ୍ଧି, ପୁଣି ମହତ ତା ପର ।
ହିରଣ୍ୟଗରଭ ନାମେ ସେ ମହତ ଖ୍ୟାତ
ବିଶ୍ୱ ବୁଦ୍ଧି ସମବାୟ ସର୍ବ ବିଶ୍ୱ ବ୍ୟାପ୍ତ ।
ସେ ହିରଣ୍ୟଗର୍ଭ ପରେ ଅବ୍ୟକ୍ତ ପ୍ରଧାନ
ସାଂଖ୍ୟେ ଯା ପ୍ରକୃତି, ମାୟା ବେଦାନ୍ତେ ଯା ନାମ ।
ଅବ୍ୟକ୍ତ ପ୍ରକୃତି ପରେ ପୁରୁଷ ଉତ୍ତମ
ସର୍ବବ୍ୟାପୀ ସର୍ବେଶ୍ୱର ସତ୍ୟ ସନାତନ ।
ନାହିଁ ଯାର ଚିହ୍ନ, ନାହିଁ ଗୁଣ ରୂପ ନାମ
ସେହି ଏକା ପରମାତ୍ମା ଯେ ପରମ ଧାମ ।

ଜାଣେ ଏ ପରମ ତତ୍ତ୍ୱ, ସେ ପ୍ରାଣୀ ସଂସାରେ
ଲଭେ ଅମୃତତ୍ୱ, ଯାଏ ଭବସିନ୍ଧୁ ପାରେ ।
ଆତ୍ମାର ସ୍ୱରୂପ ନୁହେ ପ୍ରତ୍ୟକ୍ଷ ଗୋଚର
ଆତ୍ମାକୁ ନୟନେ କେହି ଦେଖି ନାହିଁ ନର ।
ସୁନିଶ୍ଚିତ ବୁଦ୍ଧିବଳେ କଲେ ଧୀର ଧ୍ୟାନ
ପ୍ରକାଶେ ମାନବ-ହୃଦେ ଶୁଦ୍ଧ ଆତ୍ମଜ୍ଞାନ
ଆତ୍ମା ବ୍ରହ୍ମକୁ ଯେ ଜାଣେ ଚିତ୍ତେ କରି ଲୟ
ଅମୃତ ସେ ମରଦେହ ଚିର ମୃତ୍ୟୁଞ୍ଜୟ ।
ଚକ୍ଷୁ ଯେବେ ବାହ୍ୟ ଦୃଶ୍ୟ ଦେଖି ନ ଦେଖଇ
କର୍ଣ୍ଣ ଯେବେ ବାହ୍ୟ ନାଦ ଶୁଣି ନ ଶୁଣଇ,
ସୁଗନ୍ଧ ଦୁର୍ଗନ୍ଧ ନାସା ନ କଲେ ଆଘ୍ରାଣ
ପରଶେ ନ ବୁଝେ ଦେହ ଶୀତ ଉଷ୍ଣ ଜ୍ଞାନ ।
ଆସ୍ୱାଦେ ନ ଜାଣେ ଜିହ୍ୱା ରସ ଭେଦାଭେଦ
ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ନିର୍ବେଦ ।
ଅନ୍ତର୍ମୁଖେ ରହେ ଯେବେ ମାନସ ଆୟତ୍ତ
ବିଷୟ ବ୍ୟାପାରେ ବୁଦ୍ଧି ନୁହେ ଅବିରତ ।
ଏକାନ୍ତ ଉଦାର ଶୁଦ୍ଧ ହୁଏ ଯେବେ ମତି
ଜ୍ଞାନୀ ଯୋଗୀଗଣ ମତେ ସେ ପରମଗତି ।
ବାହ୍ୟ ବିଷୟରୁ ଯେବେ ଇନ୍ଦ୍ରିୟ ବିରତ
ହୃଦୟ-କମଳେ ହୁଏ ମନ ଅଧିଗତ ।
ମାନସ ଧାରଣା ଦୃଢ଼ ସ୍ଥିର ସୁନିଶ୍ଚିତ
ହରଷେ ବିଷାଦେ ତିଳେ ନୁହେ ବିଚଳିତ ।
ଯୋଗେ ଅଧିରୂଢ଼ ତେବେ ସାଧକର ମତି
ହୁଏ ହୃଦେ ପୂର୍ଣ୍ଣାନନ୍ଦ ଆତ୍ମା ଅବଗତି ।
କଠିନ ଏ ଯୋଗମାର୍ଗ ଦୁଃସାଧ୍ୟ ସାଧନ
ଅଳପ ବିକ୍ଷିପ୍ତ ବ୍ୟଗ୍ର ହେଲେ ଏଥି ମନ,
ପ୍ରମାଦେ ବିଷମ ଗତି ଘଟେ ଅକସ୍ମାତେ
ପଡ଼ଇ ସାଧକ ମହା ଦୁସ୍ତର ବିତ୍‌ପାତେ ।
ତେଣୁ ଅତି ସାବଧାନେ ଏକାଗ୍ର ମାନସେ
ନିରୋଧି ଇନ୍ଦ୍ରିୟଗଣ ରଜନୀ ଦିବସେ,
ଜ୍ଞାନ-ଦୀପ ଜାଳି କର ଚିତ୍ତ ସମାହିତ
ଆତ୍ମ ଦରଶନେ ଯେବେ ବାଞ୍ଛ ନିତ୍ୟ ହିତ ।

ଅଜ୍ଞେୟ ଯେ ମନ ବାକ୍ୟ ଇନ୍ଦ୍ରିୟ ସଂଯୋଗେ
ଗୋଚର କେବଳ ହୃଦେ ଜ୍ଞାନ ଧ୍ୟାନ ଯୋଗେ ।
ଆସ୍ତିକ ବିଶ୍ୱାସୀ ଗୁରୁ ବିନା କିଏ ଆନ
ଦେଇପାରେ ସେ ଅନାଦି ବ୍ରହ୍ମତତ୍ତ୍ୱ ଜ୍ଞାନ ?
ପାଷଣ୍ଡ ନାସ୍ତିକଗଣ ବ୍ରହ୍ମେ ଅବିଶ୍ୱାସୀ
ଦୂରେ ତାଙ୍କ ସଙ୍ଗ ତେଜ ଅମୃତପ୍ରୟାସୀ ।
ନିର୍ଗୁଣ ସଗୁଣ ଆତ୍ମା ଉଭୟ ପ୍ରକାର
ସଗୁଣ ଉପାଧି ବଶେ ସୃଷ୍ଟି ଏ ସଂସାର ।
ବିନା କାରଣରେ କାହିଁ କାର୍ଯ୍ୟର ଉଦ୍‌ଭବ ?
ଆତ୍ମା ବିନା ଏ ସଂସାରେ ସୃଷ୍ଟି ଅସମ୍ଭବ ।
ଗୁରୁ ଉପଦେଶ ଲଭି ଏ ତତ୍ତ୍ୱ ନିଶ୍ଚୟ
ଆତ୍ମାର ଅସ୍ତିତ୍ୱେ ଆଦ୍ୟେ କରିବ ପ୍ରତ୍ୟୟ ।
ଧୀର ଭାବେ ଅନୁଭବି ନିଜ ହୃଦଗତି
ଦେଖି ବିଶ୍ୱ ସୃଷ୍ଟି କ୍ରିୟା ସୁସଂଯତ ମତି ।
'ଅଛନ୍ତି ସେ ପରମାତ୍ମା ନିତ୍ୟ ବିରାଜିତ'
ଏ ସତ୍ୟ ବିଶ୍ୱାସ ଯେବେ କରେ ଦୃଢ଼ଚିତ୍ତ;
ତତ୍ତ୍ୱଭାବ ହୁଏ ତେବେ ଅନ୍ତରେ ପ୍ରକାଶ
ଉପାଧି-ରହିତ ବ୍ରହ୍ମେ ଉପୁଜେ ବିଶ୍ୱାସ ।
ଅବ୍ୟୟ ଅକ୍ଷୟ ନିତ୍ୟ ଆତ୍ମତତ୍ତ୍ୱ ଭାବ
ଅନୁକ୍ଷଣ ଅନୁଭବ ହୁଏ ତାର ଲାଭ ।
ପୂର୍ବରୁ ପୋଷିତ ଯେତେ କାମନାନିଚୟ
ତତ୍ତ୍ୱଭାବ ଲାଭେ ହୃଦୁଁ ଯାଏ ସବୁ କ୍ଷୟ ।
ଏ ମର ସଂସାରେ ତେବେ ମାନବ ଅମୃତ
ଲଭେ ବ୍ରହ୍ମାନନ୍ଦ ବ୍ରହ୍ମେ ହୁଏ ଏକୀଭୂତ ।
'ମୁଁ' 'ମୋର' ମମତାମୟ ହୃଦଗ୍ରନ୍ଥିଚୟ
ହୁଏ ଯେବେ ଛିନ୍ନ ଭିନ୍ନ ତୁଟେ ଭବଭୟ ।
ଅଜ୍ଞାନ ଜଡ଼ତା ମୋହ ଦୂରେ ଅପସରେ
ବ୍ରହ୍ମ-ଆତ୍ମା ଏକଭାବ ବାହ୍ୟ ଅଭ୍ୟନ୍ତରେ ।
ମର୍ତ୍ତ୍ୟଲୋକେ ମର ଦେହେ ମାନବ ଅମୃତ
ଏ ପରମ ଉପଦେଶ ବେଦାନ୍ତ ନିଃସୃତ ।

ପ୍ରସରିଛି ହୃଦୁଁ ନାଡ଼ୀ ଏକୋତ୍ତର ଶତ
ତା ମଧ୍ୟେ ସୁଷୁମ୍ନା[୩୮] ଉର୍ଦ୍ଧ୍ୱେ ବ୍ରହ୍ମରନ୍ଧ୍ରଗତ ।
ଜ୍ଞାନବଳେ ଜୀବନ୍ମୁକ୍ତ ନ ହୁଏ ଯେ ନର
ଉପାସନା ଅନୁସାରେ ପାଏ ଲୋକାନ୍ତର ।
ମରଣେ ଯେ ଉର୍ଦ୍ଧ୍ୱେ ଯାଏ ସୁଷୁମ୍ନା ଆଶ୍ରୟେ
ବ୍ରହ୍ମଲୋକେ ଅମୃତତ୍ୱ ଭୋଗେ ସେ ନିର୍ଭୟେ ।
ଭିନ୍ନ ଭିନ୍ନ ଲୋକେ ଯାଏ ଅନ୍ୟ ନାଡ଼ୀ ଯୋଗେ
ନିଜ କର୍ମ ଅନୁରୂପେ ସୁଖ ଦୁଃଖ ଭୋଗେ ।
ବ୍ରହ୍ମତତ୍ତ୍ୱ କଥା ଯେତେ କଲି ମୁଁ ପ୍ରଚାର
ଶୁଣ ନଚିକେତ, ଏବେ ସେସବୁର ସାର ।
ପ୍ରାଣିଗଣ ହୃଦପଦ୍ମେ ସଦା ବିଦ୍ୟମାନ
ଅନ୍ତରାତ୍ମା ପୁରୁଷ, ସେ ଅଙ୍ଗୁଷ୍ଠ ପ୍ରମାଣ ।
ଗୁଞ୍ଜାଗର୍ଭୁ[୩୯] ମଞ୍ଜ ସମ ସେ ପୁରୁଷୋତ୍ତମେ
ନିଜ ଦେହୁଁ ଭିନ୍ନ କରି ଧୈର୍ଯ୍ୟ ଶମ[୪୦] ମମେ ।
ସେ ଅନ୍ତର୍ଯ୍ୟାମୀଙ୍କୁ ଶୁଦ୍ଧ ବ୍ରହ୍ମ ବୋଲି ଜାଣ
ସେହି ବିଶ୍ୱଆତ୍ମା, ସେହି ସର୍ବପ୍ରାଣୀ ପ୍ରାଣ ।"
ଯମରାଜା କହିଲେ ଯେ ବ୍ରହ୍ମତତ୍ତ୍ୱଜ୍ଞାନ
କହିଲେ ଯେ, ଯୋଗଫଳ ସାଧନ ବିଧାନ,
ବୁଝି ହୃଦେ ଅନୁଧ୍ୟାଇ ସେ ତତ୍ତ୍ୱ ସକଳ
ହେଲେ ନଚିକେତା ଶୁଦ୍ଧ ନିର୍ଦ୍ଦୋଷ ନିର୍ମଳ ।
ଅବିଦ୍ୟାର ମୋହଗନ୍ଧ ଗଲା ହୃଦୁଁ ତୁଟି
ଉଠିଲା ଅନ୍ତରେ ପୂର୍ଣ୍ଣ ଆତ୍ମତତ୍ତ୍ୱ ଫୁଟି ।
ମୁକ୍ତ ହୋଇ ନଚିକେତା ଗଲେ ମୃତ୍ୟୁ ପାରେ
ଆତ୍ମତତ୍ତ୍ୱ ଅନ୍ୟ ଯେହୁ ଜାଣିବେ ସଂସାରେ ।
ନଚିକେତା ସମ ସେହୁ ଲଭିବେ ମୁକତି
ହେବ ବ୍ରହ୍ମପଦ ପ୍ରାପ୍ତି, ଘୁଞ୍ଚିବ ଦୁର୍ଗତି ।

ତୃତୀୟ ବଲ୍ଲୀ ସମାପ୍ତ ।

---

୩୮- ମେରୁଦଣ୍ଡରେ ଥିବା ଇଡ଼ା ଓ ପିଙ୍ଗଳା ନାଡ଼ୀ ମଧ୍ୟସ୍ଥ ନାଡ଼ୀବିଶେଷ; ୩୯- କାଇଞ୍ଚଫଳର ଗର୍ଭରୁ; ୪୦- ଶାନ୍ତି/ମନଃସଂଯମ

## ଚତୁର୍ଥ ବଲ୍ଲୀ

ଯମଠାରୁଁ ନଚିକେତା ଲଭି ବ୍ରହ୍ମଜ୍ଞାନ
ବାହୁଡ଼ି ମିଳିଲେ ଆସି ପିତୃ ସନ୍ନିଧାନ ।
ଅଚେତନ ପିଣ୍ଡେ ଯେବେ ଜାଗିଲା ଚେତନା
ଉଠି ପୁତ୍ର କଲେ ପିତୃଚରଣ ବନ୍ଦନା ।
ଜୀବନ୍ତ ତନୟେ ଦେଖି ପିତା ହରଷିତ
ଦରିଦ୍ର ପାଇଲେ ଯଥା ଚିରହରା-ବିତ୍ତ ।
"ଧନ୍ୟ ନଚିକେତା, ଧନ୍ୟ ତୋର ପୁଣ୍ୟରାଶି !
ତ୍ରିପୁର ଜିଣିଲୁ ବାବୁ ହୋଇ ମର୍ତ୍ତ୍ୟବାସୀ ।
ଦୈବବଳେ ପାଇଲୁ ତୁ ଜନମ ଆବର
ତୋର ଏ ଶରୀର ନୁହେଁ ନର କଳେବର ।
କହ ପୁତ୍ର, ଦେଖିଲୁ ତୁ କିସ ମୃତ୍ୟୁପରେ
କି କର୍ମେ କି ଫଳ ଜନ ଲଭେ ଯମଘରେ ?"
ଋଷିଗଣ ମଧ୍ୟେ ତହୁଁ ଯୋଡ଼ି ବେନିକର
ସବିନୟେ ନଚିକେତା କରନ୍ତି ଉତ୍ତର,
"ତବ ଆଜ୍ଞା ମାନି ପିତା ଗଲି ଯମାଳୟ
ଦେଖିଲି ଶମନ-ସଭା ଅତି ଶୋଭାମୟ ।
ବିଶାଳ ସେ ସଭା ଦଶ ସହସ୍ର ଯୋଜନ
ନାନା ରତ୍ନେ ସୁଖଚିତ କନକ ବରଣ ।
ଦେଖି ମତେ ଯମରାଜା ଭୃତ୍ୟ ମୁଖ ଚାହିଁ
କହିଲେ ଆସନ ଆଣି ଶୀଘ୍ର ଦେବା ପାଇଁ ।
ତୁମ୍ଭର ସୁକୃତେ ମତେ ଅର୍ଘ୍ୟାଦି ବିଧାନେ
ପୂଜିଲେ ସେ ଯମରାଜା ବିହିତ ସମ୍ମାନେ ।
ବହୁତ ଆଦର କଲେ ଯମ ଭୃତ୍ୟଗଣ
କହିଲି ମୁଁ ଜନ୍ତୁରାଣେ ବିନୟ ବଚନ,
'ତବ ପାଶେ ଉପଗତ ହୋଇଛି ମୁଁ ଆଜ
ଯହିଁ ମୋ ଉଚିତ ସ୍ଥାନ ଦିଅ ଧର୍ମରାଜ ।'
କହିଲେ ସେ ଯମ ମତେ, 'ମରି ନାହଁ ଏବେ
ପିତା ତବ କହିଛନ୍ତି– ଦେଖ ଯମଦେବେ ।

ଅନଳ ପ୍ରତିମ ଋଷି କହିଲେ ଯେ କଥା
କାହାର କ୍ଷମତା ତାହା କରିବ ଅନ୍ୟଥା ।
ତେଣୁ ତୁମ୍ଭେ ଆସିଅଛ ଶମନ-ସଦନେ
ଦେଖିଅଛ ମତେ ଏବେ ଯାଅ ସ୍ୱ-ଭବନେ ।
ତୁମ୍ଭଙ୍କୁ ନ ଦେଖି ପିତା ଅତ୍ୟନ୍ତ କାତର
ଶୀଘ୍ର ଯାଅ ନଚିକେତ, ବିଳମ୍ବ ନ କର ।
ମୋ ପୁରେ ଅତିଥି ତୁମ୍ଭେ ଯାହା ଇଚ୍ଛା ମାଗ
ସାଦରେ ଏକ୍ଷଣେ ସବୁ ଦେବି ମହାଭାଗ !'
ଯମରାଜ ବାକ୍ୟେ ମୁହିଁ କଲି ନିବେଦନ–
''ଆସିଅଛି ତବ ପୁରେ ହେ ଯମରାଜନ !
ଏ ଦେଶକୁ ଆସି କେହି ବାହୁଡ଼ି ନ ଯାଏ
ବର ଅନୁଗ୍ରହ ଯେବେ କର ଜନ୍ତୁରାୟେ ।
ଲଭନ୍ତି ସୁକୃତବନ୍ତ ଜନେ ଯେ ଯେ ଦେଶ
ଦେଖିବି ସେ ସବୁ ଦେବ କର ହେ ଆଦେଶ ।''
ତହୁଁ ଯମ ବସାଇଲେ ମତେ ଦିବ୍ୟଯାନେ
ନିଜ ପୁରେ ବୁଲାଇଲେ ନେଇ ନାନା ସ୍ଥାନେ ।
ବସନ୍ତି ପ୍ରମୋଦେ ଯହିଁ ପୁଣ୍ୟବନ୍ତ ଜନ
ଦେଖିଲି ସବୁ ସେ ଦିବ୍ୟ ଚାରୁ ନିକେତନ ।
ସର୍ବ ରତ୍ନ ସୁଶୋଭିତ ବିଚିତ୍ର ଗଠନ
ଉଜ୍ଜ୍ୱଳ ଅପୂର୍ବ ତେଜେ ସକଳ ଭବନ ।
ଚନ୍ଦ୍ରମାମଣ୍ଡଳ ସମ ଶୁଭ୍ର ରମ୍ୟପୁର
ଯଥାସ୍ଥାନେ ଶୋଭେ ମଣି କିଙ୍କିଣୀ ନୂପୁର ।
ବହୁତଳ ପ୍ରାସାଦ ସେ ଅତି ଶୋଭାବନ
ପୁର ମଧ୍ୟେ ରାଜେ ପୁଣି ସର ଉପବନ ।
ମାଣିକ୍ୟ ବୈଦୁର୍ଯ୍ୟେ ଝଳେ ରବି ପ୍ରଭା ସମ
ସ୍ୱର୍ଣ୍ଣ ରୌପ୍ୟ କାରୁକାର୍ଯ୍ୟ ଅତି ଅନୁପମ ।
ସ୍ଥାବର ବା ଅସ୍ଥାବର ଯାହା ସେ ଭବନେ
ସର୍ବେ ଯଥା ଝକମକ ବାଳାର୍କ କିରଣେ ।
ସୁଚାରୁ ବସନ କେତେ ସୁକୋମଳ ଶଯ୍ୟା
ହୋଇଅଛି ଶୈଳପରେ ଭକ୍ଷ୍ୟ ଭୋଜ୍ୟ ସଜ୍ଜା ।

ନାନା ଜାତି ଫଳ ଲତା ଯହିଁ ସୁଶୋଭିତ
ଫଳେ ଇଚ୍ଛା ଅନୁରୂପ ଫଳ ଅଗଣିତ ।
ବହେ କେତେ ନଦୀ, ଶୋଭେ ବାପୀ ପୁଷ୍କରିଣୀ
ଗିରି ଦେହୁଁ ବହେ କାହିଁ ସ୍ୱଚ୍ଛ ନିର୍ଝରିଣୀ ।
କାହିଁ ବହେ ଘୃତଧାରା, କାହିଁ ଦୁଗ୍ଧଧାରା
ଦୀର୍ଘନାଦୀ ଯାନଜାଳେ ପୂର୍ଣ୍ଣ ପଥସାରା ।
ଦେଖିଲି ଏପରି ବହୁ ଅପୂର୍ବ ଭବନ
ଅବଶେଷେ ଧର୍ମରାଜେ କଲି ନିବେଦନ,
'କହ ଦେବ, ଦିଶେ ଏ ଯେ ସରିତ ନିବହ
ଘୃତ ଦୁଗ୍ଧ ସ୍ରୋତ ଯହିଁ ବହେ ଅହରହ ।
କାହା ଉପଭୋଗ ଲାଗି ସୃଷ୍ଟି ଏ ସକଳେ ?
ବୋଲେ ଯମ, 'ନଚିକେତ, ଶୁଣ ହେ ନିଶ୍ଚଳେ ।
କରନ୍ତି ଗୋରସ ଦାନ ଯେଉଁ ସାଧୁଜନ
ସେହି ଏକା ଏ ସରିତ ସମ୍ଭୋଗେ ଭାଜନ ।
ଯଥାବିଧି ଗୋ ପ୍ରଦାନ କରନ୍ତି ଯେ ନରେ
ପାଆନ୍ତି ସେ ଏଥୁଁ ବଳି ଭୋଗ ଲୋକାନ୍ତରେ ।
ସୁଲକ୍ଷଣବତୀ ଗାଭୀ ବୁଝି କାଳ ବିଧି
ଯୋଗ୍ୟପାତ୍ରେ ଦାନ ଦେଲେ ମିଳେ ସର୍ବସିଦ୍ଧି ।'
ନାନାବିଧ ଗୋଦାନରେ ନାନାବିଧ ଫଳ
ବିଶେଷେ କହିଲେ ଯମ ବୁଝାଇ ସକଳ ।
ଗୋଦାନେ ଭୋଗଇ ନର ସ୍ୱର୍ଗେ ମହାସୁଖ
ଗୋଦାନେ କଦାପି ପିତା ନ ହୁଅ ବିମୁଖ ।
ଉପଯୁକ୍ତ ଗାଭୀ ଦିଅ ଉପଯୁକ୍ତ ଜନେ
ଗୋଦାନର ଫଳ ମୁଁ ତ ଦେଖିଲି ନୟନେ ।
ଗୋଦାନ ସମାନ ନୁହେ ଅନ୍ୟ ମୋର ମତେ
କରନ୍ତୁ ମାନବ ସର୍ବେ ଗୋସେବା ଜଗତେ ।''
ଇହ ପରକାଳେ ସୁଖ ଗୋସେବା, ଗୋଦାନେ
ଗୋଜାତିକୁ ପାଳ ଜନେ ସଦା ସାବଧାନେ ।

ଦ୍ୱିତୀୟ ଅଧ୍ୟାୟ ଚତୁର୍ଥ ବଲ୍ଲୀ ସମାପ୍ତ ।

---

# ପ୍ରାକ୍-ସୂଚନା

ସ୍ୱର୍ଗତ ରାଧାନାଥ ରଥ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଦ୍ୱାରା 'ଅବକାଶ ଚିନ୍ତା'ର ପରିବର୍ଦ୍ଧିତ ଓ ନୂତନ ସଂସ୍କରଣ ୧୯୪୨ ମସିହାରେ ପ୍ରକାଶ କରି ତାହାର 'ସୂଚନା'ରେ ଲେଖିଥିଲେ :

> ଏବେ ଏହି ''ଅବକାଶଚିନ୍ତା''ରେ ଯେ ତାଙ୍କର ସବୁ ଲେଖାର ଶେଷ ସଂଗ୍ରହ-ହୋଇଗଲା, ତାହା ମଧ୍ୟ କୁହାଯାଇପାରୁନାହିଁ । କାରଣ ସେ କାଳର ପ୍ରକାଶିତ ଉତ୍କଳର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିବା ତାଙ୍କର ସବୁ ଲେଖା ପୂରା-ସଂଗ୍ରହ କରିବା ଏପର୍ଯ୍ୟନ୍ତ ସମ୍ଭବ ହୋଇପାରିନାହିଁ । କାଁ ଭାଁ କେଉଁଠାରେ ରହିଯାଇଥିବାର ଆଶଙ୍କା ହୁଏ ।

'କାଁ ଭାଁ ରହିଯାଇଥିବା' ଅଳ୍ପ କେତେକ କବିତା ସ୍ୱର୍ଗତ ରଥ ବିଭିନ୍ନ ସୂତ୍ରରୁ ସଂଗ୍ରହ କରି ସଂପାଦକୀୟ ମନ୍ତବ୍ୟ ସହ ୧୯୬୦ ପରବର୍ତ୍ତୀ 'ସମାଜ'ର ଗୋପବନ୍ଧୁ-ଶ୍ରାଦ୍ଧ ସଂଖ୍ୟାରେ ମୁଦ୍ରିତ କରାଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ଗୋପବନ୍ଧୁ ରଚନାବଳୀ'ର ପ୍ରଥମଭାଗର ପରିଶିଷ୍ଟରୂପେ ସେଥିରୁ ଛ'ଟି କବିତା 'ସମାଜ'ର ସଂପାଦକୀୟ ମନ୍ତବ୍ୟ ସହ ବିନା ସ୍ୱୀକୃତିରେ ପୁନଃମୁଦ୍ରିତ । ସେହି ଛଅଟିକବିତାସହ ୧୯୭୦ ମସିହାରେ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ପ୍ରକାଶିତ-ମଧୁସୂଦନ ପଟ୍ଟନାୟକଙ୍କ 'ଗୋପବନ୍ଧୁ-ସ୍ମୃତି' ପ୍ରବନ୍ଧରୁ ଗୋଟିଏ ଅସଂପୂର୍ଣ୍ଣ କବିତା ଓ ଅନ୍ୟ ସୂତ୍ରରୁ ଆଉ ଦୁଇଟି କବିତା ସଂଗ୍ରହ କରାଯାଇ ଏଠାରେ ପୁନଃମୁଦ୍ରିତ ।

ପ୍ରସଂଗକ୍ରମେ ସୂଚନାଯୋଗ୍ୟ, ଡକ୍ଟର ନଟବର ସାମନ୍ତରାୟ ସଂଗୃହୀତ ହୋଇନଥିବା ଗୋପବନ୍ଧୁଙ୍କର ଚାରୋଟି କବିତା କଥା କହିଛନ୍ତି । ସେଗୁଡିକ ହେଲା – କବିସୂର୍ଯ୍ୟ ବଳଦେବ ରଥ, ପ୍ରତାପରୁଦ୍ର ଦେବ, ଗଦାଧର୍ ରାଜଗୁରୁ ଓ ମୁକୁନ୍ଦଦେବ । ପ୍ରଥମ ତିନୋଟି କବିତା 'ମୁକୁର' ପ୍ରଥମ ବର୍ଷର ଅଷ୍ଟମ, ନବମ ଓ ଦଶମ-ଏକାଦଶ ସଂଖ୍ୟାରେ ପ୍ରକାଶିତ ହୋଇଥିବା ବେଳେ ଓ ଶେଷ କବିତା ସତ୍ୟବାଦୀ ତ୍ରିପାଠୀଙ୍କ 'ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ' ପୁସ୍ତକରେ ଉଦ୍ଧୃତ ଓ ଆଲୋଚିତ ହୋଇଥିବା କଥା ସେ କହିଛନ୍ତି । (କବି ଗୋପବନ୍ଧୁଙ୍କ କାବ୍ୟସୃଷ୍ଟି ମାନସ : ଏକ ସର୍ବେକ୍ଷଣ; ପୃ.୧୩୮-୩୯) ପ୍ରଥମ ତିନିଗୋଟି କବିତାର ଲେଖକ ସ୍ଥାନରେ କାହାରି ନାମ ନଥିବାରୁ ସେଗୁଡ଼ିକର ପିତୃତ୍ୱ ଗୋପବନ୍ଧୁଙ୍କୁ ସେ ନିର୍ବିବାଦରେ ଅର୍ପଣ କରିଛନ୍ତି । 'ମୁକୁର' ମାସିକ ପତ୍ରିକାର ପ୍ରଥମ ବର୍ଷର ବାର୍ଷିକ ସୂଚୀରେ 'କବିସୂର୍ଯ୍ୟ ବଳଦେବ ରଥ' ଓ 'ପ୍ରତାପରୁଦ୍ର ଦେବ' କବିତାର ଲେଖକ ଭାବରେ

ମୃତ୍ୟୁଞ୍ଜୟ ରଥଙ୍କ ନାମର ଉଲ୍ଲେଖ ଥିଲାବେଳେ, 'ଗଦାଧର ରାଜଗୁରୁ' କବିତାର କବି ଭାବରେ ଅନନ୍ତ ରଥଙ୍କ ନାମୋଲ୍ଲେଖ କରାଯାଇଛି । ସତ୍ୟବାଦୀ ତ୍ରିପାଠୀ ଓ ବାଉରୀବନ୍ଧୁ ତ୍ରିପାଠୀଙ୍କ ପୁସ୍ତକରେ ଥିବା ଯେଉଁ ବିବରଣୀକୁ ଆଧାର କରି ଡକ୍ଟର ସାମନ୍ତରାୟ ଗୋପବନ୍ଧୁଙ୍କ 'ମୁକୁନ୍ଦଦେବ' କବିତା କଥା କହିଛନ୍ତି, ତାହାହେଲା :

ଇତିହାସର ଚର୍ଚ୍ଚା ସଙ୍ଗେ ସଙ୍ଗେ ସାହିତ୍ୟ ଚର୍ଚ୍ଚା ସେ କରୁଥିଲେ । ଜଗନ୍ନାଥ ଦାସ, ବଳରାମ ଦାସଙ୍କଠାରୁ ଆରମ୍ଭ କରି ଅନଙ୍ଗଭୀମ, ପୁରୁଷୋତ୍ତମ ଦେବଙ୍କ ପର୍ଯ୍ୟନ୍ତ ସେ ସମସ୍ତଙ୍କୁ ପୂଜାକରୁଥିଲେ । ଏପରିକି ଏହି ମୁକୁନ୍ଦଦେବଙ୍କ ଶେଷ କାଳରେ ପୁରୀ ରାଜାଙ୍କର ଦୁର୍ଗତି ଓ ଦୁରବସ୍ଥା ଦେଖି ଅତ୍ୟନ୍ତ ମର୍ମାହତ ହୋଇ ସେ ଲେଖିଥିଲେ :

"କରପୂର ଉଡି କନାଥିଲେ ପଡି"
କନା ରଖିଥାଏ କର୍ପୂର ସ୍ମୃତି..." ଇତ୍ୟାଦି (ପୃ.୧୮୦-୧୮୧)

'ବନ୍ଦୀର ସ୍ୱଦେଶ ଚିନ୍ତା'ରେ ଥିବା ଏହି ଉଦ୍ଧୃତିକୁ ଦେଖି ମଧ୍ୟ ସାମନ୍ତରାୟ କିଭଳି ଏହାକୁ ଏକ ସ୍ୱତନ୍ତ୍ର କବିତା ବୋଲି ଭାବିପାରିଲେ, ତାହାହିଁ ଆଶ୍ଚର୍ଯ୍ୟର ବିଷୟ । ପ୍ରଥମ ତିନୋଟି ଗୋପବନ୍ଧୁଙ୍କର ଲେଖାନଥିଲା, ଚତୁର୍ଥ କବିତାଟି ଅସ୍ତିତ୍ୱହୀନ ।

ଏଠାରେ ସଂକଳିତ ନଅଟି କବିତା/କବିତାଂଶ ପ୍ରଥମେ ନିମ୍ନଲିଖିତ ପତ୍ରିକା/ ପୁସ୍ତକରେ ସ୍ଥାନିତ ହୋଇଥିଲା–

ପ୍ରଥମ କବିତା 'ପ୍ରାର୍ଥନା' ପ୍ରକାଶିତ ହୋଇଥିଲା ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଂକଳିତ/ସଂପାଦିତ ଓ ୧୯୦୪ ମସିହାରେ ପ୍ରକାଶିତ 'ଜାତୀୟ ସଙ୍ଗୀତ' ପୁସ୍ତକରେ । ସଂପୃକ୍ତ ପୁସ୍ତକର ଭୂମିକାରେ ବିଦ୍ୟାରତ୍ନ 'ଜାତୀୟ ସଂଗୀତ' ପୁସ୍ତକ ସଂକଳନର ଇତିହାସ ପ୍ରଦାନ କରି କହିଛନ୍ତି ଯେ ଏଥିରେ ସ୍ଥାନିତ ସଂଗୀତଗୁଡ଼ିକ ଏକ ବର୍ଷ ପୂର୍ବେ ସଂଗୃହୀତ ହୋଇଥିଲେ ମଧ୍ୟ ଅର୍ଥାଭାବରୁ ମୁଦ୍ରିତ ହୋଇ-ପାରିନଥିଲା । ତେଣୁ 'ପ୍ରାର୍ଥନା' କବିତାର ରଚନାକାଳ ୧୯୦୩ ମସିହା ଓ 'ଅବକାଶଚିନ୍ତା' କବିତା-ସଂକଳନର ପ୍ରକାଶ ପରେ ଏହା ଗୋପବନ୍ଧୁଙ୍କର ପ୍ରଥମ ପ୍ରକାଶିତ କବିତା ।

ଦ୍ୱିତୀୟ କବିତାଟି ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓଙ୍କ ପୃଥିବୀଭ୍ରମଣ ଉପଲକ୍ଷେ ହୋଇଥିବା ବିଦାୟ ସଭାରେ ପଠିତ । ଏ ସଂପର୍କରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ବାରିପଦାରୁ ପ୍ରକାଶିତ 'ମନୋରମା' ପତ୍ରିକା ଆଧାରରେ କହନ୍ତି :

୧୯୧୦ ମେ ମାସରେ ମୟୂରଭଞ୍ଜର ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ପୃଥିବୀ ଭ୍ରମଣରେ ବାହାରିଥିଲେ ।... ମହାରାଜା ଏ ଭ୍ରମଣରେ ବାହାରିବା ପୂର୍ବରୁ ବାରିପଦାରେ ଏକ ବିଦାୟ ସଭା ଅନୁଷ୍ଠିତ ହୋଇଥିଲା ।

ସଭାରେ ବହୁ ଲୋକ ଉପସ୍ଥିତ ଥିଲେ । ମହାରାଜାଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରି ଓ ତାଙ୍କର ଶୁଭକାମନା କରି ସଭାରେ ବୋଲାହେବା ନିମନ୍ତେ ଗୋପବନ୍ଧୁ ବାବୁ ଏକ ସଙ୍ଗୀତ ରଚନା କରିଥିଲେ । ଏଥିର କେତୋଟି ପଦ ଏହିପରି –
(ଉତ୍କଳମଣି ଗୋପବନ୍ଧୁ, ପୃ.୯୯)

'ମନୋରମା'ରେ ପ୍ରକାଶିତ ଓ ପଣ୍ଡିତ ଦାଶଙ୍କ ଦ୍ୱାରା ଉଦ୍ଧୃତ ସଙ୍ଗୀତ ଏଠାରେ 'ବିଦାୟ ସଙ୍ଗୀତ' ଶୀର୍ଷକରେ ମୁଦ୍ରିତ । ଉଦ୍ଧୃତ ସଂଗୀତାଂଶ ଗୀତିକାଟିର ଅଂଶ-ବିଶେଷ ମାତ୍ର । ସମଗ୍ର ଗୀତିକାଟି ଆଜି ମିଳିବା ସମ୍ଭବ ନୁହେଁ । ଗୋପବନ୍ଧୁ ଶ୍ରାଦ୍ଧ-ସଂଖ୍ୟାରେ ପ୍ରକାଶିତ ଏକ ପ୍ରବନ୍ଧରେ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ଏଇ କେତେପଦ ସ୍ମୃତିରୁ ଉଦ୍ଧାର କରି ଲେଖିଛନ୍ତି । ସ୍ମୃତିରୁ ଲେଖିଥିବା ହେତୁ 'ମୟୂରଭଞ୍ଜରେ ଉତ୍କଳମଣି ଗୋପବନ୍ଧୁ' ପ୍ରବନ୍ଧରେ ଉଦ୍ଧୃତ କବିତାରେ ପଦଗୁଡ଼ିକର ଯଥାର୍ଥ କ୍ରମ ରକ୍ଷା କରାଯାଇ ପାରିନାହିଁ ।

ତୃତୀୟ କବିତା 'ସରଳତା' ପ୍ରଥମେ ବ୍ରଜସୁନ୍ଦର ଦାସଙ୍କ 'ମୁକୁର' ପତ୍ରିକାର ଷଷ୍ଠ ଭାଗ ତୃତୀୟ ସଂଖ୍ୟାରେ (ଜୁନ, ୧୯୧୧) ପ୍ରକାଶିତ ହୋଇଥିଲା ।

ଚତୁର୍ଥ କବିତା 'ଜାଗରଣ' ମଧ୍ୟ 'ମୁକୁର' ପତ୍ରିକାର ଅଷ୍ଟମ ବର୍ଷ ଦଶମ-ଏକାଦଶ ଯୁଗ୍ମସଂଖ୍ୟା (ଜାନୁଆରୀ-ଫେବ୍ରୁଆରୀ, ୧୯୧୪)ରେ ପ୍ରଥମେ ପ୍ରକାଶିତ । 'ସରଳତା' ଓ 'ଜାଗରଣ'– ଏହି ଉଭୟ କବିତା ଡକ୍ଟର ନଟବର ସାମନ୍ତରାୟଙ୍କ ଦ୍ୱାରା ସଂଗୃହୀତ ହୋଇ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ପୁନଃମୁଦ୍ରିତ ହୋଇଥିଲା ।

ପଞ୍ଚମ କବିତା 'ଭକ୍ତର ମୃତ୍ୟୁ' ଗୋପବନ୍ଧୁଙ୍କ ସଂପାଦିତ 'ସତ୍ୟବାଦୀ' ପତ୍ରିକାର ତୃତୀୟ ଖଣ୍ଡ ତୃତୀୟ ଓ ଚତୁର୍ଥ ସଂଖ୍ୟା (ଜୁନ୍-ଜୁଲାଇ, ୧୯୧୭)ରେ ପ୍ରଥମେ ପ୍ରକାଶିତ । ଷଷ୍ଠ କବିତାଟି କାଶିମ୍ ବଜାରର ରାଜାସାହେବଙ୍କ ସତ୍ୟବାଦୀ ବିଦ୍ୟାଳୟ ପରିଦର୍ଶନ ଅବସରରେ ସ୍ୱାଗତ କରିବାପାଇଁ ରଚିତ । ସ୍ମୃତିରୁ ଲିଖିତ ହୋଇଥିବାରୁ କବିତାର ପ୍ରଥମପାଦର କିଛି ଅଂଶ ଓ ମଝିରୁ କିଛି ଅଂଶ ସଂଗୃହୀତ ହୋଇପାରିନାହିଁ । କବିତାର ପରିଚୟ ଦେଇ ସତ୍ୟବାଦୀ ବିଦ୍ୟାଳୟର ସେ ସମୟର ଛାତ୍ର କାଶୀନାଥ ମିଶ୍ର ଲେଖିଛନ୍ତି :

> ବଙ୍ଗପ୍ରଦେଶର କାଶିମ ବଜାରର ରାଜାସାହେବଙ୍କର ଅଭ୍ୟର୍ଥନା ପାଇଁ ପଣ୍ଡିତ ନୀଳକଣ୍ଠଙ୍କ ଉପରେ ଗୋଟିଏ ଗୀତ ରଚନା କରିବାର ଭାର ଦେଇ ବାପ୍ପେ ଆପଣେ ପୁରୀ ଚାଲିଯାଇଥିଲେ । ସନ୍ଧ୍ୟାରେ ଫେରିଆସି ଉକ୍ତ କବିତାର ଆବୃତ୍ତି ଶୁଣିଲେ, ମାତ୍ର ତାହା ଶ୍ରୁତିମଧୁର କିମ୍ବା ବୋଧଗମ୍ୟ ନହେବାରୁ ପାଞ୍ଚ ମିନିଟ୍ ମଧ୍ୟରେ ଗୋଟିଏ କବିତା ମୁହେଁ ମୁହେଁ ଆବୃତ୍ତି କରି-ଦେଇଥିଲେ । (ମିଶ୍ର : ୧୯୭୮, ପୃ. ୭୮)

ସପ୍ତମ କବିତାଂଶଟି ମଧୁସୂଦନ ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ଓ ୩.୬.୧୯୭୦ ମସିହାରେ ପ୍ରକାଶିତ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ପ୍ରକାଶିତ 'ଗୋପବନ୍ଧୁ-ସ୍ମୃତି' ପ୍ରବନ୍ଧରୁ ସଂଗୃହୀତ। ଏହି ଅସଂପୂର୍ଣ୍ଣ କବିତାର ରଚନା ପ୍ରସଙ୍ଗରେ ଶ୍ରୀ ପଟ୍ଟନାୟକ କହନ୍ତି :

ମୋତେ ଚାହିଁ ଗୋପବନ୍ଧୁ ବାବୁ କହିଲେ, 'ମଧୁ, ତୋ' ପାଖରେ କାଗଜ, ପେନ୍‌ସିଲ ଅଛି ?' ମୁଁ କହିଲି, 'ଆଜ୍ଞା ଅଛି' । ସେ କହିଲେ 'କବିତା ପଦେ ବାହାରିପଡୁଛି – ଲେଖିନେ; କହି ଗାଇଲେ... ମୁଁ କହିଲି 'ଆଜ୍ଞା ଏତିକି ?' ସେ କହିଲେ 'ଏଇନେ ଆଉ ହୋଇପାରିବନାହିଁ । ଏ ପଦକ ଆଉ କେତେ-ବେଳେ ମନେପଡିଗଲେ ଆପେ ଆପେ କବିତାଟି ହୋଇଯିବ ।'

ମୁଁ ଯାହା ଲେଖିଲି, ତାହା ପ୍ରାୟ ୫୨।୫୩ ବର୍ଷ ତଳର ଘଟଣା (ପୃ.୩୧)

ଶ୍ରୀ ପଟ୍ଟନାୟକଙ୍କର ସ୍ମୃତିକଥାରୁ ମନେହୁଏ ଏହି ଅସଂପୂର୍ଣ୍ଣ କବିତାଟି ୧୯୧୭/୧୯୧୮ ମସିହାର ଲେଖା ।

ଅଷ୍ଟମ କବିତା 'ମୂକ ମିନତି' ଗୋପବନ୍ଧୁଙ୍କ ସମ୍ପାଦିତ 'ସମାଜ'ର ୨୪.୯.୧୯୨୧ ସଂଖ୍ୟାରେ ପ୍ରକାଶିତ । ୮.୯.୧୯୨୧ରୁ କ୍ରମାଗତ ୧୪୪ ଧାରା ଜାରିକରି ବ୍ରିଟିଶ ସରକାର ତାଙ୍କୁ ମୁଖବନ୍ଦ କରିବାକୁ ଆଦେଶ ଦେବାରୁ ତାହାର ପ୍ରତିବାଦରେ ଗୋପବନ୍ଧୁ ଏହି କବିତାଟି ଲେଖିଥିଲେ ।

ନବମ କବିତାଟି 'ସମାଜ'ର ୧୧.୩.୧୯୨୨ ତାରିଖ ସଂଖ୍ୟାରେ ପ୍ରକାଶିତ । ଏହି କବିତାଟି 'ସମାଜ' ପୃଷ୍ଠାରୁ ଉଦ୍ଧାର କରି ସାମ୍ପ୍ରତିକ କାଳର ପାଠକମାନଙ୍କ ସମ୍ମୁଖକୁ ଆଣିଥିଲେ ଡକ୍ଟର ନିତ୍ୟାନନ୍ଦ ଶତପଥୀ । କବିତାଟିର ପୃଷ୍ଠଭୂମି ସମ୍ପର୍କରେ ସୂଚନା ଦେଇ ସେ ଲେଖିଥିଲେ : "୧୧.୩.୨୨ ତାରିଖ 'ସମାଜ'ରେ ମାର୍ଚ୍ଚ ୨୩ ତାରିଖ ଚୈତ୍ର ଗୁରୁବାର ଦଶମୀ ତିଥିରେ ଓଡ଼ିଶା ସାରା ଗାନ୍ଧିଦିବସ ପାଳନପାଇଁ ସେ ଏକ ଆହ୍ୱାନ ଦେଇଥିଲେ ।... ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସେ ଏଥିପାଇଁ ଅନୁରୋଧ କରି ଗୋଟିଏ ଛୋଟ କବିତା ପ୍ରକାଶ କରିଥିଲେ ।"

(ଶତପଥୀ : ୧୯୮୯ : ପୃ. ୨୨୧-୨୨୨)

ଗୋପବନ୍ଧୁ ଥିଲେ ଆଶୁକବି । ବିଭିନ୍ନ ପରିପ୍ରେକ୍ଷୀରେ ସେ ଅନେକ କବିତାଂଶ ଆବୃତ୍ତି କରିଥିଲେ, ଯାହା ଆଜି ସଂଗ୍ରହ କରିବା ଦୁଃସାଧ୍ୟ । 'ସମାଜ'ରେ ମଧ୍ୟ ବିଭିନ୍ନ ପ୍ରସଙ୍ଗରେ ସେ ମଜା ମଜ୍ଜା କବିତା ପଂକ୍ତି ସବୁ ଲେଖିଥିଲେ, ଯାହା ସେହି ସବୁ ଗଦ୍ୟରଚନାର ଅଂଶବିଶେଷ ହୋଇଯାଇଛି । ଗଦ୍ୟରଚନାଗୁଡ଼ିକ ସ୍ୱତନ୍ତ୍ର ଭାଗରେ ମୁଦ୍ରଣ କରାଯିବାର ଯୋଜନା ଥିବାରୁ ସେହି କବିତା ପଂକ୍ତିଗୁଡ଼ିକ ଏଠାରେ ମୁଦ୍ରିତ କରାଗଲା ନାହିଁ ।

– ସଂପାଦକ

# ୧ । ପ୍ରାର୍ଥନା

ଶୁଭୁ ଶୁଭ ଶଙ୍ଖ ପଡୁ ହୁଳହୁଳି,
ବାଜୁ ତୁରୀ ଭେରୀ ମଙ୍ଗଳ ମହୁରି ।
ନାଚୁ ପ୍ରତି ପ୍ରାଣ ଉତ୍ସାହେ ଉଚ୍ଛୁଳି,
ଜାତି ଯଶେ, ଜନ ଯାଉ ସ୍ୱାର୍ଥ ଭୁଲି ।
ତୁଟୁ ହୃଦୁଁ ତ୍ୱରା ଜଡ଼ତା ଶିକୁଳି,
ଉଠୁ କର୍ମବୀର ବୋଲି ଦେଶଧୂଳି ।
ଅନ୍ତରେ ଅନ୍ତରେ ଝଟକୁ ବିଜୁଳି,
ଏ ଅଭୟ ବର ଦିଅ ଦେବ ଶୂଳୀ ।

□□□

ହେଲାଣି ତ ଏତେ ସରି
ହେ ସୋଦର,
ପୂର୍ବ ଯଶୋରାଶି କାଳବଳେ ଆସି
ଗଲାଣି ତ ସବୁ ସରି । ଘୋଷା ।
ତ୍ରିବେଣୀ ତଟରୁ ଗୋଦାବରୀ ଯାଏ
ଦିନେ ଭାଗ୍ୟ ଗରବିନୀ,
ଆମ୍ଭ କର୍ମ ଦୋଷେ ଆଜି ସେ ଜନନୀ
ଆହା ପଥ ଭିକାରିଣୀ ।୧।
ପୂର୍ବ କାରିଗରି ବିହିନେ ସୁନ୍ଦରୀ
ଦିଶଇ କେଡ଼େ ମଳିନ
କାହିଁ ପୂର୍ବ ଧନ କାହିଁ ପୂର୍ବ ପୁଣ୍ୟ
ଶୁଖିଛି ମୁଖ ନଳିନ ।୨।
ଅତୀତ କୀରତି ଅତୀତ ବିଭୂତି
କି ହେବ ଗାଇ କେବଳ,

ପୂର୍ବ ଆଦରଣେ ନବୀନ ସାହସେ
ଦେଖାଇବା ନିଜ ବଳ ।୩।
ନ କର ଆଳସ୍ୟ, ନ ହୁଅ ହତାଶ
ଶୁଭ ଯୋଗ ଉପଗତ,
ଦେଖ ନବଯୁଗେ ମହାକର୍ମ ଯୋଗେ
ମତ୍ତ ସମସ୍ତ ଜଗତ ।୪।

□□□

## ୨ । ବିଦାୟ ସଙ୍ଗୀତ

ରାମଚନ୍ଦ୍ର ମହାରାଜା ପରଜା-ପରାଣଧନ,
ଯାଉଛ କେଉଁ ବିଦେଶେ ହେ ଭଞ୍ଜ-କଞ୍ଜ-ତପନ !

ମହାରାଜା ବିନୁ ଆନ ନ ଜାଣୁ ବିଧିବିଧାନ,
ବଞ୍ଚିବୁ କିପରି କହ ବିରହେ ଏ କେତେ ଦିନ ?

X X X

ଚାତକ ପରାଏ ହୋଇ ବାଟ ରହିଲୁ ଅନାଇ,
ଫେରି ଦେଖିଲେ ଏ ପିଣ୍ଡେ ପଶିବ ସିନା ଜୀବନ !

ତୋହାଡ଼ଂ ପାହାଡ଼ ଦେଶ ଭୁଲିବ ନାହିଁ ନରେଶ
ଘେନ ଦିବ୍ୟ ଅବଧାନେ ଏ ବିନୀତ ନିବେଦନ ।

X X X

ଭୁଲିବ ନାହିଁ ଭୂପାଳ ସରାଳି ଶୁଦ୍ଧ ସଲିଳ
ମେଘାସନ ଚାରୁକୁଞ୍ଜ ବୁଢ଼ାବଳଙ୍ଗ ପୁଳିନ ।

□□□

## ୩ । ସରଳତା

୧

ଆସ ସରଳତା କୋମଳ-ଭାଷିଣୀ
ନଦୀ-ବନଗିରି ନିଭୃତ ବାସିନୀ,
ଉଦାର ଉଜ୍ଜ୍ୱଳ ଆଲୋକ-ପିହିତା
ପ୍ରକୃତିର ଚାରୁ ପ୍ରଥମ ଦୁହିତା ।

୨

ଭବର ବିଭବ ବିକୃତ ରଚନା
ଲୋକ ଆଡ଼ମ୍ବର ବଡ଼ିମା ବାସନା,
ଦୂରେ ପରିହରି ଯୋଗୀ ଜନ ପରି
ପଲ୍ଲୀପଥେ ସଦା ବିହର ସୁନ୍ଦରି !

୩

ସତ୍ୟ ସହୋଦରୀ ପ୍ରିୟ ସହଚରୀ
ହେ ଚିରକୁମାରୀ ଶୁଦ୍ଧ ଦିଗମ୍ବରୀ,
ତବ ପାଶେ ହସେ ନିରତେ ବିକାଶେ
ଫୁଲରାଜି ବନେ, ତାରକା ଆକାଶେ ।

୪

ନାହିଁ ତୋର ଭୟ, ନ ହୁଏ ସଂଶୟ
ସହଜେ ସକଳେ ଦେଉ ପରିଚୟ,
ସରଳତା ତୋର ମଧୁର ମୂରତି
ଜନମାଏ ବିଶ୍ୱ ପରାଣେ ପୀରତି ।

---

୧- ବଣୁଆ

୫

ପଞ୍ଚନଦ ତୀରେ ପବିତ୍ର କୁଟୀରେ
ଯଜ୍ଞବେଦପୀଠେ ଶୁଦ୍ଧ ସାମ ଗିରେ,
ଆର୍ଯ୍ୟ ଋଷି ହୃଦେ ହେଲା ତୋ ଉଭାସ
ଉଛୁଳିଲା ଖିଳ ଜଗତେ ଉଲ୍ଲାସ ।

୬

ଘୋରବନେ ଯେବେ ଦେଖି କ୍ରୌଞ୍ଚବଧ
ବ୍ୟାକୁଳେ ବାଲ୍ମୀକି ସେ ଅମର ପଦ,
ଗାଇଲେ ଅଧୀରେ ପୁଣ୍ୟ ସିପ୍ରାତୀରେ
ପ୍ରକଟିଲୁ ତହିଁ କାବ୍ୟେ କି ରୁଚିରେ ।

୭

କବି ଜଗନ୍ନାଥ ଭଗତ ସତ୍ତମ
ସାଗର ସୈକତେ ବିରଚି ଆଶ୍ରମ,
ପ୍ରାଚୀନ ସଂସ୍କାର ଅନ୍ଧ କୁଳାଚାର
ଦୂରେ ତେଜି କଲେ ସତ୍ୟର ପ୍ରଚାର ।

୮

କଳ୍ପବଟ ସ୍ନିଗ୍ଧ ଛାୟାତଳେ ବସି
ଗାଇଲେ ଯେ ଗୀତ ଉତ୍କଳ-ତପସ୍ୱୀ,
କଳା କୁଟିଳତା ନାହିଁ ତହିଁ ଲେଶ
ଉଚ୍ଚଭାବ ସଙ୍ଗେ ତୋର ସମାବେଶ ।

୯

ସେ ସ୍ୱର୍ଗୀୟ ଭାବ ଅପୂର୍ବ ମାଧୁରୀ
ଥାଉ ନିରନ୍ତର ମୋ ଅନ୍ତର ପୂରି ।
ଆସ ମଧୁମୟୀ ଶାନ୍ତ ସରଳତା
ପ୍ରଚାର ମୋ ହୃଦ ଗଭୀର ବାରତା ।

□□□

# ୪ । ଜାଗରଣ

୧

କାହିଁ କେତେ ଦୂରେ, ବାଜେ ଏ ଅମୃତମୟୀ ବୀଣା,
ମୋ ଚଞ୍ଚଳ ମତି ଏଥି, କିପାଁଇଁ ଅଚିରେ କିଣା ?
ଏ ତ ଅଦଭୁତ !
କି ଭାବେ ଏ ହୃଦ ମୋର ହୁଏ କ୍ଷଣେ ଅଭିଭୂତ !

୨

ଗଭୀର ନିଶୀଥ କାଳ, ନୀରବ ନିଶ୍ଚଳ ମହୀ,
କିଏ କେତେ ଦୂରୁଁ ମୋତେ, ଡାକେ ଧୀରେ ରହି ରହି ?
ସେ ମଧୁର ଆମନ୍ତ୍ରଣ
ଏ ବିକଳ ପ୍ରାଣେ କିମ୍ବା ଦିଏ ପ୍ରୀତି ଆଶ୍ୱାସନ ?

୩

କିଏ ମୋ ହୃଦୟ ଗୀତି, ଗାଏ ଏ ପ୍ରଭାତୀ ରାଗେ ?
ନିରାଶ ଜୀବନ ମୋର, ଜାଗେ ନବ ଅନୁରାଗେ ।
ଆଶାର ମୋହନ ବାଣୀ,
ଏ କ୍ଷୁଦ୍ର ଶରୀରୁ ମୋତେ ନିଏ କେଉଁ ରାଜ୍ୟେ ଟାଣି ?

୪

ନିବିଡ଼ ତିମିର ଭେଦି ଆସେ କ୍ଷୀଣ ଜ୍ୟୋତି ଧାରା,
ସତେ କାହିଁ କେତେଦୂରେ, ଅଛି କି ମୋ ଧ୍ରୁବତାରା ?
ମୁଁ କି ଦେଖଇ ସ୍ୱପନ ?
ସ୍ୱପନ ନୁହଇ ଏହା ମଧୁମୟ ଜାଗରଣ ।

୫

ଜାଗିଛି ଜଗତ ଏବେ ନବ ଆଶା ନବ ବଳେ,
ଉଇଁ ଆସୁଅଛି ଭାନୁ ପୂରୁବ ଗଗନ ତଳେ,
ଏ ଯେ ସ୍ୱରଗ ଆହ୍ୱାନ,
ଦେବକାର୍ଯ୍ୟ ପିତୃକାର୍ଯ୍ୟ କରିବାକୁ ସମାପନ । ◻◻◻

## ୫ । ଭକ୍ତର ମୃତ୍ୟୁ*

ଏକାଦଶୀ ରାତି ଆସୁଅଛି ପାହି
ପୂରୁବ ଆକାଶେ ରବି ଉଇଁ ନାହିଁ ।
ଭକ୍ତ କୁଳମଣି ପ୍ରଭୁ ସେବାକାରୀ
ଆଜୀବନ ସିଂହ ଦୁଆରେ ଦୁଆରୀ ।
ଶୁଚିବନ୍ତ ହୋଇ ସାରି ପ୍ରାତଃ ସ୍ନାନ
ମୁଖେ ଉଚ୍ଚାରୁଛି ପ୍ରିୟ ପ୍ରଭୁ ନାମ ।
ହକାରି ସକଳ ପରିଜନ ଜନେ
ଲଗାଇଲା ଯେଝା ସେବା ନିରାଜନେ ।
ତୁଳସୀରେ ଜଳ ଦେଇ ଭକ୍ତି ଭରେ
ମୃତ୍ତିକା ନେଇଣ ଲଗାଇଲା ଶିରେ ।
ଗରୁଡ଼ ସନ୍ନିଧେ ହେଲା ଯାଇ ଉଭା
ପ୍ରକାଶିଲା ମୁଖେ କି ଅପୂର୍ବ ଆଭା ।
'ଗୋପାଳ' 'ଗୋପାଳ' କହୁଅଛି ତୁଣ୍ଡ
ଗରୁଡ଼ସ୍ତମ୍ଭରେ ଲାଗିଅଛି ମୁଣ୍ଡ ।
ଯୁଗଳ ମୂରତି ଚରଣେ ଅନାଇ
ରହିଅଛି କ୍ଷଣେ ପିଣ୍ଡେ ପ୍ରାଣ ନାହିଁ ।
ମୃତ କି ଜୀବିତ ଯାଏ ନାହିଁ ଜଣା
ରଖିଛି ଆଖିରେ ପୂର୍ବ ଜ୍ୟୋତି କଣା ।
ଶରୀରର ଶିରୀ ବିକାଶେ ଦିଗୁଣ
ବୋଲୁଛି ସତେ କି ମୁଖେ ହରିଗୁଣ ।
ଚକିତେ ନିରୋଳେ ଚାହିଁଲେ ସକଳେ
ଗମ୍ଭୀରାରୁ ଦୀପ ଲିଭିଲା ଏ କାଳେ ।
ପ୍ରଭୁଙ୍କ ଶ୍ରୀ ଅଙ୍ଗେ ଭକ୍ତ ଗଲା ଲାଖି
ଜାଣିଲେ ସରବେ, ନ ଦେଖିଲା ଆଖି ।

* କୁଳମଣି ପାତ୍ର ସତ୍ୟବାଦୀ ଗୋପାଳଜୀ ମନ୍ଦିରର ଜଣେ ଦ୍ୱାରୀ, ବୟସ ୬୫ ବର୍ଷ । ଜାତିରେ ଓଡ ଖଣ୍ଡାୟତ । କଳିଷଠା ଷାଠିଏ ଟପିଥିଲେ ସୁଦ୍ଧା ବାର୍ଦ୍ଧକ୍ୟ ଲକ୍ଷଣ କିଛି ଦେଖାଯାଇନଥିଲା । ଦେଖିବାକୁ ଦୀର୍ଘକାୟ, ଅଙ୍ଗପ୍ରତ୍ୟଙ୍ଗ ସାନ୍ଦ୍ର, ସୁଗଠିତ । ପ୍ରାଚୀନ ଉତ୍କଳ ସୈନିକ ପାଇକମାନଙ୍କ ବଂଶଧର ବୋଲି ଜଣାପଡୁଥିଲା । □□□

## ୬ । ସ୍ୱାଗତ ସଙ୍ଗୀତ

ରାଜ ଅତିଥି ହେ
କର ଶୁଭେ ଆଗମନ,
ତବ ଆଗମନେ କୃତାର୍ଥ ଆଜିଟି
ଏ ବନ ବିଦ୍ୟାଭବନ ।
ଭାରତ ରାଜେନ୍ଦ୍ର ସମୁଜ୍ଜ୍ୱଳ ମଣି
ଜନନୀ ବର ନନ୍ଦନ,
ସ୍ୱଜାତି ସମ୍ପଦ ସଉଧ ତୋଳିଛ
ପୋତି ଆପଣାର ଧନ ।

x x x

ହେଉ ତବ ପଥେ କୁସୁମ ବରଷା
ବହୁ ମନ୍ଦ ସମୀରଣ
ବକୁଳ ଶାଖାରେ ବସି ବିହଙ୍ଗମେ
କରନ୍ତୁ ସେ ଯଶ ଗାନ ।

□□□

## ୭ । ଗୋଟିଏ ଅସଂପୂର୍ଣ୍ଣ କବିତା

ବାଙ୍କୀ ପୁରେ ଏକା, ଗଞ୍ଜାମେ ଝଟକା,
ସମ୍ବଲପୁରରେ ଟାଙ୍ଗା,
ଯେଉଁ ରୂପେ ଯହିଁ ଅବତାର ତୋର
ସେହି ରୂପେ ଅଣ୍ଡାଭଙ୍ଗା ।

□□□

## ୮ । ମୂକ ମିନତି

ପୁରୀ ଆଉ କଟକର ଜିଲା ମେଜେଷ୍ଟର
ଏକଶତ ଚୌରାଳିଶ ଦଫାରେ ଅର୍ଡ଼ର
ଜାରି କରି ମୋର ମୁଖ କରିଛନ୍ତି ବନ୍ଦ
ସେଥିଲାଗି ନୁହେ ମୁହିଁ ତିଳେ ନିରାନନ୍ଦ ।
ହୁକୁମ ନ ମାନି କାର୍ଯ୍ୟ କରିବାକୁ ଭାଇ
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।
କିନ୍ତୁ କଂଗ୍ରେସର ନାହିଁ ସେପରି ଆଦେଶ,
ତେଣୁ ଏ ମୂକ ମିନତି କଲି ପରକାଶ ।
ହେ ପ୍ରିୟ ଉତ୍କଳବାସୀ, ମୋ ଭାଇ ଭଉଣୀ,
କାତର ନ ହୁଅ କେହି ଏ ବାରତା ଶୁଣି,
ଯାହା କହିବାର ମୋର ଥିଲା ଦରକାର
କହିଅଛି ସମସ୍ତଙ୍କୁ ଦେଶେ ବାର ବାର ।
ମୋ ଶକତିମତେ ଭାଇ କରିଛି ପ୍ରଚାର
ନଗ୍ରେ ଗ୍ରାମେ ସ୍ୱରାଜ୍ୟର ଶୁଭ ସମାଚାର ।
ଅସହଯୋଗର ଶୁଦ୍ଧ ପୁଣ୍ୟ ମହାଦୀକ୍ଷା
ମହାତ୍ମା ଗାନ୍ଧିଙ୍କ ମନ୍ତ୍ର ଦେଇଅଛି ଶିକ୍ଷା ।
ଶୁଣିଛ ସକଳେ ହେବ ସ୍ୱରାଜ୍ୟ ପ୍ରାପତି
ଏକମେଳ ହୋଇ କଲେ ଭାରତ ଭକତି ।
କର ଆଗେ ଆତ୍ମଶୁଦ୍ଧି; ଅଫିମ, ଗଞ୍ଜାଇ,
ମଦ, ଜୁଆଚୋରି, ନାରୀ ଛାଡ ଶୀଘ୍ର ଭାଇ ।
ଗ୍ରାମେ ଗ୍ରାମେ ପଞ୍ଚାୟତ କର ହେ ସ୍ଥାପନ,
ପାପ ଅର୍ଜ୍ଜ ନାହିଁ ଦେଇ ଅଦାଲତେ ଧନ ।
ବିଦେଶୀ ବସ୍ତ୍ରକୁ ବୁଝ ପାପ ଆବରଣ,
ଛୁଅଁ ନାହିଁ; କର ତାହା ସତ୍ୱର ଦହନ ।
ପୂର୍ବର ଅରଟେ ସୂତା କାଟ ଘରେ ଘରେ
ଏ ଦେଶ କଉଡ଼ି ଆଉ ନ ଖାଆନ୍ତୁ ପରେ ।

ହେଉ ପଛେ ଯେତେ ମୋଟା ସ୍ୱଦେଶୀ ବସନ
ପିନ୍ଧି ତାହା ଦିନରାତି ହୁଅ ଭାଇ ଧନ୍ୟ ।
କହିଛି ମୁଁ କେତେଥର ଏହି ଉପଦେଶ
ବକ୍ତୃତାର କାର୍ଯ୍ୟ ମୋର ହୋଇଅଛି ଶେଷ ।
ମୋ ପ୍ରିୟ ଉତ୍କଳବାସୀ ଚାହଁ ମୋର ମୁଖ
ମୂକ ମୋତେ ଦେଖି ମନେ ପାଅ କି ହେ, ଦୁଃଖ ?
ମୋ ମୁଖେ ଲଗାମ, ପାଟି ନ ପାରିବି ଖୋଲି,
ହାତ ଗୋଡ଼େ ପରେ ଲାଗିପାରେ ବା ଶାଙ୍କୋଳି ।
ନ କର ହେ ଏଥିଲାଗି ଭୟ ବା ଭାବନା,
ସ୍ୱରାଜ୍ୟ ସାଧନ ପଥେ ଏ ଶୁଭ ସୂଚନା ।
ତୁମ୍ଭର ମୋ ପ୍ରତି ଥିଲେ ସେନେହ ମମତା,
ଲାଗ କାର୍ଯ୍ୟେ, ଶୁଣ ନାହିଁ ଅନ୍ୟ କାହା କଥା ।
ହେ ଛାତ୍ରମଣ୍ଡଳି, କର କେତେ ବାହାଦୁରୀ
ଦେଶର ଉଦ୍ଧାର ପାଇଁ ପକାଅ ତ ହୁରି ।
ହିସାବ କିତାବ ବେଳେ ଗଲା ଏବେ ଜଣା
ତୁମ୍ଭ ଦେଶଅନୁରାଗ ଢଘନ୍ୟ ଛଳନା ।
ଏବେ ସୁଦ୍ଧା ଅଛି ବେଳ, ଥିଲେ ହେ ବିଶ୍ୱାସ
ସେ ଗୋଲାମ କାରଖାନା ଛାଡ଼ି ବେଗେ ଆସ ।
ତୁମ୍ଭଲାଗି ବହୁ କାର୍ଯ୍ୟ ରହିଛି ଦେଶରେ
ବୀରପଣେ ଲାଗ ତହିଁ ଭିକାରି ବେଶରେ ।
ଓକିଲ ଭାଇଏ କର ସ୍ୱାଧୀନ ଜୀବିକା
ଫଳରେ ଟଙ୍କାରେ ତୁମ୍ଭ ଜୀବ ହେଲା ବିକା ।
ଦେଶର ହିତୈଷୀ ବୋଲି କରୁଥିଲ ଭାନ[୧]
କହୁଥାଅ କେତେ ଲମ୍ବା ଲମ୍ବା କଥାମାନ ।
ଅସହଯୋଗ ବିଶାରେ[୨] ହେଲ ଯେବେ ତୁଳ
ଦେଖାଗଲା ତୁମ୍ଭ ମଧ୍ୟେ କାର କେତେ ମୂଲ ।
ଭାଇ ଭାଇ ବିବାଦରେ ତୁମ୍ଭର ବିଭବ
ଧଳା କଳା କରିବାରେ ତୁମ୍ଭ ଗଉରବ ।

---

୧- ଛଳନା, ୨- ଓଜନ କରିବା ଯନ୍ତରେ

ନିଜ ବୁକେ ହାତ ଦେଇ କହ ଭଲା ଭାଇ,
ଅଦାଲତେ ଦେଶ-ଧନ-ଧର୍ମ ଯାଉନାହିଁ ?
ଜାଣେ ତୁମ୍ଭ ମଧ୍ୟେ କେତେ ଛନ୍ତି ସଦାଶୟ
ଭବିଷ୍ୟତ ଭାବନାରେ ମନେ ତାଙ୍କ ଭୟ ।
ହୃଦୟର ଦୁର୍ବଳତା ବେଗେ ପରିହରି
ଦେଶ କାର୍ଯ୍ୟେ ଲାଗିଯାଅ ବୋଲ ହରି ହରି ।
ତୁମ୍ଭଙ୍କୁ ଦେଖିଲେ ଲୋକେ ହେବେ ଉତ୍ସାହିତ,
ବସାଇବେ ପଞ୍ଚାୟତ ହେବ ଦେଶହିତ ।
ଖୋଲିଦିଅ ଭାଇ ଦେଶୀ ବସ୍ତ୍ର କାରବାର
ନିଶ୍ଚୟ ସେଥିରେ ତୁମ୍ଭ ଚଳିବ ସଂସାର ।
ସରକାରୀ ନଉକରୀ କର ଯେତେ ଭାଇ
ଦେଶ କଥା ଏକାବେଳେ ଭୁଲିଯାଅ ନାହିଁ ।
ଏବେ ସୁଦ୍ଧା ଯାହାଙ୍କର ମନେ ଅଛି ଟାଣ
ଛାଡ଼ି ସେ ଗୋଲାମୀ ଦିଅ ଦେଶକାର୍ଯ୍ୟେ ପ୍ରାଣ ।
ଯାହାଙ୍କର ଜନ୍ମିଅଛି ଉତ୍କଟ ଆସକ୍ତି
ଚାକିରି ନ ଛାଡ଼ି କର ଯାହା ତୁମ୍ଭ ଶକ୍ତି ।
ନ ପାରିଲେ କିଛି ଭାଇ ଅନିଷ୍ଟ ନ କର
ନିଜ ଜାତି ଜ୍ଞାତି ଗୋଦ୍ରେ ନ ବିଚାର ପର ।
ରାଜା ଜମିଦାର ଶୁଣ ମୋର ଏ ମିନତି
ଦେଇଛନ୍ତି ମହାପ୍ରଭୁ ତୁମ୍ଭଙ୍କୁ ସଙ୍ଗତି[୩] ।
ଇଚ୍ଛାକଲେ କରିପାର ବହୁ ଲୋକହିତ
ସ୍ୱାର୍ଥ ଅହଂକାରେ ଖାଲି ନ ରହ ଜଡ଼ିତ ।
ଅକାରଣ ପୀଡ ନାହିଁ ପରଜା ଖାତକ
ସ୍ୱରଗ ସୁବିଧା ପାଇ ନ ଲୋଡ଼ ନରକ ।
ପରଜା ଖାତକେ ଦେଖ ଏବେ କେତେ ସରି,
ଦାନା କନା ବିନା ଆହା ଯାଉଛନ୍ତି ମରି ।
ତାଙ୍କ ଭଲେ ତୁମ୍ଭ ଭଲ ବୁଝ ଯେବେ ଥରେ
ନ ମରିବ କେବେ ହେଲେ ସରକାର ଡ଼ରେ ।

---

୩- ସମ୍ପତ୍ତି/ବିଷୟ-ପ୍ରାଚୁର୍ଯ୍ୟ

କରାଅ ହେ ଘରେ ଘରେ ଅରଟ ପ୍ରଚାର
ଗ୍ରାମେ ଗ୍ରାମେ ପଞ୍ଚାୟତେ କରାଅ ବିଚାର ।
ଏ ସବୁ ବିଧାନ ଆମ୍ଭ ଦେଶ ପୂର୍ବ ପ୍ରଥା
ଏଥିରେ କି ଅଛି କହ ରାଜଦ୍ରୋହ କଥା ?
ଉତ୍କଳର ନରନାରୀ ଜନସାଧାରଣ
ତୁମ୍ଭଠାରେ ଶେଷେ ମୋର ଏହି ନିବେଦନ,
ଅନ୍ନ ବସ୍ତ୍ର ବିନା ଦେଶ ଏତେ ହୀନିମାନ
'କୁଟି ଖାଅ' 'କାଟି ପିନ୍ଧ', ପୂର୍ବ କଥା ମାନ ।
ବିଦେଶୀ ବସନ ପାଶେ କେବେହେଁ ନ ଯାଅ
ଘରେ ଘରେ ରାତି ଦିନ ଅରଟ ଚଳାଅ ।
ଲୁଗା ବୁଣି ଗ୍ରାମ ତନ୍ତୀ ରହନ୍ତୁ ସୁଖରେ
ହରଷ ପ୍ରକାଶୁ ତାଙ୍କ ବିରସ ମୁଖରେ ।
ଦେଶୀ ମୋଟା ଖଦୀ ପିନ୍ଧି ହୁଅ ଭାଗ୍ୟବାନ,
ଭାରତ ଜନନୀଙ୍କର ତାହା ଦିବ୍ୟ ଦାନ ।
ବିଦେଶୀ ସୁନ୍ଦର ଲୁଗା ସରୁ ସୂକ୍ଷ୍ମ ଧଡ଼ି
ଲୋଭେ ତହିଁ ଯାଅନାହିଁ କେବେ ଆଉ ପଡ଼ି ।
ଭୁଲାଇବା ପାଇଁ ଆଣି ଅଳପ ଦାମରେ
ବିଦେଶୀ ସଉଦାଗରେ ବିକିବେ ଗ୍ରାମରେ ।
ହେଲେ ବେଶ୍ୟା ଯେତେ ଶସ୍ତା ଚତୁରୀ ସୁନ୍ଦରୀ
ହେବ କି ସେ ଧର୍ମପତ୍ନୀ କୁଳବଧୂ ସରି ?
ଏତେ କାଳ ଘଟିଅଛି ଆମ୍ଭ ଧର୍ମହାନି,
ଏଣିକି ଚଳ ହେ ଗାନ୍ଧି ଉପଦେଶ ମାନି ।
ସ୍ୱରାଜ୍ୟ ପାଣ୍ଠିକି କର ଶକ୍ତିମତେ ଦାନ,
ରହିବ ଏଥିରେ ଆମ ଜାତି ସନମାନ ।
ଜାଣେ ମୁଁ ଅନେକ ସ୍ଥାନେ ପାଷଣ୍ଡ ଅନେକ
ଡରାନ୍ତି ତୁମ୍ଭଙ୍କୁ ନିଜେ ରଖିବାକୁ ଟେକ ।
ସେ ବୃଥା ଧମକେ ଭାଇ ନ ଡ଼ରିବ ଲେଶ.
ହେଲେ ହେଉ ଯେତେ କ୍ଷତି ଦୁଃଖ ଅବା କ୍ଳେଶ ।

ସହିବା ସେ ସବୁ ଧରି ପଥରର ଛାତି,
ଚିରଦିନ ନ ଥିବ ଏ ଅମାବାସ୍ୟା ରାତି ।
ସହିଛଇଁ କେତେ କାଳ କେତେ ଅତ୍ୟାଚାର
ସିଝି ସଢ଼ି ହେଲାଣି ଏ ଦେଶ ଛାରଖାର ।
କି ସୁଖ ଅଛି ଜୀବନେ, ତେବେ କିପାଁ ଭୟ
ସହିଲେ ସକଳ ଦୁଃଖ ଶେଷେ ହେବ ଜୟ ।
'ଅହିଂସା ପରମ ଧର୍ମ' ଏ ମହା ମନ୍ତର
ସଦା ଜପି ହୃଦେ ହୁଅ କାର୍ଯ୍ୟେ ଅଗ୍ରସର ।
ଧୀରତା ସଂଯମ ଶାନ୍ତି ରଖ ଅବିରତ
ଭାରତେ ସ୍ୱରାଜ୍ୟ ଲାଗି ଏହି ଏକା ପଥ ।
ହେ ଉତ୍କଳବାସି ! ରଖ ଏ ମୂକ ମିନତି,
ଅଛି ଯେବେ ସ୍ନେହ ଦୟା ଅକିଞ୍ଚନ ପ୍ରତି ।

□□□

## ୯ । ସ୍ୱରାଜ୍ୟ ବ୍ରତ

କୃଷ୍ଣ ଦଶମୀ ଗୁରୁବାରେ । ଗାନ୍ଧି ଦିବସ ଉତ୍କଳରେ ।।
ମାରଣ ତେଇଶି ତାରିଖ । ଉତ୍କଳବାସୀ ମନେରଖ ।।
ହୋଇଣ ସର୍ବେ ଶୁଚିବନ୍ତ । ପାଳିବ ସ୍ୱରାଜ୍ୟ ବରତ ।।
ମାନି ଯେ ଯାହା ଧର୍ମରୀତି । ପ୍ରଭୁଙ୍କଠାରେ କର ସ୍ତୁତି ।।
ଯାହାକୁ ଯେ ଅବା ମିଳିବ । ସ୍ୱରାଜ୍ୟ ହିତେ ଉତ୍ସର୍ଗିବ ।।
ପୁରୁଷ ସ୍ତିରୀ ପୁଅ ଝିଅ । ସ୍ୱହସ୍ତେ ତମ୍ଭା ଦାନ ଦିଅ ।।
ମଙ୍ଗଳମୟ ବାଞ୍ଛାନିଧି । କରିବେ ତୁମ୍ଭ ବାଞ୍ଛା ସିଦ୍ଧି ।।

□□□

# ପରିଶିଷ୍ଟ : ଗୋପବନ୍ଧୁ କାବ୍ୟ ଓ କାବ୍ୟଚର୍ଚ୍ଚା
(ନିର୍ବାଚିତ ଗ୍ରନ୍ଥପଞ୍ଜି)

## ପ୍ରାଥମିକ ଉପାଦାନ

### ପୁସ୍ତକାବଳୀ

| | | | |
|---|---|---|---|
| ୧. | ଅବକାଶ ଚିନ୍ତା | ୧୮୯୯ | କର୍ତ୍ତବ୍ୟବୋଧିନୀ ସମିତି, **କଟକ** |
| ୨. | ବନ୍ଦୀର ଆତ୍ମକଥା | ୧୯୨୩ | ସତ୍ୟବାଦୀ ପ୍ରେସ୍, **ପୁରୀ** |
| ୩. | ଧର୍ମପଦ | ୧୯୨୫ | ସତ୍ୟବାଦୀ ପ୍ରେସ୍, କଟକ |
| ୪. | ଗୋ-ମାହାତ୍ମ୍ୟ | ୧୯୨୬ | ସତ୍ୟବାଦୀ ପ୍ରେସ୍, **କଟକ** |
| ୫. | କାରା-କବିତା | ୧୯୩୫ | ଗୋପବନ୍ଧୁ **ସାହିତ୍ୟ** ମନ୍ଦିର,କଟକ |
| ୬. | ବ୍ରହ୍ମତତ୍ତ୍ୱ ବା ନଚିକେତା ଉପାଖ୍ୟାନ | ୧୯୪୯ (ଦ୍ୱି.ସଂ.) | ଗୋପବନ୍ଧୁ ସାହିତ୍ୟ ମନ୍ଦିର,କଟକ |
| ୭. | ଅବକାଶ ଚିନ୍ତା (ପରିବର୍ଦ୍ଧିତ ସଂସ୍କରଣ) | ୧୯୪୨ | ଗୋପବନ୍ଧୁ ସାହିତ୍ୟ ମନ୍ଦିର,କଟକ |
| ୮. | Gopabandhu in Legislature (*ed.* R.N.Mohapatra) | ୧୯୭୩ | Institute of Social Science Research, Cuttack. |
| ୯. | ଗୋପବନ୍ଧୁ ରଚନାବଳୀ: ୧ମ ରୁ ୮ମ ଖଣ୍ଡ, (ସଂ. ରାଧାନାଥ ରଥ) | ୧୯୭୬-୭୮ | ଗୋପବନ୍ଧୁ **ସାହିତ୍ୟ** ମନ୍ଦିର,କଟକ |
| ୧୦. | ଗୋପବନ୍ଧୁ ରଚନାବଳୀ: (୧ମ ଓ ୨ୟ) | ୧୯୮୦ | ଓଡ଼ିଶା **ସାହିତ୍ୟ ଏକା**ଡେମୀ, ଭୁବନେଶ୍ୱର |

### ପତ୍ରପତ୍ରିକା

୧. ଆଶା – (ସଂ. ଶଶିଭୂଷଣ ରଥ)
୨. ଉତ୍କଳ-ଦୀପିକା – (ସଂ. ଗୌରୀଶଙ୍କର ରାୟ, ସୁଦାମ ଚରଣ ନାୟକ)
୩. ଉତ୍କଳ-ସମ୍ମିଳନୀର ବିବରଣୀ – ୧୯୦୬
୪. ଉତ୍କଳ-ସାହିତ୍ୟ – (ସଂ. ବିଶ୍ୱନାଥ କର)
୫. ନୀଳାଚଳ ସମାଚାର
୬. ବାରୁଣୀ

୭. ମୁକୁର – (ସଂ. ବ୍ରଜସୁନ୍ଦର ଦାସ)
୮. ଶକ୍ତି – (ସଂ. ପୂର୍ଣ୍ଣଚନ୍ଦ୍ର ଦାଶ)
୯. ସତ୍ୟବାଦୀ – (ସଂ. ଗୋପବନ୍ଧୁ ଦାସ)
୧୦. ସମାଜ – (ସଂ. ଗୋପବନ୍ଧୁ ଦାସ/ଲିଙ୍ଗରାଜ ମିଶ୍ର/ରାଧାନାଥ ରଥ ପ୍ରମୁଖ)

## ସାହାଯ୍ୟକାରୀ ଉପାଦାନ

### ପୁସ୍ତକାବଳୀ


| | | |
|---|---|---|
| ଆଚାର୍ଯ୍ୟ, ବୃନ୍ଦାବନଚନ୍ଦ୍ର | ୧୯୨୨ | ସତ୍ୟବାଦୀ ଯୁଗ,<br>ଦାସ ବ୍ରଦର୍ସ, କଟକ |
| ଜେନା, ଜଗନ୍ନାଥ | ୧୯୯୪ | ସତ୍ୟବାଦୀ କାବ୍ୟଧାରା,<br>ଓଡ଼ିଶା ବୁକ୍ ଷ୍ଟୋର, କଟକ |
| ତ୍ରିପାଠୀ, ସତ୍ୟବାଦୀ ଓ<br>ତ୍ରିପାଠୀ, ବାଉରୀବନ୍ଧୁ | ୧୯୨୮ | ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ<br>ବୁକ୍ ଡିପୋ, ବାରିପଦା |
| ଦାଶ, ଚିନ୍ତାମଣି | ୧୯୭୮ | କବି ଗୋପବନ୍ଧୁ (୧୯୬୬)<br>କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ |
| ଦାଶ, ଶ୍ରୀରାମଚନ୍ଦ୍ର | ୧୯୬୪ | Pandit Gopabandhu,<br>ଗୋପବନ୍ଧୁ ସାହିତ୍ୟ ମନ୍ଦିର, କଟକ |
| ଦାଶ ସୂର୍ଯ୍ୟନାରାୟଣ | ୧୯୮୭ | ଉତ୍କଳମଣି ଗୋପବନ୍ଧୁ, (୧ମ)୧୯୭୫<br>ଗ୍ରନ୍ଥମନ୍ଦିର, କଟକ |
| ଦାସ ସୂର୍ଯ୍ୟନାରାୟଣ (ସଂ.) | ୨୦୦୦<br>(୧୯୭୨) | ଯୁଗପୁରୁଷ ଗୋପବନ୍ଧୁ ଦାସ,<br>ଓଡ଼ିଶା ବୁକ୍ ଷ୍ଟୋର, କଟକ |
| ନାୟକ, ଅର୍ଚ୍ଚନା | ୧୯୯୫ | ପଣ୍ଡିତ ଗୋପବନ୍ଧୁ ଦାସ,<br>ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| ମହାନ୍ତି, ନିମାଇଁ ଚରଣ(ସଂ) | ୧୯୭୮ | ଗୋପ<br>ବାରିପଦା |
| ମହାପାତ୍ର, ନିତ୍ୟାନନ୍ଦ | ୧୯୫୬ | ଗୋପବନ୍ଧୁ ସାହିତ୍ୟ-ସମୀକ୍ଷା<br>ଆସିକା (ଗଞ୍ଜାମ) |
| ମିଶ୍ର, ଗୋପାଳଚନ୍ଦ୍ର | ୧୯୯୦<br>(୧୯୭୭) | ଗୋପବନ୍ଧୁଙ୍କ ସାହିତ୍ୟ ଓ ଜୀବନଦର୍ଶନ<br>ଗ୍ରନ୍ଥମନ୍ଦିର, କଟକ |
| ଶତପଥୀ, ନିତ୍ୟାନନ୍ଦ (ସଂ) | ୧୯୭୭ | ଗୋପବନ୍ଧୁ ପରିକ୍ରମା<br>ପୂଜ୍ୟପୂଜା ସଂସଦ, କଟକ |

| | | |
|---|---|---|
| | ୧୯୮୯<br>(୧୯୬୯) | ହେ ସାଥି ! ହେ ସାରଥି !<br>ଗ୍ରନ୍ଥମନ୍ଦିର, କଟକ |
| | ୧୯୯୯ | ସତ୍ୟବାଦୀ ଯୁଗ : ସ୍ରଷ୍ଟା ଓ ସୃଷ୍ଟି,<br>ଗ୍ରନ୍ଥମନ୍ଦିର, କଟକ |
| ସାମନ୍ତରାୟ, ନଟବର | ୧୯୯୯ | କବି ଗୋପବନ୍ଧୁଙ୍କ କାବ୍ୟ ସୃଷ୍ଟି ମାନସ :<br>ଏକ ସର୍ବେକ୍ଷଣ, ଫ୍ରେଣ୍ଡସ୍‌ପବ୍ଲିଶର୍ସ,<br>କଟକ |
| ସାହୁ, ପ୍ରେମାନନ୍ଦ | ୧୯୬୨ | ସତ୍ୟବାଦୀ ସାହିତ୍ୟ<br>ପ୍ରଭାତୀ ପ୍ରେସ, କଟକ |


## ପ୍ରବନ୍ଧାବଳୀ/ଉଲ୍ଲିଖିତ ପୁସ୍ତକ


| | | |
|---|---|---|
| ଅଧିକାରୀ, ପରମାନନ୍ଦ | ୧୯୭୩ | ସାରସ୍ୱତ ସାହିତ୍ୟ ସାଧନାର ଉତ୍ସର୍ଗୀକୃତ-<br>ଶିଖା ଗୋପବନ୍ଧୁ,<br>ସମାଜ : ୯.୭.୧୯୭୫ |
| | ୧୯୭୬ | ଗୋପବନ୍ଧୁଙ୍କ କାବ୍ୟକବିତାରେ<br>ଜଗନ୍ନାଥପ୍ରୀତି,<br>ସମାଜ : ୨୭.୬.୧୯୭୬ |
| ଆଚାର୍ଯ୍ୟ, ଚିନ୍ତାମଣି | ୧୯୫୬ | ଗୋପବନ୍ଧୁ ତର୍ପଣ,<br>ସମାଜ : ୧.୭.୧୯୫୬ |
| ଆଚାର୍ଯ୍ୟ, ସୁଦର୍ଶନ | ୨୦୦୦ | ଜୀବନୀମୂଳକ କବିତାରେ,<br>ଗୋପମାନସର ସ୍ୱରୂପ; ଅନ୍ତର୍ଭୁକ୍ତ,<br>ଯୁଗପୁରୁଷ ଗୋପବନ୍ଧୁ ଦାସ,<br>(ସଂ. ଦାସ) |
| କବି, ଅସିତ | ୧୯୭୭ | କାରା-କବିତାରେ ଗୋପବନ୍ଧୁ,<br>କୋଣାର୍କ-୩୩ |
| କର, ଚଣ୍ଡୀଚରଣ | ୧୯୭୮ | ଗୋପବନ୍ଧୁ  କାବ୍ୟମାନସରେ ବିଶ୍ୱବୋଧ<br>ଓ ବିଭୁପ୍ରୀତି; ଅନ୍ତର୍ଭୁକ୍ତ ଗୋପ,<br>(ସଂ. ମହାନ୍ତି) |
| କାନୁନ୍‌ଗୋ, ରବୀନ୍ଦ୍ରନାଥ | ୧୯୬୦ | ଗୋପବନ୍ଧୁଙ୍କ ଜୀବନଦର୍ଶନ,<br>ସମାଜ, ୨୪.୬.୧୯୬୦ |

| | | |
|---|---|---|
| କୁଅଁର, ଦୁର୍ଗାଚରଣ | ୧୯୭୭ | କବି ଗୋପବନ୍ଧୁ, କୋଣାର୍କ-୩୩ |
| ଗଡ଼ନାୟକ, ରାଧାମୋହନ | ୧୯୮୬ | ସ୍ୱତନ୍ତ୍ର ଓଡ଼ିଶା ଓ ଗୋପବନ୍ଧୁ କୋଣାର୍କ-୫୯ |
| | ୧୯୮୦ | ''ନେତା ସିଏ, କବି ସିଏ : ଗୋପବନ୍ଧୁ'' ଅନ୍ତର୍ଭୁକ୍ତ *'ଗୋପବନ୍ଧୁ ରଚନାବଳୀ-୧ମ ଭାଗ* (ସଂ. ରାଧାମୋହନ ଗଡ଼ନାୟକ) |
| ଚୌଧୁରୀ, ସୌଦାମିନୀ | ୧୯୮୮ | ''ଗୋପବନ୍ଧୁ ଦାଶ''; *ଆଧୁନିକ ଓଡ଼ିଆ କବିତାରେ ରହସ୍ୟବାଦୀ ଚେତନା*, କଟକ |
| ତ୍ରିପାଠୀ, କୁଞ୍ଜବିହାରୀ | ୧୯୭୮ | ଗୋପବନ୍ଧୁଙ୍କ ପଦ୍ୟାବଳୀ ଉପରେ ସଂସ୍କୃତ ସାହିତ୍ୟର ପ୍ରଭାବ, ସମାଜ : ୫.୭.୧୯୭୮ |
| ତ୍ରିପାଠୀ, ଦେବବ୍ରତ | ୧୯୮୪ | ଶାସ୍ତ୍ରୀୟ କଷଟିରେ ଗୋପ କାବ୍ୟମାନସ ସମାଜ : ୨୯.୬.୧୯୮୪ |
| ତ୍ରିପାଠୀ, ଶ୍ରୀନିବାସ | ୧୯୭୮ | ଗୋପବନ୍ଧୁ ସାହିତ୍ୟରେ ଶ୍ରୀଜଗନ୍ନାଥ; ଅନ୍ତର୍ଭୁକ୍ତ *ଗୋପ* (ସଂ. ମହାନ୍ତି) |
| ଦାଶ, କୁଞ୍ଜବିହାରୀ | ୧୯୬୯ | ଓଡ଼ିଆ ସାହିତ୍ୟକୁ ଗୋପବନ୍ଧୁଙ୍କ ଦାନ ସମାଜ : ୧୪.୭.୧୯୬୯ |
| ଦାଶ, ଚିନ୍ତାମଣି | ୧୯୪୯ | 'ଅବକାଶ ଚିନ୍ତା'ରେ ଜୀବନର ମର୍ମ୍ମବାଣୀ ସମାଜ : ୨୬.୬.୪୯ |
| | ୧୯୫୨ | ଗୋପବନ୍ଧୁଙ୍କ ସାଧନାରେ ଭାରତୀୟ ଦୃଷ୍ଟିଭଙ୍ଗୀ, ସମାଜ : ୨୨.୬.୧୯୫୨ |
| | ୧୯୫୫ | ଗୋପବନ୍ଧୁଙ୍କ ଚିନ୍ତାଧାରାର ରୂପରେଖ, ସମାଜ : ୨୦.୬.୧୯୫୫ |
| | ୧୯୫୭ | ଗୋପବନ୍ଧୁ ଓ ଗୋଦାବରୀଶ, ସମାଜ : ୨୭.୬.୧୯୫୭ |
| | ୧୯୬୦ | ରବୀନ୍ଦ୍ରନାଥ ଓ ଗୋପବନ୍ଧୁ, ସମାଜ : ୨୪.୬.୧୯୬୦ |
| | ୧୯୬୩ | ଚିନ୍ତାଶୀଳ ଓ ପ୍ରଗତିବାଦୀ ଗୋପବନ୍ଧୁ, ସମାଜ : ୨୧.୬.୧୯୬୩ |

| | | |
|---|---|---|
| | ୧୯୬୯ | ମାନବିକତାର ଇତିହାସରେ ଗୋପବନ୍ଧୁ, ସମାଜ : ୧୪.୭.୧୯୬୯ |
| | ୧୯୭୫ | ନିର୍ଭୀକ ସମାଲୋଚକ ଗୋପବନ୍ଧୁ, ସମାଜ : ୯.୭.୧୯୭୫ |
| | ୧୯୭୬ | ବନବିଦ୍ୟାଳୟର ସାରସ୍ୱତ-ସାଧନା, ସମାଜ : ୨୭.୬.୧୯୭୬ |
| | ୧୯୭୯ | ଗୋପବନ୍ଧୁ, ନୀଳକଣ୍ଠ ଓ କବିବର ରାଧାନାଥ, ସମାଜ : ୨୪.୬.୧୯୭୯ |
| | ୧୯୮୦ | ସତ୍ୟବାଦୀ ସାହିତ୍ୟର ଗବେଷଣା ଓ ସମାଲୋଚନା, ସମାଜ : ୧୨.୭.୧୯୮୦ |
| ଦାଶ, ରବିନାରାୟଣ | ୧୯୭୪ | ଗୋପବନ୍ଧୁଙ୍କ ଦୃଷ୍ଟିରେ ଜାତିତତ୍ତ୍ୱ, ସମାଜ : ୨୦.୬.୭୪ |
| | ୧୯୭୫ | ଗୋପବନ୍ଧୁଙ୍କ ଦୃଷ୍ଟିରେ ଅନୁବାଦ, ସମାଜ : ୯.୭.୭୫ |
| | ୧୯୭୬ | ଗୋପବନ୍ଧୁଙ୍କ ଦୃଷ୍ଟିରେ ଭାଷା, ସମାଜ : ୨୭.୬.୭୬ |
| | ୧୯୭୭(କ) | ଗୋପବନ୍ଧୁଙ୍କ ଧର୍ମପଦ କାବ୍ୟରେ ଧର୍ମପଦ ଚରିତ୍ର, ସମାଜ : ୧୭.୭.୭୭ |
| | ୧୯୭୭(ଖ) | ଗୋପବନ୍ଧୁଙ୍କ ଦୃଷ୍ଟିରେ ପଲ୍ଲି, କୋଣାର୍କ-୩୩ |
| | ୧୯୭୭(ଗ) | ଗୋପବନ୍ଧୁଙ୍କ ଦୃଷ୍ଟିରେ ସାହିତ୍ୟଚର୍ଚ୍ଚା : ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା,* (ସଂ. ଶତପଥୀ) |
| | ୧୯୭୮ | ଗୋପବନ୍ଧୁଙ୍କ ସୃଷ୍ଟିରେ ଧର୍ମପଦ; କୋଣାର୍କ - ୩୫,କୋଣାର୍କ - ୩୬ ଓ କୋଣାର୍କ - ୩୭ |
| | ୧୯୭୯ | ପଣ୍ଡିତ ଗୋପବନ୍ଧୁଙ୍କ ଦୃଷ୍ଟିରେ ଆଦର୍ଶ ବ୍ୟକ୍ତିତ୍ୱ, ସମାଜ : ୨୪.୬.୭୯ |
| | ୧୯୮୦ | ଗୋପବନ୍ଧୁଙ୍କ ଦୃଷ୍ଟିରେ ଆନ୍ଦୋଳନ, ସମାଜ : ୧୨.୬.୮୦ |

| | | |
|---|---|---|
| | ୧୯୮୨ | ବନ୍ଦୀର ଆତ୍ମକଥା—ଏକ ସଂକ୍ଷିପ୍ତ ସୂଚନା, ସମାଜ : ୧୧.୬.୮୨ |
| ଦାସ, ଉଦୟନାଥ | ୨୦୦୦ | ଗୋପବନ୍ଧୁଙ୍କ ସାହିତ୍ୟରେ ସ୍ୱଦେଶାନୁରାଗ; ଅନ୍ତର୍ଭୁକ୍ତ *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ. ଦାସ) |
| ଦାସ, ମନୋଜ | ୧୯୬୪ | ଗୋପବନ୍ଧୁଙ୍କ ସାହିତ୍ୟ ଓ ସ୍ୱଦେଶାନୁରାଗର ସ୍ୱରୂପ, ସମାଜ : ୯.୭.୬୪ |
| ଦାସ, ଶୈଳବାଳା | ୧୯୫୮ | A Look Before and After Orissa, Mission Press, Cuttack |
| ଦାସ, ସୁଲୋଚନା | ୧୯୯୮ | 'ସତ୍ୟବାଦୀର ପ୍ରାଣପୁରୁଷ ଗୋପବନ୍ଧୁ' ଓଡ଼ିଆ ସାହିତ୍ୟରେ ରାଜନୈତିକ ଚେତନା, ୨ୟ ଭାଗ, ଆର୍ଯ୍ୟପ୍ରକାଶନ, କଟକ |
| ଦାସ, ସୂର୍ଯ୍ୟନାରାୟଣ | ୧୯୭୫ | ଗାନ୍ଧୀବାଦର ଜନକ ଗୋପବନ୍ଧୁ, ସମାଜ : ୯.୭.୭୫ |
| ଦାସ, ହରପ୍ରସାଦ | ୧୯୯୫ | "କାରା-କବିତାର ବାସ୍ତବତା" *ଆଧୁନିକତାର ପରମ୍ପରା,* ଭାରତ ଭାରତୀ, କଟକ |
| ନାଥ, ଶ୍ରୀବତ୍ସ ପ୍ରସାଦ | ୨୦୦୦ | ଗୋପବନ୍ଧୁ ସାହିତ୍ୟରେ ପ୍ରେମତତ୍ତ୍ୱ; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ.ଦାସ) |
| ନାୟକ, କ୍ଷେତ୍ରବାସୀ | ୧୯୭୭ | "ଗୋପବନ୍ଧୁଙ୍କ କବିତା"; *ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ* (୧୮୦୩-୧୯୨୦), ପୁସ୍ତକ ଭଣ୍ଡାର, ବ୍ରହ୍ମପୁର |
| ନାୟକ, ନିତ୍ୟାନନ୍ଦ | ୧୯୯୧ | 'ଅବକାଶ ଚିନ୍ତା'ର ପ୍ରଥମ ସଂସ୍କରଣ ଝଂକାର ୪୧/୧୨ (ମାର୍ଚ୍ଚ, ୧୯୯୧) |
| | ୧୯୯୪ | ସତ୍ୟବାଦୀ ସାହିତ୍ୟର ଉନ୍ମେଷ ଓ ବିକାଶ; ଅନ୍ତର୍ଭୁକ୍ତ *ଓଡ଼ିଆ ସାହିତ୍ୟ ଯୁଗେ ଯୁଗେ* (ସଂ. ନିତ୍ୟାନନ୍ଦ ଶତପଥୀ), ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର |
| ପଟ୍ଟନାୟକ, ଦୁଃଖୀଶ୍ୟାମ | ୧୯୭୭ | ଗୋପବନ୍ଧୁ ସାହିତ୍ୟ : ଏକ ପୂର୍ଣ୍ଣାଙ୍ଗ ସମୀକ୍ଷା; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା* (ସଂ. ଶତପଥୀ) |

| | | |
|---|---|---|
| ପଟ୍ଟନାୟକ, ପଠାଣି | ୧୯୭୭ | ଗୋପବନ୍ଧୁ ସାହିତ୍ୟର ଆବେଗ – ଜାତୀୟ ଚେତନା, କୋଣାର୍କ - ୩୩ |
| ପଟ୍ଟନାୟକ, ପ୍ରଫୁଲ୍ଲ | ୧୯୭୨ | ଗୋପବନ୍ଧୁଙ୍କ କବିମାନସରେ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ ଧାମ; ସମାଜ : ୨୭.୬.୭୬ |
| ପଟ୍ଟନାୟକ, ମଧୁସୂଦନ | ୧୯୭୦ | ଗୋପବନ୍ଧୁ-ସ୍ମୃତି, ସମାଜ : ୩.୭.୭୦ |
| ପଣ୍ଡା, ନବଘନ | ୨୦୦୦ | ଗୋପବନ୍ଧୁ ଓ ଚିଲିକା; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ. ଦାସ) |
| ପଣ୍ଡା, ବସନ୍ତ କୁମାର | ୧୯୯୫ | "ଗୋପବନ୍ଧୁଙ୍କ କବିତାରେ ପ୍ରକୃତି"; *ନିସର୍ଗ ନୀରାଜନା*, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ |
| ପତି, କାଙ୍ଗାଳୀଚରଣ | ୧୯୫୪ | ଗୋପବନ୍ଧୁଙ୍କ ସାହିତ୍ୟରେ ଜଗନ୍ନାଥଙ୍କ ସାନ୍ନିଧ୍ୟ; ସମାଜ : ୩୦.୬.୫୪ |
| | ୧୯୫୮ | ଗୋପବନ୍ଧୁଙ୍କ ଭବିଷ୍ୟତ; ସମାଜ : ୧୭.୬.୫୮ |
| | ୧୯୬୩ | ଗୋପବନ୍ଧୁଙ୍କ ଜୀବନଦର୍ଶନର କେତୋଟି ଦିଗ; ସମାଜ : ୨୧.୬.୬୩ |
| | ୧୯୬୪ | ଗୋପବନ୍ଧୁ-ପରମ୍ପରା, ସମାଜ :୯.୭.୬୪ |
| | ୧୯୬୬ | ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଗୋଟିଏ ଦିଗ; ସମାଜ : ୧୮.୬.୬୬ |
| ପାଢ଼ୀ, ଭଗବାନ | ୧୯୭୦ | ବନ୍ଦୀର ଆତ୍ମକଥାରେ କବିମାନସ ସମାଜ : ୩.୭.୭୦ |
| ପାଣିଗ୍ରାହୀ, କାଳିନ୍ଦୀଚରଣ | ୧୯୪୯ | ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁଙ୍କ ସ୍ଥାନ, ସମାଜ : ୨୬.୬.୪୯ |
| | ୧୯୫୫ | ଜାତୀୟ ସାହିତ୍ୟ ବା ଗୋପବନ୍ଧୁ-ଉପନିଷଦ୍, ସମାଜ : ୨୦.୬.୫୫ |
| | ୧୯୫୯ | ଗୋପବନ୍ଧୁଙ୍କ ସାହିତ୍ୟ ଓ ଜୀବନ, ସମାଜ : ୬.୭.୫୯ |
| ପାଲ, ଦୀପକ | ୨୦୦୦ | ଗୋପବନ୍ଧୁଙ୍କ 'ବନ୍ଦୀର ସ୍ୱଦେଶଚିନ୍ତା'ର ପ୍ରାସଙ୍ଗିକତା, ଝଂକାର ୫୨/୧ (ଏପ୍ରିଲ, ୨୦୦୦) |
| ବଳ, ଗଙ୍ଗାଧର | ୧୯୮୪ | କବି ଗୋପବନ୍ଧୁ, ସମାଜ : ୨୬.୬.୮୪ |

| | | |
|---|---|---|
| ବଳିୟାର ସିଂହ, ଶକୁନ୍ତଳା | ୧୯୮୫ | ଓଡ଼ିଆ ସାହିତ୍ୟରେ ଜାତୀୟବାଦୀ ଚେତନା, ପୁରୀ |
| ବିଶ୍ୱାଳ, ବଂଶୀଧର | ୧୯୬୯ | ଗୋପବନ୍ଧୁଙ୍କ ଧର୍ମପଦ,ସମାଜ : ୧୪.୭.୬୯ |
| ବେହୁରା, ରାଧାଶ୍ୟାମ | ୧୯୭୫ | ଗୋପବନ୍ଧୁ ସାହିତ୍ୟରେ ବିଭୁପ୍ରୀତି, ସମାଜ : ୯.୭.୭୫ |
| ବେହେରା, ଚିନ୍ତାମଣି | ୧୯୬୬ | ''ଗୋପବନ୍ଧୁଙ୍କ କବିତାରେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ''; *କାବ୍ୟ ଓ କଳାକାର*, ଆଲୋକ ସାହିତ୍ୟ ପ୍ରତିଷ୍ଠାନ, କଟକ |
| ବ୍ରହ୍ମା, ଗୌରୀକୁମାର | ୧୯୪୬ | ଗୋପବନ୍ଧୁଙ୍କ କବିତ୍ୱ, ସମାଜ : ୨୮.୬.୪୬ |
| ମହାନ୍ତି, କିଶୋରଚନ୍ଦ୍ର | ୨୦୦୦ | ଗୋପବନ୍ଧୁଙ୍କ ସାହିତ୍ୟରେ ନାରୀ ଚରିତ୍ରର ଚିତ୍ରଣ; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ. ଦାସ) |
| ମହାନ୍ତି, ଚିନ୍ତାମଣି | ୧୯୭୦ | *ଜୀବନପଞ୍ଜିକା*, କଟକ ପବ୍ଲିଶିଂ ହାଉସ, କଟକ |
| ମହାନ୍ତି, ଜାନକୀବଲ୍ଲଭ | ୧୯୭୭(କ) | ଗୋପବନ୍ଧୁ କବି-ମାନସ,କୋଣାର୍କ - ୩୩ |
| | ୧୯୭୭(ଖ) | ଗୋପବନ୍ଧୁ-ମାନସ; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା*, (ସଂ. ଶତପଥୀ) |
| ମହାନ୍ତି, ପ୍ରମୋଦ କୁମାର | ୧୯୬୪ | ଗୋପବନ୍ଧୁ ସାହିତ୍ୟରେ ରୋମାଣ୍ଟିସିଜମ୍, ସମାଜ : ୯.୭.୬୪ |
| ମହାନ୍ତି, ପ୍ରାଣନାଥ | ୧୯୫୩ | କବି ଗୋପବନ୍ଧୁ, ସମାଜ : ୧୧.୭.୫୩ |
| | ୧୯୫୯ | ପ୍ରକୃତି-ଉପାସକ ଗୋପବନ୍ଧୁ, ସମାଜ : ୭.୬.୫୯ |
| ମହାନ୍ତି, ବଂଶିଧର | ୧୯୫୩ | ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ଗୋପବନ୍ଧୁ, ସମାଜ : ୧୧.୭.୫୩ |
| | ୧୯୫୭ | 'ଅବକାଶ ଚିନ୍ତା'ର ପ୍ରଥମ ସଂସ୍କରଣ, ସମାଜ : ୨୭.୬.୫୭ |
| ମହାନ୍ତି, ମନୀନ୍ଦ୍ର | ୧୯୭୮ | 'ଧର୍ମପଦ' ଏକ ଭିନ୍ନ ଦୃଷ୍ଟି; ଅନ୍ତର୍ଭୁକ୍ତ, *ଗୋପ* (ସଂ.ମହାନ୍ତି) |
| ମହାପାତ୍ର, ନିତ୍ୟାନନ୍ଦ | ୨୦୦୦ | ଗୋପବନ୍ଧୁ ସାହିତ୍ୟରେ ଦାର୍ଶନିକ ଚିନ୍ତାଧାରା; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ. ଦାସ) |

| | | |
|---|---|---|
| ମହାପାତ୍ର, ବାସୁଦେବ | ୧୯୫୩ | ଗୀତାପ୍ରେମୀ ଗୋପବନ୍ଧୁ, ସମାଜ : ୧୧.୭.୫୩ |
| ମିଶ୍ର, କାହ୍ନୁଚରଣ | ୧୯୫୪ | ଗୋପବନ୍ଧୁ ସାହିତ୍ୟରେ ଓଡ଼ିଆ ସଂସ୍କୃତିର ପରମ୍ପରା, ସମାଜ : ୩୦.୬.୫୪ |
| | ୧୯୬୧ | ବ୍ରହ୍ମଜ୍ଞ ମଧୁସୂଦନ ଓ ଦିଗଦ୍ରଷ୍ଟା ଗୋପବନ୍ଧୁ, ସମାଜ : ୧୨.୭.୬୧ |
| ମିଶ୍ର, କୃଷ୍ଣପ୍ରସାଦ | ୧୯୫୬ | କବି ଗୋପବନ୍ଧୁଙ୍କ ଜୀବନଦର୍ଶନ, ସମାଜ : ୧.୭.୫୬ |
| | ୧୯୫୭ | ଗୋପବନ୍ଧୁ ବିଚାରଧାରା, ସମାଜ : ୨୭.୬.୫୭ |
| ମିଶ୍ର, ଚନ୍ଦ୍ରଶେଖର | ୧୯୪୯ | ଗୋପବନ୍ଧୁ ଓ ଉତ୍କଳର କୃତି, ସମାଜ : ୨୬.୯.୪୯ |
| ମିଶ୍ର, ଜୟକୃଷ୍ଣ | ୧୯୫୪ | ଦିବ୍ୟଦର୍ଶୀ ଗୋପବନ୍ଧୁ, ସମାଜ : ୨୦.୬.୫୫ |
| | ୧୯୫୫ | ଦିବ୍ୟଦର୍ଶୀ, ସମାଜ : ୨୦.୬.୫୫ |
| ମିଶ୍ର, ତୀର୍ଥାନନ୍ଦ | ୧୯୯୭ | "ବିଶ୍ୱ ଦରଦର ରୂପକାର ଗୋପବନ୍ଧୁ" *ସମୀକ୍ଷାୟନ*, ନାଳନ୍ଦା, କଟକ |
| ମିଶ୍ର, ଦୁର୍ଗାଚରଣ | ୧୯୭୫ | ଗୋପବନ୍ଧୁ ଦାସଙ୍କ ଗଦ୍ୟରଚନାରେ ପ୍ରତିଭାର ପୂଜା; ସମାଜ : ୯.୭.୭୫ |
| | ୧୯୭୭(କ) | ଧର୍ମପଦ,ନଚିକେତା ଓ ଗୋ-ମାହାତ୍ମ୍ୟ – ଏକ ତାତ୍ତ୍ୱିକ ଅଧ୍ୟୟନ, କୋଣାର୍କ - ୩୩ |
| | ୧୯୭୭(ଖ) | ଜାତୀୟ ଜାଗରଣର ପୃଷ୍ଠଭୂମିରେ ଗୋପବନ୍ଧୁ ସାହିତ୍ୟ; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା*, (ସଂ. ଶତପଥୀ) |
| ମିଶ୍ର, ନବକିଶୋର | ୧୯୮୨ | ଗୋପବନ୍ଧୁଙ୍କ କାବ୍ୟକବିତାର କେତୋଟି ଦିଗ; ସମାଜ : ୨୧.୬.୮୨ |
| ମିଶ୍ର, ନରେନ୍ଦ୍ରନାଥ | ୧୯୭୮ | "ଗୋପବନ୍ଧୁ ଦାସ"; *ଆଧୁନିକ ଓଡ଼ିଆ କାବ୍ୟଧାରା*, ବିଶ୍ୱଭାରତୀ ଗବେଷଣା ପ୍ରକାଶନ ସମିତି, ଶାନ୍ତିନିକେତନ. |
| ମିଶ୍ର, ନୀଳମଣି | ୨୦୦୦ | ଦରଦୀ କବି ଗୋପବନ୍ଧୁ; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ*, (ସଂ. ଦାସ) |

| | | |
|---|---|---|
| ମିଶ୍ର, ପ୍ରମିଳା | ୨୦୦୦ | ଗୋପବନ୍ଧୁଙ୍କ ସାହିତ୍ୟରେ ଧର୍ମଧାରଣା; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ* (ସଂ. ଦାସ) |
| ମିଶ୍ର, ବୈଦ୍ୟନାଥ | ୧୯୬୨ | ବ୍ରଜସୁନ୍ଦରଙ୍କ ଛାତ୍ରଜୀବନ; ଅନ୍ତର୍ଭୁକ୍ତ, *ବ୍ରଜସୁନ୍ଦର ସ୍ମାରକ ଗ୍ରନ୍ଥ* (ସଂ. ଜାନକୀବଲ୍ଲଭ ମହାନ୍ତି ଓ ବିଚିତ୍ରାନନ୍ଦ କର) ଉତ୍କଳ ସାହିତ୍ୟ ସମାଜ, କଟକ |
| ମିଶ୍ର, ଶ୍ରୀନିବାସ | ୧୯୫୨ | ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ, ସମାଜ : ୨୨.୬.୫୨ |
| | ୧୯୫୩ | ଗୋପବନ୍ଧୁଙ୍କ କର୍ମଧାରାରେ ପବିତ୍ର ଦେଶାତ୍ମବୋଧ,ସମାଜ : ୧୧.୭.୫୩ |
| | ୧୯୫୫ | ଐତିହାସିକ ଦୃଷ୍ଟିସମ୍ପନ୍ନ ସତ୍ୟବାଦୀ ଲେଖକମଣ୍ଡଳୀ, ସମାଜ : ୨୦.୬.୫୫ |
| | ୧୯୫୬ | ଜୀବନୀମୂଳକ କବିତାର କବି ଗୋପବନ୍ଧୁ, ସମାଜ : ୧.୭.୫୬ |
| | ୧୯୫୭ | ‘ଅବକାଶ ଚିନ୍ତା’ର ଆଦ୍ୟକବିତା, ସମାଜ : ୨୭.୬.୫୭ |
| ମିଶ୍ର'ସତ୍ୟବାଦୀ | ୧୯୪୬ | ଆଦର୍ଶବାଦୀ ଗୋପବନ୍ଧୁ, ସମାଜ : ୨୮.୬.୪୬ |
| ମିଶ୍ର, ସୁଭାଷଚନ୍ଦ୍ର | ୧୯୭୬ | ଗୋପବନ୍ଧୁ-ବନ୍ଧୁ ବ୍ରଜସୁନ୍ଦର, ସମାଜ : ୨୭.୬.୭୬ |
| ରଥ, ଦୀନବନ୍ଧୁ | ୧୯୫୬ | ବନ୍ଦୀର ଆତ୍ମକଥାରେ ଗୋପବନ୍ଧୁଙ୍କ ବାଣୀ, ସମାଜ : ୧.୭.୫୬ |
| | ୧୯୭୭ | ବନ୍ଦୀର ଆତ୍ମକଥା ଓ କବି ଗୋପବନ୍ଧୁ; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା* (ସଂ. ଶତପଥୀ) |
| ରଥ, ବିଭୂତି ଭୂଷଣ | ୧୯୬୫ | ଗୋପବନ୍ଧୁ ଓ ଗୋ-ମାହାତ୍ମ୍ୟ, ସମାଜ : ୨୯.୬.୬୫ |
| | ୧୯୭୦ | ଗୋପବନ୍ଧୁ ଓ ଗୋଦାନ, ସମାଜ : ୩.୭.୭୦ |

| | | |
|---|---|---|
| ରଥ, ରାଧାନାଥ | ୧୯୪୬ | ଭାଷା ଓ ସାହିତ୍ୟରେ ଜାତୀୟତା, ସମାଜ : ୨୮.୬.୪୬ |
| | ୧୯୭୮ | ଗୋପବନ୍ଧୁଙ୍କ ଦୃଷ୍ଟିରେ–ଭାଷା,ସାହିତ୍ୟ ଓ ଜାତୀୟତା; ସମାଜ : ୫.୭.୭୮ |
| ରାଜଗୁରୁ, ସତ୍ୟନାରାୟଣ | ୧୯୮୦ | "ଉପକ୍ରମଣିକା : ଗୋପବନ୍ଧୁଙ୍କ ଗଦ୍ୟସାହିତ୍ୟ" ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ରଚନାବଳୀ – ଦ୍ୱିତୀୟ ଭାଗ* (ସଂ. ସତ୍ୟନାରାୟଣ ରାଜଗୁରୁ) ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| ରାୟ, ରାଜକିଶୋର | ୧୯୪୬ | ଅମୃତ ସନ୍ତାନ ଗୋପବନ୍ଧୁ; ସମାଜ : ୨୮.୬.୪୬ |
| | ୧୯୫୭ | ନିର୍ମଳ, ମଧୁର ଓ ପ୍ରସନ୍ନ; ସମାଜ : ୨୭.୬.୫୭ |
| | ୧୯୭୭ | ଭାଗବତ ଧର୍ମବିଜ୍ଞାତା ପଣ୍ଡିତ ଗୋପବନ୍ଧୁ; ସମାଜ : ୧୭.୭.୧୯୭୭ |
| | ୧୯୮୦ | ଗୋପବନ୍ଧୁଙ୍କ ସେବା-ଅଭିମନ୍ତ୍ରିତ ନେତୃତ୍ୱ ଓ ଏବର ମୂଲ୍ୟାଙ୍କନ; ସମାଜ : ୧୨.୭.୮୦ |
| ଶତପଥୀ, ଗୋକୁଳଚନ୍ଦ୍ର | ୧୯୭୮ | ଭକ୍ତକବି ଗୋପବନ୍ଧୁ; ଅନ୍ତର୍ଭୁକ୍ତ, *ଗୋପ* (ସଂ. ମହାନ୍ତି) |
| ଶତପଥୀ, ନାରାୟଣ | ୨୦୦୦ | ଅବ୍ୟୟ ଆତ୍ମାର ଅବ୍ୟକ୍ତ ସଙ୍ଗୀତ; ଅନ୍ତର୍ଭୁକ୍ତ, *ଯୁଗପୁରୁଷ ଗୋପବନ୍ଧୁ ଦାସ*, (ସଂ. ଦାସ) |
| ଶତପଥୀ, ନିତ୍ୟାନନ୍ଦ | ୨୦୦୦ | ଗୋପବନ୍ଧୁ ଦାସ, ପ୍ରତିବେଶୀ – ୧୭/୪ (ଏପ୍ରିଲ୍-ଜୁନ୍, ୨୦୦୦), କଲିକତା । |
| ଶତପଥୀ, ପ୍ରତିଭା | ୧୯୭୭ | ଅବକାଶ ଚିନ୍ତା ଓ ରୋମାଣ୍ଟିକ୍ କବି ଗୋପବନ୍ଧୁ; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା* (ସଂ. ଶତପଥୀ) |
| | ୧୯୮୨ | "ରୋମାଣ୍ଟିକ୍ କବି ଗୋପବନ୍ଧୁ"; *କୈବନାର ଅଭିଷେକ*, ଓଡ଼ିଶା ବୁକ୍ ଷ୍ଟୋର୍, କଟକ |
| ସାମନ୍ତରାୟ, ନଟବର | ୧୯୬୩ | "କବି ଗୋପବନ୍ଧୁ"; *ଗଳ୍ପ ନୁହେଁ ସମାଲୋଚନା*, ଗ୍ରନ୍ଥମନ୍ଦିର, କଟକ |

| | | |
|---|---|---|
| ସାମନ୍ତରାୟ, ଲକ୍ଷ୍ମୀଚରଣ | ୧୯୬୯ | ଗୋପସାହିତ୍ୟ – ଏକ ବିଶ୍ଳେଷଣ; ସମାଜ : ୧୪.୭.୬୯ |
| ସାମଲ, ଗଜେନ୍ଦ୍ର ନାଥ | ୧୯୫୬ | ବିଶ୍ବକବି ଗୋପ ଦାସ ଓ ଗୋ-ମାହାତ୍ମ୍ୟ, ସମାଜ : ୧.୭.୫୬ |
| | ୧୯୫୮ | ବିଶ୍ବକବି ଗୋପବନ୍ଧୁ, ସମାଜ : ୧୭.୬.୫୮ |
| ସାହୁ, କୃଷ୍ଣ ଚରଣ | ୧୯୭୭ | ଗୋପବନ୍ଧୁଙ୍କ କବିତାରେ ଜୀବନ; ଅନ୍ତର୍ଭୁକ୍ତ, *ଗୋପବନ୍ଧୁ ପରିକ୍ରମା* (ସଂ. ଶତପଥୀ) |



ଲୋକସେବକ ମଣ୍ଡଳର ସଭାପତି ଲାଲା ଲଜ୍ପତ୍ ରାୟ ଓ ଉପସଭାପତି ପଣ୍ଡିତ ଗୋପବନ୍ଧୁ ଦାସ (୧୯୨୮) ।

Satyabadi
Sakhigopal (B.N.Ry)
18. 5-28

My dear Sir,

The blocks you sent have been received here. I think you have got copies of Mr Thakkar's report and the Report of the Non official Enquiry Committee, which I asked Mr Sahoo to send to you. They have already appeared in papers with comments thereon. I hope you will kindly have some paragraphs on the subject in the next number of the Modern Review

[୧୯୨୮ ମସିହା ମଇ ମାସରେ ପୁରୀର ଦୁର୍ଭିକ୍ଷ-ସମସ୍ୟା ବିଷୟରେ ଶ୍ରୀ ରାମାନନ୍ଦ ଚାଟାର୍ଜିଙ୍କୁ ପଣ୍ଡିତ ଗୋପବନ୍ଧୁଙ୍କ ଲିଖିତ ଇଂରାଜୀ ପତ୍ରର ପ୍ରତିଲିପି । (୧) ]

